JISUKHRISTA
[Jesus Christ and the growth of the Church]
by Rabeendra Prasad Panda
Published by Vidyapuri, Cuttack 753 002

ISBN 81-7411-553-6

ପ୍ରଥମ ପ୍ରକାଶ
ଫେବୃୟାରୀ ୨୦୦୭

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ମଡର୍ଣ୍ଣ ଇନ୍‌ଫୋଟେକ୍, କଟକ ୭୫୩୦୦୨

ମୁଦ୍ରଣ
ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୬୦.୦୦



## ।। ଏକ ।।

ଭାସ୍‌କୋଡାଗାମା ଯେତେବେଳେ ସମୁଦ୍ର-ଉପକଣ୍ଠରେ ବୋଇତରୁ ଅବତରଣକଲେ ସଶସ୍ତ୍ର, ଧୀବର ପଚାରିଲେ ଖଲାସୀଙ୍କୁ, କଣ ଖୋଜିବାକୁ ଆସିଛ ଏଠିକି ? କହିଲେ, ମସଲା ଆଉ ଖ୍ରୀଷ୍ଟାନ୍ । ସେଦିନଠୁଁ ବେଢାଏ ପୋର୍ତ୍ତୁଗୀଜ୍ ଶବ୍ଦ ଭାରତୀୟଙ୍କ ଭାଷାଭଣ୍ଡାରରେ ସ୍ଥାନପାଇଯାଇଛି, ଯେପରି, ଯେଶୁ=ଯୀଶୁ, ଇଗିର୍ଜା=ଗୀର୍ଜା, ପାଡ୍ରେ=ପାଦ୍ରୀ । ତଥାପି, ଅଠରଶତକର ମଧ୍ୟଭାଗ ପର୍ଯ୍ୟନ୍ତ, ଯୀଶୁ କିଏ, ଆମେ ଜାଣି ନଥିଲୁଁ; ଏପରିକି, ସମୁଦ୍ରବିହାରୀ ଭାରତୀୟ ନାବିକ ମଧ୍ୟ ଜାହାଜଯାତ୍ରୀ ମିଶନାରୀଙ୍କ ପ୍ରଶ୍ନର ଉତ୍ତରରେ ପ୍ରକାଶକରିଛନ୍ତି ଅବିମିଶ୍ର ବିସ୍ମୟ । ଆଉ ପାଦ୍ରୀ ଯେତେବେଳେ ଜଣାଇଛନ୍ତି ଯେ (ଦ୍ର. *ଜର୍ନାଲଜ୍ ଅ୍ୟାଣ୍ଡ ଲେଟରସ୍ ଅବ୍ ଦ ରେଭରେଣ୍ଡ୍ ହେନ୍ରି ମାର୍ଟିନ୍*, ଲଣ୍ଡନ୍, ୧୮୩୭) ଯୀଶୁ ଜଗତର ତ୍ରାଣକର୍ତ୍ତା, ପରସ୍ପର ମୁହଁ ଚାହାଁଚାହିଁକରି ଖଲାସୀ ହସିଛନ୍ତି । ପଛକୁ ଜଣାଗଲା ଯେ ନାଜାରଥ୍ ଜନପଦର ଯୀଶୁଙ୍କୁ ଭକ୍ତ ଭାବିଚନ୍ତି, ଶେଷତମ ଇହୁଦୀ ମସିହା (=ତ୍ରାଣକର୍ତ୍ତା); ଏବଂ ମସିହାଙ୍କୁ 'ଖ୍ରୀଷ୍ଟ' କୁହାଯାଏ ବୋଲି, ତାଙ୍କ ନାଁ ପଛରେ ସଂଜ୍ଞା ଲାଗିଛି, 'ଖ୍ରୀଷ୍ଟ'। ପୁଣି, ତାଙ୍କ ବାଣୀ ଯୋଉ ବହିରେ ଲିପିବଦ୍ଧ ହୋଇଛି, ସେଇ ପବିତ୍ର ଗ୍ରନ୍ଥ *ବାଇବ୍ଲ* ଏକ ହିବ୍ରୁଶବ୍ଦ, ଯାର ଆକ୍ଷରିକ ଅର୍ଥ ଭୁର୍ଜପତ୍ର, ପ୍ୟାପିରସ୍ (=ପେପର୍)। ପ୍ୟାପିରସ୍ ଗଛର ଉଦ୍‌ଭବ ଆଫ୍ରିକାର ଉତ୍ତରାଞ୍ଚଳରେ । ସେଇ ବହିରେ ଯୀଶୁଚରିତ ବର୍ଣ୍ଣନାକରିଚନ୍ତି ପଛକୁ ପଛ ଚାରିଜଣ ସନ୍ଥ, ମାର୍କ୍ ମାଥ୍ୟୁ ଲ୍ୟୁକ୍ ଏବଂ ଜହନ୍ । ଯୀଶୁବଚନକୁ ସେମାନେ କହିଛନ୍ତି *ଗସ୍‌ପେଲ୍*, ସୁସମାଚାର । ସୁସମାଚାରର ପ୍ରତିପାଦ୍ୟ ହେଲା, ଯୀଶୁ ଖାଲି ଜଣେ ଧର୍ମଗୁରୁ, ନୀତିଶିକ୍ଷକ ବା ଲୋକନେତା ନୁହନ୍ତି, ସ୍ୱୟଂ ଈଶ୍ୱର । ପୁତ୍ରରୂପୀ ଈଶ୍ୱର, ଭଗବାନ୍‌ଙ୍କ ଏକମାତ୍ର ଗ୍ରାହ୍ୟ ଅବତାର, ଯିଏ ପତିତ ମାନବଜାତିକୁ ଉଦ୍ଧାରକରିବା ସକାଶେ କୁମାରୀମାତା ମେରୀଙ୍କ ଗର୍ଭରୁ ଭୂମିଷ୍ଠହୋଇଥିଲେ ନାଜାରେଥ୍-ରେ । ତହିଁଉତ୍ତାରୁ, ନାନାଦି ଅଲୌକିକ ଘଟଣା ମାଧ୍ୟମରେ ବହୁ ବିଚକ୍ଷଣ କର୍ମସାଧନ କଲାପରେ କ୍ରୁଶବିଦ୍ଧହୋଇ ମୃତ୍ୟୁବରଣ କରିଥିଲେ ହେଁ, ମୃତ୍ୟୁର ଦି'ଦିନ

ଉତ୍ତାରୁ କବରତଳୁ ଉଠିଆସିଥିଲେ ସଶରୀର, ଏବଂ ପରିଶେଷରେ କରିଥିଲେ ସ୍ୱର୍ଗାଧିରୋହଣ; କିନ୍ତୁ ଶେଷବିଚାର ବେଳେ ଏବେ ବି ତାଙ୍କୁ ଦେଖିହେବ ଗରୀୟାନ୍ ଜ୍ୟୋତିର୍ମଣ୍ଡଳରେ ପିତୃରୂପୀ ଈଶ୍ୱରଙ୍କ ସନ୍ନିଧିରେ ଉପବିଷ୍ଟ । କହିବା ବାହୁଲ୍ୟ, ମହାଜାଗତିକ ଏ କାହାଣୀ ଐତିହାସିକ ନୁହେଁ, ପୌରାଣିକ । ଏବଂ ପୌରାଣିକ ବୋଲି, କଳ୍ପକଥା ଭଳି ଧୂସର । କିନ୍ତୁ ଏ କଳ୍ପକଥା ସାଙ୍ଗରେ ଅପରାପର ଧର୍ମବିଶ୍ୱାସର ପୌରାଣିକ ଆଖ୍ୟାନର ଯେ ମୂଳତଃ କିଛି ତଫାତ୍ ନାହିଁ, ଅଖ୍ରୀଷ୍ଟାନ୍ ଲୋକ ସେକଥା କହୁଚନ୍ତି ବେଶ୍ କେତେଶ'ବର୍ଷଧରି, ମାତ୍ର ରକ୍ଷଣଶୀଳ ଖ୍ରୀଷ୍ଟାନ୍ କର୍ଣ୍ଣପାତ କରିନାହାନ୍ତି; ବରଂ ନିଜ ଦାବିରେ ରହିଚନ୍ତି ଅଟଳ ଯେ ଯୀଶୁଙ୍କୁ ସାକ୍ଷାତ୍ ଈଶ୍ୱର ବୋଲି ସ୍ୱୀକାରକରିବାକୁ ହେବ ସମସ୍ତଙ୍କୁ । ଇହୁଦୀ-ଇସ୍‌ଲାମ୍-ହିନ୍ଦୁ-ବୌଦ୍ଧ, ତାବତ୍ ଅଖ୍ରୀଷ୍ଟାନ୍ ଦୁନିଆ ସାଙ୍ଗରେ ସେଥିପାଇଁ ତୁମୁଳ କଳହ । ଭାରତବର୍ଷରେ ଧର୍ମକର୍ମକୁ ମୂଳକରି କମ୍ ପରୀକ୍ଷାନିରୀକ୍ଷା କରାଯାଇନାହିଁ, ଏବଂ କରାଯାଇଛି ବୋଲି, ଏଠି ଜାଗାବଜାଗା ଠାକୁରଠାକୁରାଣୀ, ଗୁରୁ, ସ୍ୱାମୀ, ପରମହଂସ; ଅବତାର ବି ଅନ୍ୟୂନ ଦଶ, ପୁରାଣ ମାଳିକା ଚାଳିଶା ଅସୁମାରି; ଲୋକ ତେଣୁ ଯୀଶୁଙ୍କୁ ଶ୍ରଦ୍ଧାକରିବାକୁ କୁଣ୍ଠିତନୁହେଁ, ତାଙ୍କ ନୀତିଶିକ୍ଷାକୁ ଖାତିର୍‌କରିଛନ୍ତି ବରାବର, ମାତ୍ର ସିଏ ଯେ ଏକମାତ୍ର ମୁକ୍ତିଦାତା, ମାନିନେବା ସମ୍ଭବପର ନୁହେଁ । ମାନବ-ଗୁରୁଙ୍କ ଦେବତ୍ୱପ୍ରାପ୍ତି ଏଠି ଏତେ ପରିଚିତ ଘଟଣା ଯେ ଯୀଶୁଙ୍କ କାରବାର ମନେହୋଇନାହିଁ ଅଲଗା କୋଉ କିମ୍ଭୂତକିମାକାର । ହେନ୍ରି ମାର୍ଟିନ୍ ତେଣୁ ଦେଖିଛନ୍ତି ଭାରତୀୟ ଧର୍ମବିଶାରଦ ଯୀଶୁଙ୍କ ନୀତିଶିକ୍ଷା ପ୍ରଶଂସାରେ ପଞ୍ଚମୁଖ, ଅଥଚ ମୋକ୍ଷଲାଭର ଏକମାତ୍ର ଅବଲମ୍ବନ ବୋଲି ତାଙ୍କୁ ଗଣ୍ୟକରିବାକୁ ଅନାଗ୍ରହୀ । ଯାବତ୍ ଲୋକ ଗୁରୁ ମାନନ୍ତି, ଭାବାତିଶଯ୍ୟରେ ମଣିଷକୁ ଦେବତା କରନ୍ତି (ନୀଳକଣ୍ଠ ଦାସ ସେଇ ପ୍ରବଣତାକୁ କହିଛନ୍ତି 'ଭାକ୍ତିକ ମିଥ୍ୟା') । ଏ ରୀତିରୁ ଖ୍ରୀଷ୍ଟାନ୍ ଅବା ବ୍ୟତିକ୍ରମ ହେବେ କାହିଁକି ? ଏଇକଥା ସେମାନେ କହିଥିଲେ ମାର୍ଟିନ୍ ସାହେବଙ୍କୁ । ମାତ୍ର ପାଦ୍ରୀଙ୍କ ଅବଜ୍ଞା ତ କହିଲେ ନ ସରେ, 'ତୁମ୍ଭମାନଙ୍କ ଜଗନ୍ନାଥ କାଷ୍ଠ ଅଛି...' ଇତ୍ୟାଦି । ଅର୍ଥାତ୍, ବାକି ଯେତେ ଧର୍ମ, ବିବାକ 'ମିଥ୍'; ତାଙ୍କ *ବାଇବେଲ୍‌ଟି* ଖାଲି ଅକାଟ୍ୟ ସତ୍ୟ । ଭାରସାମ୍ୟ-ବର୍ଜିତ ଏ ମନୋଭାବରୁ ଉପୁଜିଚି ନାନାଦି ବିପତ୍ତି । ମାତ୍ର କାଳ ନିରବଧି, ଆଉ ପୃଥ୍ୱୀ ବି ବିପୁଳା । ଖ୍ରୀଷ୍ଟୀୟ ଭାବମଣ୍ଡଳ ମଧ୍ୟଯୁଗରେ ଯେମିତି ଜବରଦସ୍ତ ଥିଲା, ଆଜି ସେ ଦିମାକ୍ ବଜାୟ ନାହିଁ; ପୃଥିବୀର ବିସ୍ତୃତ ଅଞ୍ଚଳରେ ସାମ୍ୟବାଦୀ ଚିନ୍ତାଧାରା ପ୍ରସାରପାଇବା ସଙ୍ଗେ ସଙ୍ଗେ ଖ୍ରୀଷ୍ଟାନ୍‌ଜଗତରେ

ସୁଦ୍ଧା ଆତ୍ମା, ଈଶ୍ୱର ପ୍ରଭୃତି ଆଧିଭୌତିକ ଉପାଦାନ ଉପରୁ ଆସ୍ଥା ତୁଟିଯାଇଚି । ତା' ଛଡ଼ା, ରେନେସାଁସ୍-ରଫର୍ମେସନ୍, ଅଷ୍ଟାଦଶଶତକର ବିଜ୍ଞାନଚର୍ଚ୍ଚା, ନୃତତ୍ତ୍ୱ ପ୍ରତ୍ନତତ୍ତ୍ୱ ଇତିହାସ ଇତ୍ୟାଦି ମଣିଷକୁ ଅଲୌକିକତା ଅଧିବିଦ୍ୟା ଦେବତ୍ୱ ପ୍ରଭୃତି ଅପ୍ରାକୃତ ପ୍ରପଞ୍ଚ ପ୍ରତି କରିଚି ସନ୍ଦିହାନ୍ ଓ ଉଦାସୀନ, ଯଦିଓ ପଣ୍ଡାପଡ଼ିହାରୀ ତଥାପି ଖଟୁଲି ଆଉ କଦଳୀକୁ ମୁଠାଇଧରି ବସିରହିଚନ୍ତି । ଖ୍ରୀଷ୍ଟାନ୍‌ଙ୍କ ଧର୍ମ-ବ୍ୟୁରୋକ୍ରେସୀ ତ ସାରା ପୃଥିବୀରେ ଅତୁଳନୀୟ; ମ୍ୟାନେଜ୍‌ମେଣ୍ଟ୍-ଗୁରୁ ପିଟର୍ ଡ୍ରକର୍ କହିଚନ୍ତି ପୋପ୍ ଆଉ ଭ୍ୟାଟିକାନ୍‌କୁ, ଜଗତର ଶ୍ରେଷ୍ଠ ଅମଲାତନ୍ତ୍ର । ଅର୍ଥାତ୍ ଆଧୁନିକ କାଳରେ ଜ୍ଞାନ-ବିଜ୍ଞାନରେ ଯୋଉଭଳି ବିସ୍ଫୋରଣ ଲାଗିରହିଚି, ତା ନିରୀଖରେ ଯୀଶୁଙ୍କ ପ୍ରକୃତ ପରିଚୟ ଯେ ଦିନେନାଦିନେ ଉନ୍ମୋଚିତହେବ, ସେ ବିଷୟରେ କାହାରି ସଂଶୟ ଥିଲାନାହିଁ; ଏବଂ ସାଧାରଣଲୋକଙ୍କ ଅଲକ୍ଷ୍ୟରେ ବିଦ୍ୱାନ୍‌ମାନଙ୍କ ତର୍କବିତର୍କରୁ ଘଟିଯାଇଚି ଯୀଶୁସଂକ୍ରାନ୍ତ ସେଇ ଧ୍ୟାନଧାରଣାର ଆମୂଳ ପରିବର୍ତ୍ତନ, ଚିରାଚରିତ ବିଶ୍ୱାସ ପରିପ୍ରେକ୍ଷିତ୍‌ରେ ଯୋଉ ପରିବର୍ତ୍ତନ ରୀତିମତ ବିପ୍ଳବ; (ଦ୍ର. ଡନ୍ କିଉପିଟ୍ ଆଣ୍ଡ୍ ପିଟର୍ ଆର୍ମସ୍ଟ୍ରଙ୍ଗ୍ : *ହୁ ଓଆଜ୍ ଜିଜସ୍* ? ବିବିସି, ଲଣ୍ଡନ୍, ୧୯୭୭) । ଦୁହେଁଯାକ ବିଶେଷଜ୍ଞ । ତାଙ୍କ ତତ୍ତ୍ୱାବଧାନରେ ବିବିସି ଟେଲିଭିସନ୍ ଯୋଉ ଅନୁଷ୍ଠାନ ଦେଖାଏ, ବହି ଆକାରରେ ତାକୁ ପ୍ରକାଶକରିଛି ସ୍ୱୟଂ ବିବିସି । ତାଙ୍କ ମତରେ, ନବାବିଷ୍କୃତ ଏ ଜ୍ଞାନ ଏତେ ଗୁରୁତ୍ୱପୂର୍ଣ୍ଣ ଯେ ବିଶେଷଜ୍ଞଙ୍କ ଅଭିଲେଖାଗାରରେ ତାକୁ ଆବଦ୍ଧକରି ରଖିବା ଅସମୀଚୀନ, ସର୍ବସାଧାରଣ ଅବଗତି ସକାଶେ ପ୍ରଚାରମାଧ୍ୟମରେ ଅବିଳମ୍ବ ପ୍ରକାଶ ତେଣୁ ଶିରୋଧାର୍ଯ୍ୟ ।

ଯୀଶୁ ଥିଲେ ବାସ୍ତବ ଜୀବନରେ କିଏ ? - ଏଇ ପ୍ରଶ୍ନର ସଦୁତ୍ତର ସଂଧାନ ଥିଲା ଲେଖକଦ୍ୱୟଙ୍କ ଉଦ୍ଦେଶ୍ୟ । ଅର୍ଥାତ୍; ନାଁ ପଛରେ ଢାଙ୍କିହୋଇପଡ଼ିଚି କେତେ ପରିମାଣ ଇତିହାସ ଆଉ କେତେ ପରିମାଣ କଳ୍ପକଥା, ମୋଟାମୋଟି ସେଇ ହିସାବନିକାଶ । ବର୍ତ୍ତମାନ କାଳରେ ଏ ହିସାବନିକାଶ ଯେତେଦୂର ସାର୍ଥକ, ଦୂର ଅତୀତରେ ସେ ସମ୍ଭାବନା ଥିଲା ଅକଳ୍ପନୀୟ, କାହିଁକିନା, ଯୀଶୁ ଥିଲେ ଯୋଉ ଦୁନିଆର ବାସିନ୍ଦା, ସେଠି ପ୍ରତ୍ନଖନନର ସୁଯୋଗ ଥିଲାନାହିଁ । ଦ୍ୱିତୀୟତଃ, ପ୍ରତ୍ନତାତ୍ତ୍ୱିକ ଉଦ୍‌ଘାଟନ ଏବେ ସମ୍ଭବପର ହୋଇଚି, କାହିଁକିନା, ଇହୁଦୀ ଓ ଖ୍ରୀଷ୍ଟୀୟ ଅନୁସନ୍ଧିତ୍ସୁଙ୍କ ଭିତରେ ଘଟିଚି ପରସ୍ପର ସହଯୋଗ । ଯା ନଥିଲେ, ଯୀଶୁଙ୍କୁ ମହାଜାଗତିକ କୁଜ୍‌ଝଟିକା ଅନ୍ତରାଳରୁ ଇତିହାସର ଦିବାଲୋକକୁ ଆଣିବା ଖାଲି ପଣ୍ଡଶ୍ରମ ନୁହେଁ, ହୋଇଥାନ୍ତା

ହାସ୍ୟକର । ସୁସମାଚାର ଚତୁଷ୍ଟୟ ପ୍ରଣୟନକରିଚ଼ନ୍ତି ମହାମାନ୍ୟ ଚାରିଜଣ ସନ୍ଥ; ତାଙ୍କ ଛିଦ୍ରାନ୍ୱେଷଣ ଗୋହତ୍ୟା ବ୍ରହ୍ମହତ୍ୟା ଭଳି ମହାପାତକ ହେଲେସୁଦ୍ଧା ବିଂଶଶତକରେ ଭାଷାତତ୍ତ୍ୱ ଏତେଉନ୍ନତ ହୋଇଚ଼ି ଯେ, ତା ସାହାଯ୍ୟରେ ନିବିଡ଼ପଠନ କାଢିଆଣିପାରେ ଅର୍ଥ-ଅସଙ୍ଗତି ବିଶେଷତଃ *ନିଉ ଟେଷ୍ଟାମ୍ୟାଣ୍ଟରେ* । ଧର୍ମଗ୍ରନ୍ଥ *ବାଇବେଲ୍* ର ଅନ୍ତଖଣ୍ଡକୁ 'ନିଉ' ଓ ଆଦ୍ୟଖଣ୍ଡକୁ 'ଓଲ୍ଡ' ଆଖ୍ୟା ଦିଆଯାଇଚ଼ି; ନବବିଧାନରେ ବର୍ଣ୍ଣିତହେଇଚି ଯୀଶୁଙ୍କ ମାଧମରେ ଈଶ୍ୱରଙ୍କ ସହିତ ମାନବପ୍ରଜାତିର ଆଧାତ୍ମିକ ଚୁକ୍ତି; ଆଉ ପୂର୍ବଭାଗରେ ଅଛି ଯୀଶୁ ଭୂମିଷ୍ଠ ହେବାଯାଏଁ ଇସ୍ରାଇଲ୍ ଜାତିର ଇତିହାସ, ମୌଜେଜ୍‌ଙ୍କ ମାଧମରେ ଇହୁଦୀଜାତିର ପରମେଶ୍ୱରଙ୍କ ସାଙ୍ଗରେ ଚୁକ୍ତି । ଆବିଷ୍କୃତ ପ୍ରତ୍ନସାକ୍ଷ୍ୟ ସହିତ ପ୍ରାଚୀନ ଇହୁଦୀ ଓ ଅଣଇହୁଦୀ ଜଗତର ଆଭ୍ୟନ୍ତରୀଣ ସାଯୁଜ୍ୟ କିମ୍ବା ସାଯୁଜ୍ୟର ଅଭାବ ଏବଂ ପରିଶେଷରେ, ସଂଗୃହୀତ ତଥ୍ୟର ଇତିହାସସମ୍ମତ ଅନ୍ୱୟ—ଏଇ ବାଟଧରି ଚାଲିଛି ଅନୁସଂଧାନ, ପୁରାଣର ଗ୍ରନ୍ଥିମୋଚ଼ନ । ସନ୍ଦେହ ନାହିଁ, ଆଧୁନିକ ଜାତି-ରାଷ୍ଟ୍ର ଇସ୍ରାଏଲ୍‌ର ଭିତ୍ତିପତନ ହୋଇନଥିଲେ, ଗବେଷଣା କେବେହେଲେ ଫଳପ୍ରଦ ହୁଅନ୍ତାନାହିଁ, ଯେମିତି ପ୍ରାଚୀନ ଇସ୍ରାଏଲ୍‌ର ଭିତ୍ତି ଭାଙ୍ଗିଯାଇ ନଥିଲେ ଇସ୍ରାଏଲ୍‌ର ତତ୍କାଳୀନ ଧର୍ମଧାରାରୁ ଅଭ୍ୟୁତ୍‌ଥାନ ଘଟିନଥାନ୍ତା ସ୍ୱତନ୍ତ୍ର ଏଇ ଖ୍ରୀଷ୍ଟଧର୍ମର । ରୋମାନ୍ ଯୁଦ୍ଧଯନ୍ତ୍ର ପ୍ରାଚୀନ ଇସ୍ରାଏଲ୍‌କୁ ଖତମ୍‌କରିଦେଇଛି ସତୁରି ଖ୍ରୀଷ୍ଟାବ୍ଦରେ; ଏବଂ ୧୩୫ ଖ୍ରୀଷ୍ଟାବ୍ଦରୁ ଇହୁଦୀଜାତି ଏସିଆ-ଇଉରୋପର ବିଭିନ୍ନ ପ୍ରାନ୍ତରେ ବିକୀର୍ଣ୍ଣହୋଇ ବଞ୍ଚିତହୋଇଚ଼ନ୍ତି ସ୍ୱାୟତ୍ତଶାସନ ଅଧିକାରରୁ; ଜେରୁସାଲେମ୍ ନଗରୀରେ ପ୍ରବେଶ ସୁଦ୍ଧା ହୋଇଯାଇଚ଼ି ନିଷିଦ୍ଧ । ଏତେଗୁଡ଼ାକ ଘଟଣା ଏକାସାଙ୍ଗରେ ଘଟିନଥିଲେ ଯୀଶୁ ହୁଏତ ହୋଇଥାନ୍ତେ ଇହୁଦୀଜାତିର ଅନ୍ୟତମ ପୟଗମ୍ବର ଏବଂ କାଳକ୍ରମେ *ଓଲ୍ଡ ଟେଷ୍ଟାମ୍ୟାଣ୍ଟ*ରେହିଁ ସମାସୀନ । ତା'ନହୋଇ, ଇହୁଦୀ ସମାଜବ୍ୟବସ୍ଥାର ନିର୍ଭୀକ ଏଇ ସମାଲୋଚ଼କଙ୍କୁ କେନ୍ଦ୍ରକରି ଗଢିଉଠିଚ଼ି ଏକେବାରେ ଅଲଗା ଆରେକ ଧର୍ମ । ଏତେଦିନ ଉତାରୁ ଇହୁଦୀ କ୍ଷମତାଘାଟି ଫେର୍ ତିଆରିହୋଇଚ଼ି ପଶ୍ଚିମ-ଏସିଆରେ, ଏବଂ ଐତିହ୍ୟଗର୍ବସ୍ଫୀତ ଇହୁଦୀ, ହୃତଗୌରବ ପୁନରୁଦ୍ଧାର କଳ୍ପେ ଆରମ୍ଭକରିଚ଼ନ୍ତି ପ୍ରତ୍ନତାତ୍ତ୍ୱିକ କ୍ଷେତ୍ରସମୀକ୍ଷା । ଏକମାତ୍ର ଉଦ୍ଦେଶ୍ୟ, ପୃଥିବୀ ସମକ୍ଷରେ ପ୍ରମାଣକରିଦେବା ଯେ ସେମାନେ ସର୍ବକାଳର ବିଶିଷ୍ଟ; ଖ୍ରୀଷ୍ଟାନ୍‌ଦୁନିଆର ଅବଜ୍ଞା, ଅନୁକମ୍ପା କି ବିଦ୍ୱେଷର ପାତ୍ରନୁହେଁ ଜମାରୁ । ଖ୍ରୀଷ୍ଟାନ୍ ଆଉ ଇହୁଦୀ ପଣ୍ଡିତଙ୍କ ଯୌଥ ଓ ସମବେତ ଗବେଷଣା, ସେଥିପାଇଁ, ଖାଲି ସମ୍ଭବପର ହୋଇନାହିଁ ଇଦାନୀଂ, ଗବେଷଣାର ଗୁଣଗତ ମାନ ମଧ ପହଞ୍ଚିଛି ଆନ୍ତର୍ଜାତିକ ସ୍ତରରେ ।

ବିଂଶଶତକ ପ୍ରାରମ୍ଭରେ ଢେର୍ ଜର୍ମନ୍ ବୁଦ୍ଧିଜୀବୀ ଅଭିମତ ପ୍ରକାଶକରନ୍ତି ଯେ ଯୀଶୁ ବାସ୍ତବିକ୍ ଏକ ପୌରାଣିକ ଚରିତ୍ର, ପୂରାପୂରି କପୋଳକଳ୍ପିତ; ସେଭଳି କୋଉ ରକ୍ତମାଂସର ମଣିଷ ଥିଲାନାହିଁ କି ଥାଇପାରେନା । ପୁରାକାଳରେ ଜନପ୍ରିୟ ଅବତାରବାଦ ପ୍ରାବଲ୍ୟରୁହିଁ ଯୀଶୁଚରିତର ଉତ୍ପତ୍ତି, ଏବଂ ସେଥିପାଇଁ, ସୁସମାଚାରର ବିବରଣ ଉପନ୍ୟାସ ପରି ସାହିତ୍ୟଧର୍ମୀ । ଏ ଦୃଷ୍ଟିକୋଣ ତରୁଣ ଲେନିନ୍‌ଙ୍କ ମନକୁ ମଧ ପାଇଚି, ଯା ଫଳରେ, ନବଗଠିତ ସୋଭିଏଟ୍ ପ୍ରଜାତନ୍ତ୍ରର ସାମ୍ୟବାଦୀ ଭାବାଦର୍ଶରେ ସେଇ ମତବାଦ ସ୍ଥାନ ପାଇଯାଇଛି । ମାତ୍ର ସାମ୍ପ୍ରତିକ ଗବେଷଣା ଯୋଉ ସାକ୍ଷ୍ୟ ଆବିଷ୍କାରକରିଚି, ତା'ର ମିଳିତ ଆଲୋକ ଅବିସମ୍ବାଦିତଭାବେ ପ୍ରତିଭାତକରେ ଯେ ଯୀଶୁ ନାମଧାରୀ ଇହୁଦୀ, ଜନୈକ ଧର୍ମଗୁରୁ, ସତକୁସତ ଦେହଧାରଣ କରିଥିଲେ ନିକଟ-ପ୍ରାଚ୍ୟ ଭୂଖଣ୍ଡରେ ପ୍ରାୟ ଦୁଇହଜାର ବର୍ଷ ଆଗରୁ । ଏ ସାକ୍ଷ୍ୟର ସୂତ୍ର ମିଳିଚି ସେଣ୍ଟ୍ ପଲ୍-ଙ୍କ ଲେଖାଲେଖିରୁ, ଯୀଶୁମୃତ୍ୟୁର ଅଠର ଓ ତେତିଶବର୍ଷ ମଧ୍ୟରେ ଯା ରଚିତ; ପୁଣି ଇହୁଦୀ ମାଦଳାପାଞ୍ଜି *ତାଲମୁଦ୍*-ରୁ; ତା ଭିତରେ ସଂରକ୍ଷିତ ଅଛି ଐତିହ୍ୟର ପ୍ରତିକୃତି ପ୍ରବାଦ-ପ୍ରବଚନ ଆକାରରେ । ରାଷ୍ଟ୍ର ଧ୍ୱଂସହୋଇଯିବା ଉତ୍ତାରୁ ଏଭଳି ସଂରକ୍ଷଣ ଇହୁଦୀ ସାମାଜପତିଙ୍କୁ ଲାଗିଚି, ଅନାଗତ ପ୍ରଜନ୍ମପାଇଁ ହେବ ଦିକ୍‌ନିର୍ଦ୍ଦେଶକ । ସାକ୍ଷ୍ୟ ପୁଣି ଆସେ ଆନୁମାନିକ ୯୪ ଖ୍ରୀଷ୍ଟାବ୍ଦରେ ଲେଖାହୋଇଥିବା ଇହୁଦୀ ଐତିହାସିକ ଫ୍ଲାଭିୟୁସ୍ ଯୋସିଫୁସ୍‌ଙ୍କ *ଇହୁଦୀ-ଇତିବୃତ୍ତ* ଗ୍ରନ୍ଥରୁ ଆଉ ରୋମାନ୍ ବିଦ୍ୱାନ୍ ଟାସିଟୁସ୍‌ଙ୍କ ଲେଖାରୁ । ଟାସିଟୁସ୍ ୧୧୫ ଖ୍ରୀଷ୍ଟାବ୍ଦରେ ଲେଖନ୍ତି ଯେ ରୋମାନ୍ ସମ୍ରାଟ୍ ତିବେରିୟୁସ୍‌ଙ୍କ ରାଜତ୍ୱକାଳରେ ୨୬ରୁ୩୬ ସାଲ୍ ପର୍ଯ୍ୟନ୍ତ ରୋମ୍‌ଶକ୍ତିର ରାଜପ୍ରତିନିଧି ଭାବରେ ଜୁଡିଆ (=ଇସ୍‌ରାଏଲ୍) ଅଞ୍ଚଳରେ ପ୍ରଭୁତ୍ୱ କରିଚନ୍ତି ପାନ୍ତିୟୁସ୍ ପିଲାତୁସ୍ (=ପାଇଲେଟ୍) ଏବଂ ତାଙ୍କରି ଆଦେଶକ୍ରମେ ଯୋଉ ଖ୍ରୀଷ୍ଟଙ୍କୁ ପ୍ରାଣଦଣ୍ଡ ଦିଆଯାଏ, ତାଙ୍କରି ନାଁରେ ନାମିତହୋଇଚି ଖ୍ରୀଷ୍ଟାନ୍ ସମ୍ପ୍ରଦାୟ । ଚୌଷଠି ମସିହାରେ ରୋମ୍ ନଗରୀ ଅଗ୍ନିଦଗ୍ଧ ହେବାପରେ ସମ୍ରାଟ୍ ନିରୋ କୁଆଡ଼େ ଖ୍ରୀଷ୍ଟାନ୍‌ଙ୍କ ମୁଣ୍ଡରେ ବୋଳିଦିଅନ୍ତି ପଣସଅଠା; ଖ୍ରୀଷ୍ଟାନ୍ ସେତେବେଳେ ରୋମାନ୍‌ଙ୍କ ଭିତରେ ସଂଖ୍ୟାଲଘୁ, ଏବଂ ଜନପ୍ରିୟ ନୁହେଁ ଜମାରୁ, ଯେମିତି ଏଠି ମାରୁଆଡ଼ୀ । ଟାସିଟୁସ୍ ଖ୍ରୀଷ୍ଟଙ୍କ ବିଷୟରେ ଏକଥା ଲେଖିଚନ୍ତି, ନିରୋଙ୍କ ରାଜତ୍ୱ ଆଲୋଚନା ଉପଲକ୍ଷରେ । ମାତ୍ର ଯୀଶୁଙ୍କ ପ୍ରାଣଦଣ୍ଡ ଆନୁମାନିକ ଯୋଉ ସମୟରେ ଘଟିଛି, ତିବେରିୟୁସ୍‌ଙ୍କ ରାଜ୍ୟତର ସେଇ ବର୍ଷଗୁଡ଼ାକର ବୃତ୍ତାନ୍ତ ଟାସିଟୁସ୍‌ଙ୍କ ଲେଖାରେ

ଆଶ୍ଚର୍ଯ୍ୟଜନକ ଭାବେ ଅନୁପସ୍ଥିତ । ସେଥିରୁ ଅନୁମାନ କରାଯାଉଛି, ତାସିତୁସ୍ ହୁଏତ ଖ୍ରୀଷ୍ଟ ସମ୍ବନ୍ଧରେ ବିରୂପ କିଛି ମନ୍ତବ୍ୟ କରିଥିଲେ; ଏବଂ ମଧ୍ୟଯୁଗରେ ଯୋଉ ଖ୍ରୀଷ୍ଟାନ୍ ସନ୍ନ୍ୟାସୀ ତାସିତୁସ୍‌ଙ୍କ ପୋଥିର ପ୍ରତିଲିପି ପ୍ରସ୍ତୁତକରିଚ୍ନ୍ତି, ବିସଦୃଶ ସେଇ ଅଂଶଟିକୁ 'ପ୍ରକ୍ଷିପ୍ତ' ବିବେଚନାରେ ବର୍ଜନ କରିଚ୍ନ୍ତି । ଜୋସିଫୁସ୍ ଛାଡ଼ିଯାଇଥିବା ପୋଥିର ପ୍ରତିଲିପିକାର ମଧ୍ୟ ଅନୁରୂପ ସ୍ୱାଧୀନତା ପ୍ରୟୋଗକରିଛନ୍ତି ବୃତ୍ତାନ୍ତ ଯୋଉଠି ମନକୁ ପାଇନାହିଁ ।

ଲାଟିନ୍ ଓ ହିବ୍ରୁ ସାହିତ୍ୟରେ ଏଭଳି ଦୃଷ୍ଟାନ୍ତ ଆହୁରି ଅନେକ, ମାତ୍ର ସହାୟକ ପ୍ରମାଣ ମାତ୍ର, ଅସଲ ପ୍ରତ୍ନପ୍ରମାଣ ମିଳିଛି/ମିଳୁଛି ପ୍ରତ୍ନଖନନଲବ୍ଧ ବସ୍ତୁଗତ ସାକ୍ଷ୍ୟରୁ, ଯା ରୀତିମତ ଚାଞ୍ଚଲ୍ୟକର । ସୁସମାଚାର ଚତୁଷ୍ଟୟ ତଥା ଜୋସିଫୁସ୍‌ଙ୍କ ଇତିବୃତ୍ତରୁ ଜେରୁସାଲେମ୍ ନଗରୀ ଓ ଉପକଣ୍ଠର ଯୋଉ ଭୌଗୋଳିକ ପରିଚ୍ୟ ମିଳେ, ସେଇ ଲୁପ୍ତ ଜଗତକୁ ପ୍ରତ୍ନତତ୍ତ୍ୱବିତ୍ ମାଟିତଳୁ କାଢ଼ିଆଣିଛନ୍ତି (ଦ୍ର. Yagel Yadin(ed.), Jerusalem Revealed, Yale University Press and Israel Exploration Society, 1976) । ମାତ୍ର ଖୋଳାଖୋଳି ସରିଯାଇନାହିଁ, ନୂଆ ନୂଆ ସମସ୍ୟା ଉପରେ କ୍ରମାଗତ ଆଲୋକପାତ ଚାଲିଛି; ଯେପରି, ୨୦୦୪ ସାଲ୍‌ରେ ଯୀଶୁଙ୍କ ପରିବାର ଯୋଉଠି ରହୁଥିଲେ, ତା ମାଟିତଳୁ ହାଡ଼ଗୋଡ଼ ଓ ବଢ଼େଇ/କମାରଶାଳର ଧ୍ୱଂସାବଶେଷ ସାଙ୍ଗକୁ ତାଙ୍କ ଭାଇମାନଙ୍କ ପରିଚୟ; ପୁଣି ଏଇ କେତେଦିନ ତଳେ ଆସୋସିଏଟିଡ୍ ପ୍ରେସ୍ ଜେରୁସାଲେମ୍‌ରୁ ଜଣାଇଛି: Archaeologists have uncovered the stone remains of the biblical Siloam Pool in Jerusalem where the Bible says Jesus restored a blindman's eyesight—underlining the link between the works of Jesus and ancient Jewish rituals. Tucked away in what is now the Arab neighbourhood of Silwan, archaeologists are slowly digging out the Pool, where water still runs in the channel that brought water from a nearby spring. The Siloam Pool was used by Jews for ritual immersions for about 120 years until the year 70, when the Romans destroyed the Jewish Temple. Many of Jesus' act

are directly linked to Jewish rituals, and the miracle of the blindman is an example. Jesus put clay in the blindman's eyes and then told him to wash them out in the pure waters of the Siloam Pool, restoring his eyesight (*John 9:1-7*) । ଏ ଅନୁସଂଧାନ ଗୋଏନ୍ଦାତଦନ୍ତ ଭଳି ଲୋମହର୍ଷକ; କିନ୍ତୁ ସଂଗୃହୀତ ସାକ୍ଷ୍ୟ ପ୍ରେକ୍ଷିତରେ ସୁସମାଚାରକୁ ଆଉ ଉପନ୍ୟାସ କହିହେବନାହିଁ ।

ଖ୍ରୀଷ୍ଟପୂର୍ବ ତେଷଠି ସାଲ୍ ବେଳକୁ ରୋମାନ୍ ଆଧିପତ୍ୟ ମାନିନେବାକୁ ଇହୁଦୀ ପ୍ରାୟ ବାଧହୋଇଛନ୍ତି । ବିଜୟୀଶକ୍ତିର ପ୍ରତିଭୂ, ସାମନ୍ତରାଜା ହେରଦ୍‌ଙ୍କ ବଂଶାନୁକ୍ରମିକ ରାଜତ୍ୱକୁ ମଧ ନମାନି ପ୍ରାଣଧରି ବଞ୍ଚିବା ସମ୍ଭବପର ହୋଇନାହିଁ । ହେରଦ୍, ଦି ଗ୍ରେଟ୍, ଖ୍ରୀଷ୍ଟପୂର୍ବ ୩୭ ରୁ ୪ ସାଲ୍ ଅବଧି ଥିଲେ ଇସ୍ରାଏଲ୍‌ର ଅଧୀଶ୍ୱର, ଏବଂ ତାଙ୍କରି ଅମଳରେ ଜେରୁସାଲେମ୍, ବିତ୍ତ ଓ ସ୍ଥାପତ୍ୟରେ ସମୃଦ୍ଧହୋଇଉଠିଚି ମାତ୍ର ତେତିଶବର୍ଷ ଭିତରେ । ସ୍ୱଦେଶସ୍ଥ ଓ ପ୍ରବାସୀ ଇହୁଦୀଙ୍କ ପାଖରୁ ଦାନ (ଟ୍ୟାକ୍ସ) ସଂଗ୍ରହକରି ଜେରୁସାଲେମ୍‌ର ଭଗ୍ନମନ୍ଦିର ପୁନର୍ନିର୍ମିତ କରିଛନ୍ତି ହେରଦ୍; ବିପୁଳାୟତନ ସେ ଦେବାଳୟ ବିବେଚିତହୁଏ ଇହୁଦୀ ଜାତିର ଗୌରବ; ସେଠି ଲାଗିରହେ ଅହୋରାତ୍ର ପୁଣ୍ୟପରବ ପୂଜାଧ୍ୱଜା ପଶୁବଳି ଦାନଧ୍ୟାନ । ଜେରୁସାଲେମ୍ ନଗରୀକୁ ସେଥିରୁ ଧନାଗମ ହୁଏ ସତେଅବା ବଢ଼ିପାଣି, ମନ୍ଦିର ପରିଚାଳନା କରୁଥିଲେ ଯଥାରୀତି ଅଭିଜାତ ପଣ୍ଡାପଢ଼ିହାରୀ, ସେମାନଙ୍କ କ୍ଷମତା ଓ ଅଧିକାର ଅବଶ୍ୟ ବଂଶପରମ୍ପରାରେ ପ୍ରଲମ୍ବିତ । ପୁରୋହିତଙ୍କ ଶିଖରରେ ଜଣେ ବଡ଼ପଣ୍ଡା, ତାଙ୍କ ତଳକୁ ପାହାଚ୍ ପାହାଚ୍ ହୋଇ ଆହୁରି ବେଢାଏ ପୂଜକ, ତାଙ୍କ ତଳକୁ ୭୨୦୦ ଶିକ୍ଷାନବିସ ଆଉ ସୁଆର-ଖୁଣ୍ଟିଆ-ମାଳୀ-ଗଉଡ଼-ବାରିକ ଭଳି ଅସୁମାରି ଅଧସ୍ତନ ନିଯୋଗ । ଉଚ୍ଚବର୍ଗ ପୁରୋହିତ କିନ୍ତୁ ଗ୍ରୀକୋ-ରୋମାନ୍ ସ୍ଥାପତ୍ୟରୀତିରେ ନିର୍ମିତ ପଥର 'ଭିଲା'ରେ ରହନ୍ତି; ବିଳାସବହୁଳ ସେଇ ଜୀବନଯାତ୍ରା । ଘରଚଟାଣରେ ବର୍ଣ୍ଣାଢ଼୍ୟ ମୋଜାଇକ୍ ଆଉ କାନ୍ଥରେ ମିଉରାଲ୍, ସ୍ନାନାଗାରରେ ଗରମପାଣି । ମାର୍ବଲ୍ ଟେବୁଲ୍, କାଚ୍ ଭୋଜନପାତ୍ର, ଇଟାଲୀରୁ ଆମଦାନୀ ସୁରାକଳସ । ଦେବାଳୟ ଓ ପୂଜକବର୍ଗଙ୍କ ଗୃହସ୍ଥଳିର ଭଗ୍ନାବଶେଷରୁ ଦିଶୁଚି ସୁସମାଚାରରେ ବିବୃତ ପରିପାର୍ଶ୍ୱ-ବର୍ଣ୍ଣନା ମୋଟେ ମନଗଢା ନୁହେଁ; ଅର୍ଥାତ୍ ଅଭିଜାତ ଏଇ ସ୍ୱେଚ୍ଛାଚାରୀ ଗୋଷ୍ଠୀ ସାଙ୍ଗରେ ଯୀଶୁଙ୍କ ସଂଘର୍ଷ ଥିଲା ଅବଶ୍ୟମ୍ଭାବୀ । ଦେଉଳ ଦକ୍ଷିଣକୁ ବାହାରିଚି ଚୌଷଠିମିଟର୍ ଓସାର

ପ୍ରଶସ୍ତ ପାବଚ୍ଛଶ୍ରେଣୀ; ସେଇଠି ସମ୍ଭବତଃ ଶୁଣାଇଥିଲେ ଯିଶୁ ଅନ୍ତିମ ଧର୍ମୋପଦେଶ । ରାଜଦ୍ରୋହ ଅଭିଯୋଗ ବିଚାରକରିଥିଲେ ପଣ୍ଟିୟୁସ୍ ପିଲାତୁସ୍; ତାଙ୍କ ପ୍ରାସାଦର ଧ୍ୱଂସାବଶେଷ ମଧ୍ୟ ବାହାରିଚି ମାଟିତଳୁ ।

ଏ ସମାଜର ଗୃହୀତ ବିଧାନ ଥିଲା ପାଷଣ୍ଡ ଦୁଷ୍କୃତକାରୀକୁ କ୍ରୁଶବିଦ୍ଧକରି ମୃତ୍ୟୁଦଣ୍ଡ । ପ୍ରାଚୀନ ଜେରୁସାଲେମ୍‌ରୁ ମୋଟେ ମାଇଲ୍‌ଖଣ୍ଡେ ଦୂର ଉତ୍ତର-ପଶ୍ଚିମରୁ କ୍ରୁଶବିଦ୍ଧ ଏକ ପୁରୁଷର କଙ୍କାଳ ମଧ୍ୟ ବାହାରିଚି; ଜଣାପଡୁଚି, ଦେହର ଠିକ୍ କୋଉ ଜାଗାଗୁଡ଼ାକରେ ଲୁହାକଣ୍ଟା ପିଟାହେଉଥିଲା । ସନ୍ଥମାନେ ଉଲ୍ଲେଖକରିଥିବା ବେଥେସ୍‌ଦା ପୁଷ୍କରିଣୀକୁ ସୁଦ୍ଧା ଚିହ୍ନଟକରିଚନ୍ତି ପ୍ରତ୍ନବିତ୍; ଆଉ, ଯୋଉ ରକମ କବର ଦିଆଯାଇଥିଲା ଯୀଶୁଙ୍କୁ, ସେ ପ୍ରକାର ଗୁହାହିତ ସମାଧି ମଧ୍ୟ ବାହାରିଚି ଗୋଟାକେତେ । ତା'ଛଡ଼ା, କିଛି ପ୍ରାଚୀନ ପୋଥି, ଗ୍ରୀକ୍‌ଭାଷାରେ ଲେଖାହୋଇଥିବା *ନିଉ ଟେଷ୍ଟାମେଣ୍ଟ* ର ମୂଳ ସଂସ୍କରଣ ମଧ୍ୟ ମିଳିଛି ମିଶରରୁ । ମିଶରର ଶୁଖିଲା ପାଗ ପୋଥିସଂରକ୍ଷଣ ପାଇଁ ଥିଲା ଆଦର୍ଶ ଆବହାଓ୍ୱା । ହେଲେସୁଦ୍ଧା ପ୍ୟାପିରସ୍ ଉପରେ ହସ୍ତାକ୍ଷରରେ ଲିପିବଦ୍ଧ ଯୋଉ ପୃଷ୍ଠାଗୁଡ଼ାକ ଉଦ୍ଧାରକରାଯାଇଚି, ସବୁଯାକ ପ୍ରାୟ ଜୀର୍ଣ୍ଣ ଓ ଭଗ୍ନ । ସେଇ ଅଶୀଖଣ୍ଡରେ ଉତ୍‌କୀର୍ଣ୍ଣ ହସ୍ତଲିପିକୁ ପରୀକ୍ଷାକରି ୧୩୦ରୁ ୩୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ସ୍ଥିରକରାଯାଇଚି, ଉତ୍ପନ୍ନକାଳ । ସେଥିରୁ ଅନୁମାନ, ସବୁଯାକ ଗସ୍‌ପେଲ୍ ୧୦୦ ଖ୍ରୀଷ୍ଟାବ୍ଦ ଭିତରେ, ଯୀଶୁଙ୍କ ତିରୋଧାନରୁ ଶହେବର୍ଷ ପୂରିବା ଆଗରୁ ଲେଖାସରିଚି; କିନ୍ତୁ ପ୍ରଚାରହୋଇଚି ବିଭିନ୍ନ କ୍ରମରେ । (ପରେ ଅବଶ୍ୟ, ତିନିଟିଯାକ ଗସ୍‌ପେଲ୍‌କୁ ପାଖକୁପାଖ ଥୋଇ ଏକାସାଙ୍ଗରେ ପଢ଼ିବାରୀତି ପ୍ରବର୍ତ୍ତିତହୋଇଚି ଏବଂ ସେ ରୀତିକୁ କହୁଚନ୍ତି 'ସିନପ୍ଟିକ୍') । ଆଉଏକ ଉଲ୍ଲେଖଯୋଗ୍ୟ ଆବିଷ୍କାର, 'ମୃତସାଗର' ନାମକ ହ୍ରଦତୀରବର୍ତ୍ତୀ କୁମ୍‌ରାନ୍‌ରୁ ପ୍ରାପ୍ତ ଗୁହାହିତ ରାଶିକୃତ ପ୍ରାଚୀନପୋଥି । ଯୀଶୁଙ୍କ ଅମଳରେ ଏସିନ୍ ନାମଧେୟ ଏକ ବିଶିଷ୍ଟ ଇହୁଦୀ ସଂପ୍ରଦାୟର ଆଶ୍ରମ ଥିଲା ଏଇ କୁମ୍‌ରାନ୍ । ଏ ପୋଥିଖେଦାର ଗାଦି ହୁଏତ ତାଙ୍କରି ଗ୍ରନ୍ଥାଗାରର ଅବଶେଷ । ୬୬ରୁ ୭୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଇହୁଦୀଙ୍କ ସାଙ୍ଗରେ ଚାଲିଥିଲା ରୋମ୍‌ର ଯୁଦ୍ଧ; ପୋଥିଗାଦିକୁ ନିରାପଦ କରିବା ସକାଶେ ଗୁମ୍ଫାଭିତରେ ଲୁଚାଇ ରଖାଯାଇଛି ନିଶ୍ଚୟ; ସଂଧାନ ମିଳିବାକୁ ସମୟ ଲାଗିଛି ୧୯୪୭ ପର୍ଯ୍ୟନ୍ତ, ଏବଂ ତା ମଧ୍ୟ ଆକସ୍ମିକ । ପୁନରୁଦ୍ଧୃତ ହୋଇଚି ମୋଟ ଛ'ଶହ ପୋଥି, ଯା ଲୁଚାଇ ରଖାଯାଇଥିବା ଗ୍ରନ୍ଥସମ୍ଭାରର ଅଂଶବିଶେଷ ଅଥବା ସମଗ୍ର । ଏସିନ୍ ସମ୍ପ୍ରଦାୟର ପରମାୟୁ ଧାର୍ଯ୍ୟହୋଇଚି ଖ୍ରୀଷ୍ଟପୂର୍ବ ୧୫୦ରୁ ୬୮

ଖ୍ରୀଷ୍ଟାବ୍ଦ; ଖ୍ରୀଷ୍ଟପ୍ରଚାରିତ ଧର୍ମ ସହିତ ତାଙ୍କ ସମ୍ପର୍କ ବିବେଚିତହୋଇଛି ଗୁରୁତ୍ୱପୂର୍ଣ୍ଣ, କାହିଁକିନା, ଇହୁଦୀ ଧର୍ମମତର ପ୍ରଚଳିତଧାରାକୁ କ୍ଷୟିଷ୍ଣୁ ବିଚାରକରି ଏସିନ୍ ଚାହିଁଥିଲେ ମୁସା (=ମୌଜେଜ୍)ଙ୍କ କାଳର ମରୁଜୀବନକୁ ପ୍ରତ୍ୟାବର୍ତ୍ତନ, କାହିଁକିନା, ପ୍ରତ୍ୟୟ ଜନ୍ମିଛି, ଧରଣୀ ଏକ୍ଷଣି ପାପକ୍ଲିଷ୍ଟ, ଈଶ୍ୱର ତେଣୁ ହସ୍ତକ୍ଷେପକରିବେ ଯଥାଶୀଘ୍ର; ଅବତରଣ କରିବ ସ୍ୱର୍ଗରାଜ୍ୟ । ଏଇ ପ୍ରତ୍ୟାଶାରେ ମରୁଜୀବନର ଯାବତୀୟ କ୍ଳେଶ ସହ୍ୟକରି, କଠୋର ସନ୍ନ୍ୟାସବ୍ରତ ପାଳନକରିଛନ୍ତି ଏସିନ୍; ବ୍ରତପାଳନରେ ଆନୁଷ୍ଠାନିକ ଆହାର ଥିଲା ରୁଟି ଆଉ ମଦ; ଆଉ, ଯୋଉ ତ୍ରାଣକର୍ତ୍ତାଙ୍କ ଆବିର୍ଭାବକୁ ପ୍ରତୀକ୍ଷାକରୁଥିଲେ ଅଧୀର ଆଗ୍ରହରେ, ସିଏ ଜଣେ ନୁହେଁ, ଦି'ଜଣ । ସନ୍ଦେହ ନାହିଁ, ଏମାନଙ୍କ ଦ୍ୱାରା ହିଁ ପ୍ରଭାବିତ ହୋଇଥିଲେ ବ୍ୟାପ୍‌ଟିସ୍ଟ ଜନ୍ । କୁମ୍‌ରାନ୍‌ରୁ ଅନତିଦୂରରେ ତାଙ୍କ ଆବିର୍ଭାବ । ମାତ୍ର ବ୍ୟାପ୍‌ଟିସ୍ଟ ଜନ୍, ନିର୍ଜନଜାଗାରେ ଏସିନ୍‌ଙ୍କ ଭଳି ଗୋଠବାନ୍ଧି ବସି ନରହି, ଚାହିଁଛନ୍ତି ବୃହତ୍ତର ଇହୁଦୀସମାଜ ସମକ୍ଷରେ ପ୍ରଚାରକରିବେ ସ୍ୱର୍ଗରାଜ୍ୟର ଆସନ୍ନ ଅବତରଣ ବାର୍ତ୍ତା । ତାଙ୍କରି ହାତରେ ଘଟିଛି ଯୀଶୁଙ୍କ ଦୀକ୍ଷାଗ୍ରହଣ । ଅନ୍ୟ ଶବ୍ଦରେ, ସ୍ୱର୍ଗରାଜ୍ୟର ଆଗମନୀବାର୍ତ୍ତା ଜନସାଧାରଣ୍ୟେ ଘୋଷଣାର ପ୍ରେରଣା ଯୀଶୁଙ୍କୁ ଦେଇଛନ୍ତି ବ୍ୟାପ୍‌ଟିସ୍ଟ ଜନ୍ । ମାତ୍ର ଚେଲା ଆହୁରି ହାତେ ଆଗେଇଯାଇ ଘୋଷଣାକରିଦେଇଛି, ଆସନ୍ନ ନୁହେଁ, ସ୍ୱର୍ଗରାଜ୍ୟ ସମାଗତ ଏକେବାରେ ଦାଣ୍ଡମଝିରେ । ସେକାଳର ଖ୍ରୀଷ୍ଟାନ୍, ଜନ୍ ଓ ଯୀଶୁଙ୍କ ମୁଖନିଃସୃତ ଏ ସମ୍ବାଦ ପ୍ରଘଟକରିବା କାମକୁ ଭାବିଚନ୍ତି ପବିତ୍ର କର୍ତ୍ତବ୍ୟ; ଏଣେ ଈଶ୍ୱରଙ୍କ ପ୍ରତୀକ୍ଷାରେ ନିବିଷ୍ଟ ଏସିନ୍ ଭାବିଛନ୍ତି, ଯୀଶୁ ହିଁ ସେଇ ଈଶ୍ୱର । ଏ ବିଶ୍ୱାସ ଥିଲା ତୀବ୍ର ଓ ଆନ୍ତରିକ, କାହିଁକିନା, ଧାରଣା ବଦ୍ଧମୂଳ ହୋଇଯାଇଥିଲା ଯେ ସ୍ୱର୍ଗରାଜ୍ୟର ମର୍ତ୍ତ୍ୟାବତରଣ ଘଟିଯାଇପାରେ ଯେକୌଣସି ମୁହୂର୍ତ୍ତରେ । ସେଥିପାଇଁ ହୁଏତ ଯୀଶୁଙ୍କ ଜୀବଦ୍ଦଶାରେ ଜୀବନୀ ଲେଖିବାକୁ ବାହାରିନାହାନ୍ତି କୋଉହେଲେ ଶିଷ୍ୟ ।

ଯୀଶୁଙ୍କ ପ୍ରୟାଣ ଘଟିଚି ୩୦ କି ୩୩ ଖ୍ରୀଷ୍ଟାବ୍ଦରେ, ଆଉ ଗସ୍‌ପେଲ୍ ଲେଖାଯାଇଚି ୫୦ରୁ୧୦୦ ଖ୍ରୀଷ୍ଟାବ୍ଦ ଭିତରେ, ଯଦିଓ କାହାରି କାହାରି ଧାରଣା, ସତୁରି ଖ୍ରୀଷ୍ଟାବ୍ଦରେ ଜେରୁସାଲେମ୍ ଧ୍ୱଂସହୋଇଯିବା ଆଗରୁ ଗସ୍‌ପେଲ୍ ଚତୁଷ୍ଟୟର ରଚନା ସମାପ୍ତହୋଇଛି; ଅନ୍ୟଥା ଏତେବଡ଼ ଭୟଙ୍କର ଘଟଣାର ଉଲ୍ଲେଖ ଅନ୍ତତଃ ଗୋଟାକରେ ହେଲେ ଥାଆନ୍ତା । ଐତିହାସିକ ଏଇ ସାକ୍ଷ୍ୟ ପ୍ରେକ୍ଷିତରେ ଗସ୍‌ପେଲ୍ ଚତୁଷ୍ଟୟର ପ୍ରାମାଣିକତା ବିବେଚ୍ୟ, କାହିଁକିନା, ଯୀଶୁଙ୍କ ଜୀବନର ଘଟଣାବଳୀ

ସମ୍ପର୍କରେ ଏଇ ପ୍ରମାଣ ହିଁ ନିର୍ଭରଯୋଗ୍ୟ ଉତ୍ସ; ତନ୍ମଧ୍ୟରେ ସନ୍ଥ ମାର୍କଙ୍କ ରଚନା ଅବଶ୍ୟ ସର୍ବାଧିକ ପୁରାତନ, ତା ପଛକୁ ଆସିଚି ମାଥ୍ୟୁ ଆଉ ଲ୍ୟୁକ୍‌ଙ୍କ ଗ୍ରନ୍ଥଦ୍ୱୟ ଏବଂ ସବାଶେଷକୁ ସନ୍ଥ ଜନ୍‌ଙ୍କ ରଚ଼ନା; ମାତ୍ର ପରିଚିତ ଘଟଣାବଳୀର ପୌରାଣିକୀଭବନ ଚତୁର୍ଥ ଗ୍ରନ୍ଥଟିରେ ହିଁ ସର୍ବାଧିକ, କାହିଁକିନା, ଜନ୍‌ଙ୍କ ରଚ଼ନାରେ ହିଁ ଯୀଶୁଙ୍କ ଈଶ୍ୱର ରୂପ, ତ୍ରାଣକର୍ତ୍ତା ଭୂମିକା ପାଇଛି ପ୍ରାଧାନ୍ୟ । ଅପର ତିନିଟି ସଂସ୍କରଣରେ ଯୀଶୁଙ୍କ ମାନବ ରୂପଟି ହିଁ ସ୍ପଷ୍ଟତର, ଜଗତର ତାବତ୍ ପାପୀ-ପତିତଙ୍କ ଉଦ୍ଧାର ନିମନ୍ତେ ଯୀଶୁରୂପୀ ଈଶ୍ୱରଙ୍କ ମର୍ତ୍ତ୍ୟାବତରଣ— ପୂର୍ବକଳ୍ପିତ 'ପ୍ଲଟ୍' ଆଉ 'ଚରିତ୍ର'ର ସୁପରିକଳ୍ପିତ ଏ ଗଠନ ବାକି ତିନିଟିରେ ଅନୁପସ୍ଥିତ । ମାର୍କ ମ୍ୟାଥ୍ୟୁ ଓ ଲ୍ୟୁକ୍ ତେଣୁ ପୌରାଣିକ ନୁହେଁ । ଐତିହାସିକ ପୁରୁଷ ଯୀଶୁଙ୍କ ଯଥାର୍ଥ ପରିଚୟ ପାଇବାକୁ ସାହାଯ୍ୟକରେ ଏଇ ତିନିଟି ଗସ୍‌ପେଲ୍, ଯଦିଓ ସଂସ୍କରଣତ୍ରୟରେ ପାରସ୍ପରିକ ବିରୋଧ ଅବହେଳାଯୋଗ୍ୟ ନୁହେଁ; ମାତ୍ର ଧର୍ତ୍ତବ୍ୟନୁହେଁ ଏଇ କାରଣରୁ ଯେ ଚାରି-ପାଞ୍ଚଜଣ ପ୍ରତ୍ୟକ୍ଷଦର୍ଶୀ ସାମ୍ବାଦିକ ଏକାଘଟଣାର ପାଞ୍ଚରକମ ପ୍ରତିବେଦନ ପେଶ୍‌କରନ୍ତି ଆଜିକାଲି; ଯୋଉ ଯୁଗରେ ଟାଇପ୍‌ରାଇଟର୍, ଛାପାଖାନା, କ୍ୟାମେରା କି ଟେପ୍‌ରେକର୍ଡ଼ର୍ ନାଁ ବି ଶୁଣିନଥିଲେ ଲୋକ, ବରଂ ଅତିପ୍ରାକୃତରେ ବିଶ୍ୱାସ ଥିଲା ବଦ୍ଧମୂଳ, ତା ପାଖରୁ ଅଧିକତର ନିରପେକ୍ଷତା ପ୍ରତ୍ୟାଶା କରିବା ବୃଥା । ତେବେ, ଅସାମଞ୍ଜସ୍ୟର ଅନ୍ତତଃ ଗୋଟିଏ ନମୁନା ଦେଖାଯାଉ । ମାଥ୍ୟୁ କହିଛନ୍ତି ଯୀଶୁଙ୍କ ଅନ୍ତିମଭୋଜନ (=ଲାସ୍ଟ୍‌ସପର୍) ଘଟିଚି ଗୁରୁବାର, ଏବଂ ସେଦିନ ଥିଲା ଇହୁଦୀଙ୍କ ବାର୍ଷିକ ପରବ, 'ପାସ୍-ଓଭର୍' । ତହିଁଆରଦିନ ଶୁକ୍ରବାର, ଏବଂ ସେଇ ଶୁକ୍ରବାର ଦିନ ଯୀଶୁ ହୁଅନ୍ତି କ୍ରୁଶବିଦ୍ଧ । ଜନ୍ କିନ୍ତୁ ଲେଖିଛନ୍ତି, ଯୀଶୁଙ୍କୁ କ୍ରୁଶ୍ ଉପରେ ଚଢ଼ାହୋଇଚି ପାସ୍‌ଓଭର୍-ର ଆଗଦିନ, ପରବ ପାଳନପାଇଁ ଚାଲିଚି ଯେତେବେଳେ ଆୟୋଜନ । କଣପାଇଁ ଏ ଅସଙ୍ଗତି ? ଖାଲି ଏତିକି ଜାଣିବାପାଇଁ, ମାନେ, ଯୀଶୁ ଯୋଉବର୍ଷ ମରିଛନ୍ତି, ପାସ୍-ଓଭର୍ ସେବର୍ଷ ଗୁରୁବାରଦିନ ପଡ଼ିଥିଲା ନା ଶୁକ୍ରବାର, ବିଦ୍ୱତ୍‌ଜନ ଲେଖିପକାଇଚନ୍ତି ଢେର୍ ପୃଥୁଳ ଗ୍ରନ୍ଥ; ଜାଣିପାରିଚ଼ନ୍ତି ପାସ୍-ଓଭର୍ ଆଗଦିନ ଜେରୁସାଲେମ୍ ଦେଉଳରେ ମେଷ ବଳିଦିଆଯାଏ, ଜନ୍‌ଙ୍କ ବିବେଚ଼ନରେ ଯୀଶୁ ସେଇ ନିର୍ବାଚିତ ମେଷଶାବକ ! ପ୍ରାକୃତ ବିବରଣ ଜାଗାରେ ଜନ୍ ଆଶ୍ରୟକରିଛନ୍ତି ପ୍ରତୀକ ଆଉ ରୂପକ । ଅର୍ଥାତ୍ ମାଥ୍ୟୁଙ୍କ ସମୟନିର୍ଦ୍ଦେଶହିଁ ତଥ୍ୟର ନିକଟତର ।

ଅନ୍ୟଶବ୍ଦରେ, ସୁସମାଚାର ଭିତରୁ ଇତିହାସକୁ ଉଦ୍ଧାର ରୀତିମତ ସୂକ୍ଷ୍ମ ପାଣ୍ଡିତ୍ୟର ବ୍ୟାପାର; ସେ ଚେଷ୍ଟା ତଥାପି ଚାଲୁଛି । ଶେଷକୁ ବିଶ୍ଳେଷଣର ଏଭଳି କିଛି ପଦ୍ଧତି ଭାଷାବିତ୍ କାଢ଼ିଛନ୍ତି, ଯାର ଉପଯୋଗିତା ଓ ନିର୍ଭରଯୋଗ୍ୟତା ବିଶେଷଜ୍ଞଙ୍କୁ ମୁଗ୍ଧ କରିଚ଼ି ଆପାତତଃ । ଯେପରି, ଗସ୍‌ପେଲ୍ ଭିତରୁ *ଓଲ୍ଡ ଟେଷ୍ଟାମ୍ୟାଣ୍ଟ*ର ଗୁଞ୍ଜନ/ପ୍ରତିଧ୍ୱନି ଶୁଣାଯିବା ମାତ୍ରକେ ଅଂଶଟି ଉପରେ ପ୍ରଶ୍ନଚିହ୍ନ । କାହିଁକିନା, ନିବିଡ଼ପଠନ ରୀତିରେ ନିଠେଇ ପଢ଼ିଲେ, ଗସ୍‌ପେଲ୍ ଭିତରୁ ସେ ପ୍ରତିଧ୍ୱନି ଶୁଭୁଚି ଯତ୍ରତତ୍ର । ପାଞ୍ଚହଜାର ଭୋକିଲା ଲୋକଙ୍କୁ ମାତ୍ର କେତେଖଣ୍ଡ ରୁଟି ଆଉ ମାଛଦେଇ ଭୂରିଭୋଜନରେ ଆପ୍ୟାୟିତ କରିଥିଲେ ଯୀଶୁ; ସମସ୍ତେ ଖାଇସାରିବା ଉତ୍ତାରୁ ରୁଟି-ମାଛ ବଳିଥିଲା କେତେ ଝୁଡ଼ି, ଲେଖାଯାଇଚି ଚାରିଟିଯାକ ଗସ୍‌ପେଲ୍‌ରେ । ଏଣେ *ଓଲ୍ଡ ଟେଷ୍ଟାମ୍ୟାଣ୍ଟ* କହୁଛି, ପୟଗମ୍ବର ଏଲିସା ଏକାସାଙ୍ଗରେ ଶହେଲୋକଙ୍କୁ ଅଲୌକିକ ଉପାୟରେ ଖୁଆଇଦେଇଥିଲେ (ଯେମିତି ଦ୍ରୌପଦୀ ପଞ୍ଚପାଣ୍ଡବଙ୍କୁ ହାଣ୍ଡିତଳୁ ଗୋଟିଏମାତ୍ର ଭାତ ପାଇଥିଲେ ସୁଦ୍ଧା ଚର୍ବ୍ୟ-ଚୋଷ୍ୟ-ଲେହ୍ୟ-ପେୟ ପରିବେଷଣ କରିଥିଲେ ,ଅଥବା କୃଷ୍ଣଦର୍ଶନରୁ ଗାଁକୁ ଫେରିଆସି ସୁଦାମା ଦେଖିଥିଲା ପର୍ଣ୍ଣକୁଟୀର ପରିଣତ ହୋଇଚି ରାଜପ୍ରାସାଦ !) । ଏଲିସାଙ୍କ ଇନ୍ଦ୍ରଜାଲ କଥା, ଗସ୍‌ପେଲ୍ ରଚନାର ଅନ୍ତତଃ ପାଞ୍ଚଶ'ବର୍ଷ ଆଗରୁ ଲେଖାଯାଇଛି । ସ୍ପଷ୍ଟତଃ ଅଗ୍ରବର୍ତ୍ତୀ ଆଖ୍ୟାନଟି ଉତ୍ତରସୂରୀଙ୍କ ମନରେ ଗୁନ୍ଥିହୋଇଯାଇଛି ଗସ୍‌ପେଲ୍ ଲେଖିବାବେଳକୁ ।

ଗସ୍‌ପେଲ୍‌ର ଅଲୌକିକ ଅବତାରଣା ମାତ୍ରକେ, ବିନା ବ୍ୟତିକ୍ରମରେ, ତେଣୁ ବହନକରୁଚି *ବାଇବେଲ*ର ଆଦ୍ୟଖଣ୍ଡର ପ୍ରଲେପ; ତଥ୍ୟ ଉପରେ କଳ୍ପନାର ବହୁବର୍ଣ୍ଣ ସଞ୍ଚାର, ସ୍ୱାଭାବିକ ଉପରେ ଅତିଶୟୋକ୍ତିର ବଳାତ୍କାର, ସ୍ତରେ ସ୍ତରେ ସଂଯୋଜିତ ଯୀଶୁଙ୍କ ଦେହରେ ଈଶ୍ୱରପ୍ରେରିତ ମସିହାର ଦେବତ୍ୱ । ଯାକୁହିଁ କୁହାଯାଏ ଇତିହାସର ପୌରାଣିକୀକରଣ । ସେଇ ପ୍ରେକ୍ଷିତରେ ଯୀଶୁ କେମିତି ଅଯୋନିସମ୍ଭବ, ସେକଥା ମଧ୍ୟ ବିଶ୍ଳେଷଣ କରିହେବ *ଓଲ୍ଡ ଟେଷ୍ଟାମ୍ୟାଣ୍ଟ*ରେ ବିକୀର୍ଣ୍ଣ ଭାବବସ୍ତୁ ସଙ୍କଳନରୁ । ବେଥେଲ୍‌ହେମ୍ ଅସ୍ତାବଳରେ ଗୃହପାଳିତ ପଶୁଙ୍କ ସାନ୍ନିଧରେ କୁମାରୀଗର୍ଭରୁ ଯୀଶୁଙ୍କ ଅପ୍ରାକୃତିକ ଉତ୍ପତ୍ତି ଆଉ ଠିକ୍ ସେଇ ରାତିରେ ହିଁ ପରମୋଜ୍ଜ୍ୱଳ ଏକ ନକ୍ଷତ୍ର ପ୍ରାଚ୍ୟଭୂଖଣ୍ଡରୁ ତିନିଜଣ ନୃପତିଙ୍କୁ ବାଟଦେଖାଇ ନେଇଆସିଚି ନବଜାତକ ସଂଧାନରେ । ଏଭଳି ବେଜାଏ ଅନୁପୁଙ୍ଖ ବିକ୍ଷିପ୍ତହୋଇ ରହିଛି *ଓଲ୍ଡ ଟେଷ୍ଟାମ୍ୟାଣ୍ଟ* କଳେବରରେ, ଯେପରି—

(କ) ବେଥ୍‌ଲେହେମ୍ ...ତୋଅରି ଭିତରୁ ଉପୁଜି ଆମପାଖକୁ ଆସିବ ଯିଏ, ସେଇ ହେବ ଇସ୍‌ରାଏଲ୍‌ର୍ ଅଧୀଶ୍ୱର ।

(ଖ) ଇୟାକବ୍ (=ଜେକବ୍)ରୁ ଉଦୟହେବ ଆକାଶରେ ଏକ ନକ୍ଷତ୍ର, ଆଉ ଇସ୍‌ରାଏଲ୍‌ରୁ ଉଦୟହେବ ଏକ ରାଜଦଣ୍ଡ ।

(ଗ) ଅହୋ, କୁମାରୀ ହେବ ଗର୍ଭବତୀ ! ଆଉ ପୁତ୍ରଲାଭକରି ନାଁ ରଖିବ ଇମାନୁଏଲ୍ ।

(ଘ) ଇହୁଦୀ ଯିଏ ନୁହେଁ, ସିଏ ସୁଦ୍ଧା ହେବେ ସେଇ ଆଲୋକରେ ଉପନୀତ, ଆଉ ତୁମ ଉଦୟର ଉଜ୍ଜ୍ୱଳତା ଆଡ଼କୁ ନୃପତି କରିବେ ପ୍ରତ୍ୟୁଦ୍‌ଗମନ ।

(ଙ) ତାର୍‌ସିସ୍ ଆଉ ଦ୍ୱୀପପୁଞ୍ଜରୁ ଦାନସାମଗ୍ରୀ ହାତରେଧରି ଚାଲିଆସିବେ ରାଜନ୍ୟ, ଉପଢୌକନ ଆଣିବେ ସିବା ଆଉ ସିବାର ରଜାରାଜୁଡ଼ା ।

(ଚ) ବୃଷ ବୁଝିପାରେ ପ୍ରଭୁ କିଏ, ଆଉ ଗଧ ଚିହ୍ନିପାରେ ଖୁଆଡ଼ ।

ଏବଂବିଧ କାବ୍ୟମଣ୍ଡିତ ବାକ୍ୟକୁ ଭବିଷ୍ୟଦ୍‌ବାଣୀ ବୋଲି ଗ୍ରହଣକରି ଆଦି-ଖ୍ରୀଷ୍ଟାନ୍ ଠିଆକରିଚ଼ନ୍ତି ଯୀଶୁଜାତକର କାରୁକାର୍ଯ୍ୟଖଚିତ ମହିମାଲୋକ । ଏ ବାକ୍ୟଗୁଡ଼ିକ କିନ୍ତୁ *ବାଇବେଲ୍*ର ଆଦ୍ୟଖଣ୍ଡରେ ଲେଖାହୋଇଥିଲା ହିବ୍ରୁ ଭାଷାରେ । ବହୁପରେ ଅନୂଦିତହୋଇଛି ଗ୍ରୀକ୍‌କୁ; ମାତ୍ର ଗସ୍‌ପେଲ୍ ଚତୁଷ୍ଟୟ (=*ନିଉ ଟେସ୍ଟାମ୍ୟାଣ୍ଟ*)ର ଅନ୍ତଖଣ୍ଡ ମୂଳରୁ ଲେଖାଯାଇଛି ଗ୍ରୀକ୍‌ରେ; ନିଜେ ଯୀଶୁ କିନ୍ତୁ କଥାକହୁଥିଲେ ଯୋଉ ଅପଭ୍ରଂଶରେ, ତା ଆରାମାଇକ୍ । ଯୀଶୁ ଯେ କୁମାରୀମାତା ଗର୍ଭରୁ ଭୂମିଷ୍ଠହୋଇଥିଲେ, ଏଇ ଚାଞ୍ଚଲ୍ୟକର ଆଖ୍ୟାନଟି ଖ୍ରୀଷ୍ଟାନ୍‌ଜଗତର ଏକ ବିଶ୍ୱାସସମ୍ପଦ । ଏ ସୁସମାଚାରର ଉତ୍ସ ମ୍ୟାଥ୍ୟୁଙ୍କ ଗସ୍‌ପେଲ୍, ଯୋଉଠି କୁହାଯାଇଛି, 'ଈଶ୍ୱରକୃତ ଭବିଷ୍ୟଦ୍‌ବାଣୀର ବାସ୍ତବାୟନ ସକାଶେ ଏମିତି ଅଘଟଣ ଘଟେ, ସେଇ ବାଣୀ ନିଃସୃତହୋଇଥିଲା ପୟଗମ୍ବରଙ୍କ ଶ୍ରୀମୁଖରୁ; ଅହୋ, କୁମାରୀ ହେବ ଗର୍ଭବତୀ, ପୁତ୍ର ପ୍ରସବକରି ନାଁ ରଖିବ ଇମାନୁଏଲ୍ ।' ପୟଗମ୍ବର ଇସାଇୟାଙ୍କ ଏ ଭବିଷ୍ୟକଥନ ମ୍ୟାଥ୍ୟୁ ସଂଗ୍ରହକରିଚ଼ନ୍ତି *ଓଲ୍ଡ ଟେସ୍ଟାମ୍ୟାଣ୍ଟ*ର ଗ୍ରୀକ୍‌ତର୍ଜମାରୁ । ଗ୍ରୀକ୍‌ତର୍ଜମାରେ ବ୍ୟବହୃତ କୁମାରୀ-ଦ୍ୟୋତକ ଶବ୍ଦ: 'ପାର୍ଥେନସ୍' । ମୂଳ ହିବ୍ରୁରେ ଇସାଇୟା ଯୋଉ ଶବ୍ଦ ବ୍ୟବହାରକରିଚ଼ନ୍ତି, ତା କିନ୍ତୁ 'ଆଲ୍‌ମା' (=ତରୁଣୀ) । ହିବ୍ରୁ ଭାଷାରେ 'କୁମାରୀ' (=ଅକ୍ଷତଯୋନି) ହେବ 'ବେଥୁଲା' । ପୟଗମ୍ବର ଇସାଇୟା 'ବେଥୁଲା' ଶବ୍ଦ ଥରେହେଲେ ଉଚ୍ଚାରଣ କରିନାହାନ୍ତି; ଅର୍ଥାତ୍, ତାଙ୍କ ବୟାନରେ ଅତିପ୍ରାକୃତ ଜନ୍ମସୂତ୍ରର ଆଭାସ ଟିକାଏ ନାହିଁ । ମ୍ୟାଥ୍ୟୁ ଯଦି ମୂଳ

ହିବ୍ରୁ ସଂସ୍କରଣକୁ ଅନୁସରଣ କରିଥାନ୍ତେ, ଭୟଙ୍କର ଏ ପ୍ରମାଦ ହୁଏତ ଉପୁଜିନଥାନ୍ତା ଆଦୌ । ଅତଏବ, ମାତା ମେରି (=ମରିଆମ୍)ଙ୍କ କୌମାର୍ଯ୍ୟ ପ୍ରସଙ୍ଗଟି ତୁଚ୍ଛ ଏକ ଅନୁବାଦଭ୍ରାନ୍ତି, ଅନୁବାଦକ ଯଦିଓ ଜଣେ ଗ୍ରୀକ୍-ପଣ୍ଡିତ ସନ୍ଥ ।

ସୁତରାଂ ଇତିହାସ-ପୁରୁଷ ଯୀଶୁଙ୍କ ପୁନରୁଦ୍ଧାର ପାଇଁ, ପ୍ରତ୍ନବିଦ୍ୟା ପରି ଭାଷାବିଦ୍ୟା ମଧ୍ୟ ସମୁଚ୍ଚୟ ସହାୟକ । ଏଥର, ସନ୍ଥ ଲ୍ୟୁକ୍‌ଙ୍କ ବୟାନ ପ୍ରତି ମନଦିଆଯାଉ । ଖାଦ୍ୟାଖାଦ୍ୟ ବିଚାରରେ ଅତିଶୟ ସ୍ପର୍ଶକାତର ଫ୍ୟାରିସିଙ୍କୁ ସମ୍ବୋଧନକରି ଯୀଶୁ କହିଲେ, 'ତମେ ଫ୍ୟାରିସିଗୁଡ଼ାକ ସଫାସୁତୁରା ରହିବାକୁ ଏତେ ତତ୍ପର, କିନ୍ତୁ ଦେଖିବାବେଳକୁ ପିଆଲାର ବାହାରପଟଟାକୁ ଖାଲି ଘଷିମାଜି ଝକଝକ କରୁଚ୍, ଭିତରେ ରହିଚି ଯେତେକ ଦୁର୍ବୁଦ୍ଧି, ହରେକ ପାପତାପ । ମୂଢ଼ମାନଙ୍କ ଦଳ..... ଭିତର ଜିନିଷଟାକୁ ଭିକ୍ଷା ଦିଅ; ଦେଖିବ, ବିବାକ ହୋଇଯାଇଚି ନିର୍ମଳ ।' ପଢ଼ିବାବେଳେ ମନରେ ଖଟକା ଲାଗେ 'ଭିତର ଜିନିଷଟାକୁ ଭିକ୍ଷା ଦିଅ' ବାକ୍ୟାଂଶର ଶୁଦ୍ଧତା ସମ୍ପର୍କରେ, କାହିଁକିନା, ଘଷାମଜା ପ୍ରସଙ୍ଗ ସାଙ୍ଗରେ ଭିକ୍ଷାଦାନ ସ୍ପଷ୍ଟତଃ ଅବାନ୍ତର । ପାଲେସ୍ଥାଇନ୍‌ର ଆରାମାଇକ୍, ଯୀଶୁଙ୍କ ମାତୃଭାଷା, ସେମିଟିକ୍ ଗୋଷ୍ଠୀର ଭାଷା; ଗ୍ରୀକ୍ ସାଙ୍ଗରେ ସଂସ୍ରବନାହିଁ, ଅଛି ହିବ୍ରୁ, ଫିନିସୀୟ ଓ ଆରବୀ ସହିତ । ଆରାମାଇକ୍ ଭାଷାରେ ଲିଖିତ ଅଶୋକଙ୍କ ଗିରିଲେଖ ମଧ୍ୟ ରହିଚି, ଯୋଉଠି କହିଛନ୍ତି ସର୍ବଭୂତ ପାଖରେ ତାଙ୍କର ଏ ନିବେଦନ । ଆରାମାଇକ୍‌ର କଥ୍ୟ ଓ ସାହିତ୍ୟ-ରୂପର ରହିଛି ଦୀର୍ଘ ଇତିହାସ ଏବଂ ବିସ୍ତର ପ୍ରାଦେଶିକ ବିଭିନ୍ନତା । ନିକଟପ୍ରାଚ୍ୟର ପ୍ରତ୍ୟନ୍ତ ଅଞ୍ଚଳରେ ଏବେସୁଦ୍ଧା ବଞ୍ଚିରହିଚି ଆରାମାଇକ୍‌ର ଅବଶେଷ; ମାତ୍ର ଯୀଶୁଙ୍କ ଅମଳରେ ଥିଲା ପାଲେଷ୍ଟାଇନ୍‌ର ସର୍ବସାଧାରଣ କଥ୍ୟଭାଷା, ଯଦିଓ ଅଭିଜାତ ଓ ପୁରୋହିତଶ୍ରେଣୀର ଭାଷା ଥିଲା ହିବ୍ରୁ । ବୁଦ୍ଧ ଯେମିତି ପାଲୀରେ ଧର୍ମବ୍ୟାଖ୍ୟା କରିଛନ୍ତି, ଯୀଶୁ ବି ସେମିତି ଆରାମାଇକ୍‌ରେ ଦେଇଚନ୍ତି ଧର୍ମଶିକ୍ଷା । ଏବଂ ନିଃସଂଶୟରେ କୁହାଯାଇପାରେ, ଯୀଶୁଙ୍କ ପ୍ରୟାଣ ପରେସୁଦ୍ଧା ତାଙ୍କ ମୁଖନିଃସୃତ ବଚନ-ପ୍ରବଚନ ଭକ୍ତବୃନ୍ଦଙ୍କ ମୁହଁରୁ, ଆବୃତ୍ତି ଭଳି, ଉଦ୍ଧୃତହୋଇଚି ଜାଗାବରଜାଗା । ହୁଏତ ସେଇ ସୁଭାଷିତାବଳୀର ଲିଖିତ ସଙ୍କଳନ ବି ତିଆରିହୋଇଚି, ଯା ଏକ୍ଷଣି ଅବଲୁପ୍ତ । ସେଇ ଐତିହ୍ୟକୁ ସମ୍ବଳକରି ସନ୍ଥଚତୁଷ୍ଟୟ ରଚନାକରିଚନ୍ତି ଗ୍ରୀକ୍‌ଭାଷାରେ ଗସ୍‌ପେଲ୍ । ଆଉ, ଆରାମାଇକ୍‌ରେ 'ଭିକ୍ଷାଦେବା' କ୍ରିୟାପଦର ପ୍ରତିରୂପ 'ଜାକ୍‌କାଉ', 'ସଫାସୁତୁରା କରିବା' କ୍ରିୟାପଦ ସେମିତି 'ଦାକ୍‌କାଉ' । ମୂଳ ସୁଭାଷିତାବଳୀରେ ହୁଏତ 'ଜାକ୍‌କାଉ'

ହିଁ ଥିଲା, ମାତ୍ର ଲ୍ୟୁକ୍ ପଢ଼ିଚନ୍ତି ବା ଶୁଣିଚ୍‌ନ୍ତି 'ଦାକ୍‌କାଉ' । ତା'ହେଲେ, ବାକ୍ୟଟିର ଶୁଦ୍ଧରୂପ ହେବ : 'ମୂଢ଼ଙ୍କ ଗୋଷ୍ଠୀ, .... ଭିତରେ ଯା ଜମିଚି, ତାକୁ ଆଗେ ସଫାକର, ତା' ହେଲେଯାଇ ସବୁଯାକ ଦିଶିବ ନିର୍ମଳ ।' ଅର୍ଥାତ୍, 'ଦାକ୍‌କାଉ' କ୍ରିୟାପଦଟି ପ୍ରୟୋଗକରିବା ମାତ୍ରକେ ବାକ୍ୟର ମର୍ମାର୍ଥ ବି ହୋଇଯାଏ ପରିଷ୍କାର; ଏବଂ ପରିଷ୍କାର ବୁଝିହୁଏ ବୋଲି, ପ୍ରତ୍ୟୟ ଜନ୍ମେ, ଯୀଶୁ ନିଶ୍ଚୟ ଏଇଭଳି କିଛି କହିଥିଲେ, ଭିକ୍ଷାଦେବା କଥା କହିନାହାନ୍ତି ମୂଳରୁ । ମ୍ୟାଥ୍ୟୁଙ୍କ ଅନୁବାଦରେ ବାକ୍ୟଟି କିନ୍ତୁ ଅନ୍ୟ ରକମ: 'ଅନ୍ଧ ଫ୍ୟାରିସି ! ପିଆଲା ଭିତରଟାକୁ ଆଗେ ପରିଷ୍କାର କର !'

ବିବିସି ବହିରେ ଆଲୋଚିତହୋଇଚି ଆହୁରି ଏକ ଅଭିନବ ଆବିଷ୍କାର; ସୁସମାଚାରରେ ଉଦ୍ଧୃତ ଯୀଶୁବାଣୀକୁ ଆରାମାଇକ୍‌କୁ ଅନୁବାଦ କରିଦେଲେ କୁଆଡ଼େ ସ୍ପଷ୍ଟ ବୁଝାଯାଏ ଯେ ଯୀଶୁ କଥାକହୁଥିଲେ କବିତାରେ; ଯୋଉ କାବ୍ୟଛନ୍ଦ ଗ୍ରୀକ୍‌ଅନୁବାଦରେ ବି ଅନୁରଣିତ; ମୂଳ ଆରାମାଇକ୍‌ରେ ସେ ଛନ୍ଦ କୁଆଡ଼େ ଘଣ୍ଟାଧ୍ୱନି ପରି ଘନନିନାଦ । ହିବ୍ରୁ ଆଉ ଆରାମାଇକ୍ କବିତାରେ ଦେଖାଯାଇଚି ଦୁଇ.ସମାନ୍ତରାଳ ଶ୍ଳୋକ ଭିତରେ ଏକାଭାବନାର ସମ୍ପ୍ରସାରଣ; ଯେପରି, ପ୍ରାଚୀନ *ଟେଷ୍ଟାମେଣ୍ଟ*ରେ ଏଇ ଗୀତାଂଶ :

ଈଶ୍ୱରହିଁ ମୋର ଆଲୋକ ଆଉ ଗନ୍ତବ୍ୟ
କାହାକୁ ତେବେ ଭୟ ?
ଈଶ୍ୱର ହିଁ ମୋର ଶରଣ ଆଉ ମରଣ
କାହାକୁ ଆଉ ଭୟ ?

ତୁଳନୀୟ ଲ୍ୟୁକ୍‌ଙ୍କ ସଂସ୍କରଣରେ ବିଖ୍ୟାତ ଯୀଶୁବାଣୀ :

ଶତ୍ରୁ ହେଲେ ବି, ଭଲପାଅ ତାକୁ,
ଯିଏ ଅପକାର କରେ, ତାର ଉପକାର କରିବ ତୁମେ
ଯିଏ ଅଭିଶାପ ଦେବ, ତାକୁ ବି କର ଆଶୀର୍ବାଦ
ଯିଏ ଲାଞ୍ଛନା ଦିଏ, ତା ପାଇଁ କର ପ୍ରାର୍ଥନା ।

ଯୀଶୁବଚ୍‌ନର ଗଢ଼ଣରେ କାବ୍ୟଆବେଦନ ଯେ ଏକ ନିହିତ ଗୁଣ, *ନିଉ ଟେଷ୍ଟାମେଣ୍ଟ*ର ଯେକୌଣସି ଭଲ ଇଂରେଜୀ ସଂସ୍କରଣରୁ ଅନୁଭବ କରିହେବ; ମାତ୍ର ଆରାମାଇକ୍ ମୂଳଲେଖାର ଆବେଦନ ଯେ ସ୍ପଷ୍ଟତର, ଏକଥା ଜାଣିବାପରେ ପଢ଼ିଲେ

ଦେଖାଯିବ ଯୀଶୁଙ୍କ କଥାବାର୍ତ୍ତାର ଛତ୍ରେଛତ୍ରେ ଛନ୍ଦର ପୌନଃପୁନିକତା, ଯା ବସ୍ତୁତଃ ଅପରାପର ପୁରାତନ ଚାରଣଗୀତିର ଅନୁକରଣ । ଲ୍ୟୁକ୍‌ଙ୍କ ସୁସମାଚାରରୁ ସାମାନ୍ୟ ଏଇ ନିଦର୍ଶନ

ଧନ୍ୟ ସେଇ ଜନ, ଯିଏ କପର୍ଦ୍ଦକଶୂନ୍ୟ
ସାରାଦୁନିଆରେ ସିଏ, ଏକା ନରୋତ୍ତମ;
ଧନ୍ୟ ସେଇ ଜନ, ଯା'କୁ ଜୁଟେନା ମୁଠେ ଅନ୍ନ,
ଘୁଞ୍ଚିଯିବ କାଳେ ତାର ଘୋର ଅନଶନ ।
ଆଘାତକରେ ଯଦି କେହି ବାଁ ଗାଲରେ
ପତେଇଦିଅ ତେବେ ଡାହାଣ ଗାଲ,
ଛଡ଼େଇନିଏ ଯଦି ଦେହରୁ କୋଟ୍,
ବଢ଼େଇଦିଅ ଦେହରୁ ଖୋଲି ସାର୍ଟ ।

ଅନ୍ୟର ଦୋଷ ଦେଖି ବିଚାରକରନା
ତମେ ବି କେବେ ହେବନାହିଁ ବିଚାରାଧୀନ;
କାହାରିକି ଦିଅନା କେବେ ଶାସ୍ତି
ତମର ବି ହେବନାହିଁ ଶାସ୍ତିଭୋଗ;
ଶିକୁଳି ଛିଡ଼େଇଦିଅ ବନ୍ଦୀହାତରୁ
ତମେ ବି ହେବ ତେବେ ଶୃଙ୍ଖଳମୁକ୍ତ;
ଉଜାଡ଼ିଦିଅ ହାତରୁ ଯା ଅଛି ତୁମର
ତୁମକୁ ବି ମିଳିବ ତେବେ କେତେ ଉପହାର ।

ସହଜରେ ମନେରଖିହେବ ବୋଲି ନୀତିଶିକ୍ଷାସମ୍ବଳିତ ଶ୍ଳୋକ ଛୋଟ ଓ ଇଙ୍ଗିତମୟ; ଏବଂ ଏ ରୀତି ଚିରାଚରିତ ଇହୁଦୀ-ପରମ୍ପରାରୁ ଅବିଚ୍ଛିନ୍ନ । ଯୀଶୁ ସେଇ ଐତିହ୍ୟର ଦାୟାଦ ବୋଲି ଆତ୍ମପ୍ରକାଶର ଧରଣ ମଧ ପାରମ୍ପରିକ । ସନ୍ଦେହ ନାହିଁ, ଇତିହାସ-ଗବେଷଣା ବାରମ୍ବାର ପ୍ରତିଷ୍ଠାକରିଚି ଯୀଶୁଙ୍କ ଇହୁଦୀତ୍ୱ । ନୂତନ କୋଉ ଧର୍ମପ୍ରବର୍ତ୍ତନ ତାଙ୍କ ଲକ୍ଷ୍ୟ ଥିଲାନାହିଁ; ଉଦ୍ଦେଶ୍ୟ ଥିଲା ଇହୁଦୀଧର୍ମକୁ ନ୍ୟାଯ୍ୟ ପରିଣତିରେ

ପହଞ୍ଚାଇଦେବା । ମ୍ୟାଥ୍ୟୁଙ୍କ ସାକ୍ଷ୍ୟ ଅନୁସାରେ, ଉଦ୍ଦେଶ୍ୟର ଘୋଷଣା ଏହିପରି: 'ଇସ୍ରାଏଲ୍‌ର ପଥଭ୍ରାନ୍ତ ମେଷଯୂଥ ନିକଟକୁ ପ୍ରେରିତହୋଇଚି ମୁଁ, ପ୍ରେରିତ ହୋଇଚି ଏକମାତ୍ର ତାଙ୍କରି ପାଖକୁ ।' ମାତ୍ର, ଯୀଶୁଙ୍କ ପ୍ରୟାଣର ଅବ୍ୟବହିତରେ ଆଦି-ଖ୍ରୀଷ୍ଟାନ୍ ଚର୍ଚ୍ଚ ପାରୁପର୍ଯ୍ୟନ୍ତ ଲାଗିପଡ଼ିଚି ଅଣଇହୁଦୀ ଦୁନିଆଟାକୁ କରିବ କେମିତି ଧର୍ମାନ୍ତରିତ । ଇହୁଦୀଜାତିର ରାଜନୀତିକ ବିପର୍ଯ୍ୟୟର ଯୋଗସୂତ୍ର ଅଛି ନିଶ୍ଚୟ; ତା କିନ୍ତୁ କୋଉ ଆଧାତ୍ମିକ କାରଣ ନୁହେଁ ।

ସମ୍ପର୍କ ବା ଯୋଗସୂତ୍ର ଖୋଜିବାକୁ ଗଲେ, ଯୀଶୁ ମନେହେବେ ଆମ ନିକଟ-ଆତ୍ମୀୟ; କାହିଁକିନା, ଏସିଆ ମହାଦେଶର ଯୋଉ ପ୍ରାନ୍ତ ଭୂମଧ୍ୟସାଗରକୁ ଲାଗିଛି, ପ୍ରାଚୀନ କାଳରେ ତାକୁ କହୁଥିଲେ ଯୁଦାଇୟା । ଗୋଟେପଟରେ ସମୁଦ୍ରତଟ, ଆରପଟରେ ବହିଯାଉଚି ଯର୍ଦାନ୍ ନଦୀ । ସେଠୁ ଉତ୍ତରକୁ ଗଲେ ପଡ଼ିବ ସାମାରିଆ, ତା ପରେ ଗ୍ୟାଲିଲି । ଏକ୍ଷଣି ଏ ଅଞ୍ଚଳ ପାଲେଷ୍ଟାଇନ୍ ଭିତରେ ଅଛି, ସେଇଠି ଥିଲା ଯୀଶୁଙ୍କ କର୍ମଭୂମି ! ଅନୁନ୍ନତ ମାଳଭୂମି, ମଝିରେ ମଝିରେ ବିକ୍ଷିପ୍ତ ଜନପଦ, *ବାଇବେଲ୍* କଲ୍ୟାଣରୁ ଯା ଏକ୍ଷଣି ବିଖ୍ୟାତ, ଯେପରି, ଜେରୁସାଲେମ୍, ଜେରିଖୋ, ନାଜାରେଥ୍, ବେଥାନି, ବେଥ୍‌ଲେହେମ୍ । ସବୁଠିଁ ସିଏ ବିଚରଣକରିଚନ୍ତି ପଦବ୍ରଜରେ, କେବେ ଗଧପିଠିରେ, ତ କେବେ ଧୀବରଙ୍କ ହୁଲିଡଙ୍ଗାରେ । କାହିଁକିନା, ଉପଲକ୍ଷ୍ୟ ଥିଲେ ଖଟିଖିଆ ମଳିମୁଣ୍ଡିଆ ଚଷାଭୂଷା, ମେଣ୍ଢାଛେଳି ରଖୁଆଳ, କେଉଟ-କଣ୍ଡରା । ଅଜ୍ଞ ଅବହେଳିତ ସେଇ ଲୋକଙ୍କ ବିଶ୍ୱାସଜଗତରେ ଆସ୍ଥାନ ଜମାଇଚନ୍ତି ନାନାଦି ଭୂତପ୍ରେତ, ଡାହାଣୀ-ଚିରୁଗୁଣୀ, ଦୈତ୍ୟଦାନବ । ଯୀଶୁଙ୍କ ତିରୋଧାନର ଅନତିବିଳମ୍ବେ ତୋମାସ୍ (=ଟମାସ୍) ନାମଧେୟ ଏକ ଯାଜକ ଭାରତକୁ ଆସି ଧର୍ମପ୍ରଚାର କରିଥିଲେ ବୋଲି ଗ୍ରୀକ୍‌ରେ ଲିଖିତ *କସ୍‌ମସ୍ ଇନ୍‌ଦିକୋ-ପ୍ଲେଉସ୍ତସ୍* ଗ୍ରନ୍ଥରେ ଉଲ୍ଲେଖ ଅଛି । ଭାରତୀୟ ସେ ଆଦି ଖ୍ରୀଷ୍ଟାନ୍ ସମ୍ଭବତଃ କଙ୍କଣ ଓ କେରଳ ତଟବର୍ତ୍ତୀ ଅଞ୍ଚଳର ସିରିଆନ୍ ଖ୍ରୀଷ୍ଟାନ୍‌ଗୋଷ୍ଠୀ; ଗୀର୍ଜା ଜାଗାରେ ତାଙ୍କର ଅଛି ସିନ୍ୟାଗଗ୍ । ମାତ୍ର, ଆଞ୍ଚଳିକ ବିଚାରରେ ଯୀଶୁ ଥିଲେ ଗ୍ୟାଲିଲିର ସନ୍ତାନ ଏବଂ କୃଷିପ୍ରଧାନ ଗ୍ୟାଲିଲିର ବାଣିଜ୍ୟ-ସମ୍ବନ୍ଧ ଥିଲା ବହିର୍ଜଗତ ସାଙ୍ଗରେ, କାହିଁକିନା, ଅଲିଭ୍ ରପ୍ତାନିହୋଇଛି ଯେମିତି, କୃଷିଜାତ ଶସ୍ୟ ଓ ଫଳ ମଧ୍ୟ ସେମିତି ଗ୍ୟାଲିଲି ବାହାରକୁ । ସମାଜଗଢ଼ଣ ତେଣୁ ଦ୍ୱିମେରୁ, ଅର୍ଥାତ୍ ଗୋଟେପଟରେ ବୃହତ୍ ଭୂସ୍ୱାମୀ ଓ ବଣିକ, ଆରପଟରେ ନିମ୍ନବିତ୍ତ ନିମ୍ନବର୍ଗ । ଯୀଶୁ କହିଥିବା ପ୍ୟାରାବ୍ଲ (=ଯେମିତି *ପଞ୍ଚତନ୍ତ୍ର* ପ୍ରଭୃତିର ନୀତିଶିକ୍ଷା) ରେ ରହିଛି ସେଇ

ସମାଜବ୍ୟବସ୍ଥାର ପ୍ରତିଛବି । ଜେରୁସାଲେମ୍‌ର ବିଦଗ୍ଧସମାଜ ଦୃଷ୍ଟିରେ ଗ୍ୟାଲିଲି ଅବଶ୍ୟ ଦିଶିଚି ମଫସଲ, ପଛୁଆ, କୁସଂସ୍କାରାଚ୍ଛନ୍ନ, ଗୁଣିଗାରୁଡ଼ିର ଖଣି । ଗସ୍‌ପେଲ୍‌ରୁ ଦିଶୁଚି, ତାଙ୍କ ଭିତରେ ଯୀଶୁ କରିଚ଼ନ୍ତି କବିରାଜି, ଭୂତ ଛଡ଼ାଇଚ଼ନ୍ତି, ଦେଖାଇଚ଼ନ୍ତି ଇନ୍ଦ୍ରଜାଲ । ତାକୁ କହୁଚ଼ନ୍ତି, 'ଫେଇଥ୍ ହିଲିଙ୍ଗ୍' । ସାରା ଏସିଆ ମହାଦେଶର ଲୋକସଂସ୍କୃତିରୁ ଏ ବିଭାବଟି ଅବିଚ୍ଛେଦ୍ୟ । ବୌଦ୍ଧ ଥେରବାଦୀ ଭିକ୍ଷୁ ଏକାମ କରିଚ଼ନ୍ତି ବୋଲି (ଚେରମୂଳ, ଜଡିବୁଟି, ଝଡ଼ାଫୁଙ୍କା ଇତ୍ୟାଦି), ଆରବ ବାଟଦେଇ ଇଉରୋପକୁ ପ୍ରବେଶକରି ଚିକିତ୍ସାପ୍ରଣାଳୀର ନାଁ ହୋଇଚି 'ଥେରାପି' । ବିଂଶଶତକରେ ସୁଦ୍ଧା, ସନ୍ତୋଷୀ ମା, ସତ୍ୟସାଇ ବାବା, ପଣ୍ଡିଚ୍ଚେରୀର ଶ୍ରୀମା, ଯାବତ ରକମ 'ବିଭୂତି' ବିତରଣ କରିଛନ୍ତି । ସାଧୁସନ୍ଥ ବାବାଜି-ମାତାଜୀଙ୍କ ପାଖରୁ ସାଧାରଣ ମଣିଷର ଏଟା ଚିରାଚ଼ରିତ ପ୍ରତ୍ୟାଶା । ଯୋଉ ସମାଜ ପ୍ରାକ୍-ବୈଜ୍ଞାନିକ, ବିନା ବ୍ୟତିକ୍ରମରେ ସବୁଠିଁ, ରୋଗବ୍ୟାଧିର ଚିକିତ୍ସା ଗୁଣିଗାରୁଡ଼ିର ସଗୋତ୍ର । ଅର୍ଥାତ୍, ଅଶୁଭଶକ୍ତିର ପ୍ରତିପକ୍ଷ ହେଲେ ସାଧୁସନ୍ଥ; ସେଇମାନେ କେବଳ ଅଲୌକିକ ଶକ୍ତିଦ୍ୱାରା ଭୂତପ୍ରେତଠୁଁ ଆରମ୍ଭକରି ରୋଗବ୍ୟାଧି ଭଳି ଅମଙ୍ଗଳକୁ ହଟାଇଦେଇପାରନ୍ତି ପରାସ୍ତକରି । ଧର୍ମଗୁରୁଙ୍କ ଡାକ୍ତରୀଭୂମିକା ତେଣୁ ଅପ୍ରତିରୋଧ । ଅଶୁଭଶକ୍ତି (ସଇତାନ= ସ୍ୟାଟାନ୍)କୁ ମାରି ଘଉଡ଼ାଇଦେବା ମାନେ ତ ସ୍ୱର୍ଗରାଜ୍ୟର ଭିତ୍ତିପତନ । ଯୀଶୁ ସମ୍ଭବତଃ ଚିକିତ୍ସକ ଭୂମିକାକୁ ସ୍ୱର୍ଗରାଜ୍ୟ ସ୍ଥାପନର କର୍ମସୂଚ଼ୀ ଭିତରେ ସ୍ଥାନଦେଇଚନ୍ତି, ଏବଂ ସେଇ କର୍ମସୂଚୀ ଦୌଲତରୁ ଆରୋଗ୍ୟ ପ୍ରତ୍ୟାଶାରେ ଗରିବ-ଦୁଃଖୀ-ରୋଗୀ-ଋଣୀ ଦଳଦଳହୋଇ ଦୌଡ଼ିଆସିଚ଼ନ୍ତି ଯେମିତି, ଆଉଦଳେ ଧାଇଁଚ଼ନ୍ତି ସେମିତି ସ୍ୱର୍ଗରାଜ୍ୟ ପ୍ରତିଷ୍ଠାର ପ୍ରତିଶ୍ରୁତିକୁ ଦେଖିବେ ହଟଚମଟ, ଅତିପ୍ରାକୃତ, ଅଲୌକିକ କର୍ମକାଣ୍ଡ ଭିତରେ । ମାର୍କଙ୍କ ଗସ୍‌ପେଲ୍ ବହନକରୁଚି ତା ସାକ୍ଷ୍ୟ : ତହିଁଉତ୍ତାରୁ ଫ୍ୟାରିସି ଆସି ଯୁକ୍ତିତର୍କ ଲଗାଇଦେଲେ । ଯୀଶୁଙ୍କୁ ବିଡ଼ିବାଲାଗି ଦାବିକଲେ ସ୍ୱର୍ଗରୁ ପ୍ରେରିତ ଯେକୌଣସି ଅଭିଜ୍ଞାନ । ଗଭୀର ଦୀର୍ଘନିଃଶ୍ୱାସ ଛାଡ଼ି ଯୀଶୁ କହିଲେ, 'କଣପାଇଁ ଏ ଯୁଗର ମଣିଷ ଖୋଜୁଚି ଖାଲି ଦୈବସଙ୍କେତ ? ମୁଁ କହୁଛି, ତୁମ ଏ ଯୁଗକୁ କୋଉହେଲେ ଚିହ୍ନ ଦିଆଯିବନାହିଁ ।' ଏତିକି କହିଦେଇ, ଯାଇ ଡଙ୍ଗାରେ ବସିଲେ, ଆଉ ଫ୍ୟାରିସିଙ୍କୁ ପଛରେ ପକାଇ ହ୍ରଦ ଆରପାରିକୁ ଭାସିଚାଲିଗଲା ନୌକା । ଅତିକ୍ରାନ୍ତ ଶତାବ୍ଦୀସମୂହ ଅତିକ୍ରମକରି ଯା ଭାସିଆସେ, ଦେବତା ନୁହେଁ, ଏକ କ୍ଷିପ୍ତ ସାଧକର ଦୀର୍ଘଶ୍ୱାସ । କ୍ରୁଦ୍ଧ ସେଇ ବିଦ୍ରୋହୀକୁ ଆଜି ଗିର୍ଜାକାନ୍ଥରେ ଝୁଲୁଥିବା ଚିତ୍ରପଟରେ ଦେଖୁଁ ନୀଳରଙ୍ଗ

ଆଖି, ସୁନେଲି କେଶ, ଶ୍ୱେତକାୟ—ଶିଷ୍ୟସମାବୃତ ଅଥବା କ୍ରୁଶବିଦ୍ଧ । ଅଥଚ଼ ଏସିଆର ପଶ୍ଚିମାଞ୍ଚଳର ଏଇ ଲୋକଟିର ଗାତ୍ରବର୍ଣ୍ଣ ଥିଲା ଆମ ସମସ୍ତଙ୍କ ଦେହର ରଙ୍ଗ ପରି ମଳିନ; ଆଖି ବି ଥିଲା ହୁଏତ ନୀଳାଭ ନୁହେଁ, ଉତପ୍ତ; ଆଉ କେଶଗୁଚ୍ଛ କର୍କଶ । ଇଉରୋପ ବିଦ୍ରୋହୀଙ୍କୁ କରିଛି ଅପାର୍ଥିବ ଅତିମାନବ !

ଯୀଶୁଙ୍କ ପୂର୍ଣ୍ଣାଙ୍ଗ ଜୀବନୀରଚ଼ନା ଉଦ୍ଦେଶ୍ୟ ନୁହେଁ; ତେବେ, ବିବିସି ବହିଟିରେ ଏକ ରେଖାଚିତ୍ର ନିର୍ମାଣକରିବାକୁ ଚେ଼ଷ୍ଟାକରାଯାଇଛି ସଯତ୍ନ; ତଦନୁସାରେ ତାଙ୍କ ଜନ୍ମ, ଖୁବ୍ ସମ୍ଭବତଃ ଖ୍ରୀଷ୍ଟପୂର୍ବ ୧୨ରୁ ୫ ସାଲ ଭିତରେ, ଏବଂ ଦାୟୁଦପୁର ବେଥେଲ୍‌ହେମ୍‌ରେ ନୁହେଁ; ଜାଗାଟି ଗ୍ୟାଲିଲି ଅନ୍ତର୍ଗତ ନ୍ୟାଜାରେଥ୍ ନାମକ ଜନପଦ, ଏବଂ ଯା ଜଣାପଡୁଚ଼ି, ମେରି ଓ ଯୋସେଫ୍‌ଙ୍କ ସମ୍ପୂର୍ଣ୍ଣ ପ୍ରାକୃତ ଓ ବୈଧ ସନ୍ତାନ ସେଇ ନବଜାତ; ଅନୁଜସଂଖ୍ୟା ମଧ ଚାରି, ଯଥାକ୍ରମେ ଜେମ୍‌ସ୍ ଯୋସେଫସ୍ ଜୁଡ଼ା ଓ ସାଇମନ୍; ଭଉଣୀ ବି ଥିଲେ ଏକାଧିକ । ପିତା ଯୋସେଫ୍ ଖାଲି କାଠମିସ୍ତ୍ରୀ ବା ବଢ଼େଇ ନୁହେଁ, ପେସା ଥିଲା ଗୃହନିର୍ମାଣ, ତତ୍କାଳୀନ ସମାଜରେ ମାନ୍ୟ ଜୀବିକା । ପରିବାର ଥିଲା ସମ୍ପନ୍ନ, ମଧ୍ୟବିତ୍ତ ନୁହେଁ । ଯୀଶୁ ପିତାଙ୍କ ପାଖରୁ ଶିକ୍ଷାକରିଥିଲେ ପେସାଗତ ଦକ୍ଷତା ଏବଂ ଯଥାରୀତି ପ୍ରାପ୍ତହୋଇଥିଲେ ଇହୁଦୀସମାଜର ପ୍ରଚଳିତ ଧର୍ମଶିକ୍ଷା । ମାତୃଭାଷା ଥିଲା ପାଲେସ୍ତିନୀୟ ଆରାମାଇକ୍‌ର ଗ୍ୟାଲିଲୀୟ ସଂସ୍କରଣ ଏବଂ ତାଙ୍କ ସ୍ୱମୁଖନିଃସୃତ ଅନ୍ତତଃ ତିରିଶଟି ଆରାମାଇକ୍ ଶବ୍ଦ ଗସ୍‌ପେଲ୍‌ରେ ହୋଇଛି ଉଦ୍ଧୃତ; ହିବ୍ରୁ ଧର୍ମଶାସ୍ତ୍ର ସହିତ ପରିଚୟ ଥିଲା ଯଦିଓ ଘନିଷ୍ଠ, ଏତେଘନିଷ୍ଠ ଯେ ଧର୍ମବିଶାରଦ ର୍‍ୟାବାଇଙ୍କ ଭଳି ତର୍କବିତର୍କରେ ମଧ ହୋଇଯାଇଥିଲେ ପାରଙ୍ଗମ, ଚେ଼ହେରାରେ ଥିଲେ ଗେଡ଼ା ଓ ପତଳା, ଏବଂ ଥିଲେ ଅକୃତଦାର । ଆନୁମାନିକ ୨୮ ଖ୍ରୀଷ୍ଟାବ୍ଦ ବେଳକୁ ପୟଗମ୍ବର ବ୍ୟାପ୍ଟିଷ୍ଟ୍ ଜନ୍‌ଙ୍କ ସହିତ ଜୁଦିଆ ଅଞ୍ଚଳରେ ଘଟିଛି ସାକ୍ଷାତ୍ । ଏସିନ୍ ସମ୍ପ୍ରଦାୟରୁ ପ୍ରାପ୍ତ ବିଶ୍ୱାସବଳରେ ସ୍ୱର୍ଗରାଜ୍ୟର ଆଶୁଆଗମନ ସମ୍ବାଦ ଘୋଷଣାକରି ବୁଲୁଥାଆନ୍ତି ଜନ୍ । ଇହୁଦୀଙ୍କୁ ତାଙ୍କ ଉପଦେଶ ଥିଲା, ପାପର ପ୍ରାୟଶ୍ଚିତ୍ତ, ଜର୍ଦନ୍‌ନଦୀ ଜଳରେ ଅବଗାହନପୂର୍ବକ ଅନୁତପ୍ତର କଳୁଷମୁକ୍ତି; ଏବଂ ଗାତ୍ର ଓ ଚିତ୍ତଶୁଦ୍ଧି ବାଟଦେଇ ଆସନ୍ନ ସ୍ୱର୍ଗରାଜ୍ୟର ଅଧିବାସୀହେବାକୁ ଯୋଗ୍ୟତା ଅର୍ଜନ । ଯୀଶୁଙ୍କ 'ବ୍ୟାପ୍ଟାଇଜେସନ୍' ଘଟିଛି ତାଙ୍କରି ହାତରେ, ଅର୍ଥାତ୍ ଜୋର୍ଦନ୍‌ନଦୀରେ ମୁଣ୍ଡବୁଡ଼ାଇ ଗାଧୋଇସାରି ନିଜଙ୍କୁ କରିଛନ୍ତି ପରିଶୁଦ୍ଧ । ମାତ୍ର ଅବଗାହନ ମୁହୂର୍ତ୍ତରେ ତୀବ୍ର ପ୍ରଗାଢ଼ ଏକ ଅନିର୍ବଚନୀୟ ଅଭିଜ୍ଞତା ସମ୍ମୁଖୀନ ହୋଇଚନ୍ତି ଯୀଶୁ, ଅତଃପର,

ମର୍ତ୍ତ୍ୟଲୋକରେ ସ୍ୱର୍ଗ ଅବତୀର୍ଣ୍ଣକରିବା ପ୍ରକଳ୍ପରେ କରିଛନ୍ତି ଆତ୍ମୋତ୍ସର୍ଗ । ଅଚିରେ ଶିଷ୍ୟ ବି ଜୁଟିଯାଇଛନ୍ତି ଅଳ୍ପସ୍ୱଳ୍ପ, ତାଙ୍କୁ ସାଙ୍ଗରେ ଧରି ଗ୍ୟାଲିଲି-ହ୍ରଦ ଉପକଣ୍ଠରେ ପରିବ୍ରାଜକ ଭଳି ଗ୍ରାମରୁ ଗ୍ରାମାନ୍ତର, ସହରରୁ ସହରାନ୍ତର, ଭ୍ରମଣକରିଛନ୍ତି ଧର୍ମୋପଦେଶ ପ୍ରଚାରକରି, ଭୂତପ୍ରେତ ରୋଗବୈରାଗ ସାଙ୍ଗରେ ଲଢ଼ାଇକରି, ଏବଂ ସେଇ କୀର୍ତ୍ତିକଳାପ ଦୌଲତରୁ କପାଳରେ ଜୁଟିଛି ଉଭୟ ଖ୍ୟାତି ଓ ଅପଖ୍ୟାତି । ଭକ୍ତ କହନ୍ତି, ଭୂତପ୍ରେତ କି ରୋଗବ୍ୟାଧି ଯେ ତାଙ୍କ କଥାମାନୁଛନ୍ତି, ତା ଐଶ୍ୱରିକ ଶକ୍ତିର ଲକ୍ଷଣ; ସଂଶୟବାଦୀ କହନ୍ତି, ଏ ଶକ୍ତି ଦାନବିକ, ତେଣୁ ଅମଙ୍ଗଳର ସୂଚନା । ନିଜ ପରିବାରଲୋକ ମଧ ଏ ଅପବାଦ ଶୁଣି, କିଞ୍ଚିତ୍ ଭୀତ ଓ ଉଦ୍‌ବିଗ୍ନ ହୋଇଚନ୍ତି; ପୁଣି ଶୁଣିଚନ୍ତି ଯେତେବେଳେ ଯୀଶୁ ପ୍ରାୟ ଉନ୍ମାଦ, କ୍ଷାନ୍ତକରିବାକୁ ବି ଚେଷ୍ଟାକରିଚନ୍ତି । ଯୀଶୁ କିନ୍ତୁ କରିନାହାନ୍ତି କର୍ଣ୍ଣପାତ ।

ଅପବାଦର କାରଣ ପ୍ରବ୍ରଜ୍ୟା ନୁହେଁ; ଅସଲ କାରଣ ସ୍ୱର୍ଗରାଜ୍ୟ ପ୍ରତିଷ୍ଠା ଅଭିଯାନ, ଏବଂ ସେଥିପାଇଁ କୃତ ପାପୀତାପୀଙ୍କ ସଂସ୍କାର । ସେଇ ବ୍ରତପାଳନରେ ନିବେଦିତପ୍ରାଣ ଯୀଶୁ ଗ୍ୟାଲିଲି ହ୍ରଦତଟବର୍ତ୍ତୀ କାପେରନାଉମ୍ ସହରରେ ବସାଇଛନ୍ତି ଆଶ୍ରମ ଆଉ ମଠ । ସମାଜ ଯାହାଙ୍କୁ 'ଦୁଶ୍ଚରିତ୍ର' ବୋଲି ଘୃଣାକରେ, ଆମନ୍ତ୍ରଣ କରିଆଣି ମଠରେ ତାଙ୍କୁ ଦେଇଚ଼ନ୍ତି ଖାଦ୍ୟପେୟ, ପତିତ-ପତିତାଙ୍କ ସାଙ୍ଗରେ ଅହର୍ନିଶ ଅବାଧ ବସାଉଠା, ପାନାହାର; ଗତାନୁଗତିକ ଆଚାରଅନୁଷ୍ଠାନକୁ ପ୍ରକାଶ୍ୟ ଅବଜ୍ଞା, ତଥାକଥିତ ପୁଣ୍ୟବାନ୍/ଗୁଣବାନ୍‌ଙ୍କ ବାଧାନିଷେଧକୁ ବିଦ୍ରୂପ, ପ୍ରତିଷ୍ଠିତ ଲୋକଙ୍କୁ ତିରସ୍କାର—ଯାର ସମ୍ମିଳିତ ପରିଣାମ ନ୍ୟସ୍ତସ୍ୱାର୍ଥଙ୍କ କ୍ରମବର୍ଦ୍ଧମାନ ବିଦ୍ୱେଷ । ଡମାଡୌଳ ଭିତରେ ଅତ୍ୟୁତ୍ସାହୀ କିଛି ଅନୁଗତ ଇହୁଦୀଜାତିର ଈଶ୍ୱରପ୍ରେରିତ ତ୍ରାତା ରୂପରେ ଯୀଶୁଙ୍କୁ କରିଛନ୍ତି ଚିତ୍ରଣ । ଜର୍ଦନ୍‌ନଦୀ କୂଳଧରି ଦକ୍ଷିଣକୁ ଆଗେଇ ଯାଇଚ଼ନ୍ତି ଅନୁଚ଼ର । ଜେରୁସାଲେମ୍, ବେଥାନି ଇତ୍ୟାଦି ଜନବହୁଳ ଅଞ୍ଚଳରେ ପ୍ରଚାରକାର୍ଯ୍ୟ ଚାଲିଛି ଜୋର୍‌ସୋର୍ । ଜେରୁସାଲେମ୍ ମନ୍ଦିରର ବୈଭବ ଓ ଆଡ଼ମ୍ବର କିନ୍ତୁ ଯୀଶୁଙ୍କ ମନକୁ ଆଣିଚି ବିତୃଷ୍ଣା; ମନ୍ଦିର ସମ୍ମୁଖ ସୋପାନଶ୍ରେଣୀ ଉପରେ ଦଣ୍ଡାୟମାନହୋଇ ସ୍ୱର୍ଗରାଜ୍ୟର ଅବତରଣ ବାର୍ତ୍ତା ଘୋଷଣା କରିଦେଇଚ଼ନ୍ତି ତତ୍‌କ୍ଷଣାତ୍ । ଅତଃପର ମନ୍ଦିର ଚତ୍ୱରରେହିଁ ପ୍ରଚ଼ଳିତ କପଟଧର୍ମର ନିନ୍ଦା । କଳାପାହାଡ଼ୀ ଏ ଆଚ଼ରଣ ପୁରୋହିତବର୍ଗଙ୍କ କୋପଦୃଷ୍ଟି ଆକର୍ଷଣକରିଥିବା ସ୍ୱାଭାବିକ । ବିଦ୍ରୋହୀକୁ ବାନ୍ଧିନେବା ସକାଶେ ଚାଲିଚି ଗୋପନ ମନ୍ତ୍ରଣା; କିନ୍ତୁ ହଠାତ୍ ଆସିଯାଇଚି ପାସ୍-ଓଭର୍ ପରବ;

ତହିଁଆରଦିନ ଗୁରୁବାର । ରାତିରେ ବାରଜଣ ଅନୁଚରଙ୍କ ମେଳରେ ଏକାଠି ଖିଆପିଆସାରି ଜେରୁସାଲେମ୍ ଉପକଣ୍ଠସ୍ଥ ପାହାଡ଼ର ଅଲିଭ୍ ବଣରେ ରାତ୍ରିଯାପନ କରିବାକୁ ବାହାରିଯାଆନ୍ତି ଯୀଶୁ; ସାଙ୍ଗରେ ଥିଲେ ଶହେ ସରିକି ଲୋକବାକ । ରାତିଅଧରେ ମନ୍ଦିର-କର୍ତୃପକ୍ଷଙ୍କ କଟୁଆଳ କିନ୍ତୁ ଆସିଚି ବାନ୍ଧିନେବାକୁ । ଆଗତୁରା ସୁରାକ୍ ପାଇଥିଲେ ହୁଏତ, ନ ହେଲେ ଆତ୍ମଗୋପନ କରିଥାନ୍ତେ କାହିଁକି ? ଅବା ଲୋକବାକ ଆଣନ୍ତେ କାହିଁକି ସାଙ୍ଗରେ? କଟୁଆଳଙ୍କ ଲକ୍ଷ୍ୟ ଅବଶ୍ୟ ନିଜେ ଯୀଶୁ, ଅନୁଚର ନୁହେଁ । କଟୁଆଳଙ୍କ ଗହଣରେ ରୋମାନ୍ ସୈନ୍ୟ ବି ଥିଲେ ଅବଶ୍ୟ; ଆଉ, ଅନ୍ଧାରରାତିରେ ପ୍ରିୟଶିଷ୍ୟ ଜୁଡାସ୍ ଚିହ୍ନାଇଦେଇଚି ଯୀଶୁଙ୍କୁ । ଏ ପରିସ୍ଥିତିରେ ସାଧାରଣତଃ ଯା ହୁଏ, ଅନୁଚର କେହି ଉଞ୍ଚାଇଛନ୍ତି ଛୁରୀ-କଟୁରୀ ଯୀଶୁଙ୍କୁ ଓଗାଳିରଖି, କିନ୍ତୁ ସୁସଜ୍ଜିତ ଅସ୍ତ୍ରବଳ ଆଗରେ ଶିଷ୍ୟଙ୍କ ଛତ୍ରଭଙ୍ଗ ଥିଲା ସ୍ୱତଃସିଦ୍ଧ । କଟୁଆଳ ବନ୍ଦୀକରିଚନ୍ତି ଯୀଶୁଙ୍କୁ । ପ୍ରଧାନ ଯାଜକ ଓ ଅନ୍ୟ ପଦସ୍ଥ ପୁରୋହିତ ଜେରାକରିସାରି ରୋମାନ୍ ପ୍ରଶାସକ ପ୍‌ଣ୍ଟିୟୁସ୍ ପିଲାତୁସ୍ (=ପଣ୍ଟିଅସ୍ ପାଇଲେଟ୍)ଙ୍କ ଅଦାଲତକୁ ଚାଲାଣ କରିଦେଇଚନ୍ତି । ଶୁକ୍ରବାର ସକାଳେ ଅଦାଲତରେ ହାଜର କରାଯାଇଚି । ଏକ୍ଷଣି ଭାବିବା କଥା, ପିଲାତୁସ୍ କଣ କେବଳ ପୂଜକମାନଙ୍କୁ ସନ୍ତୁଷ୍ଟକରିବା ସକାଶେ ପ୍ରାଣଦଣ୍ଡ ଦେଇଥିଲେ ଯୀଶୁଙ୍କୁ? ନା, ଅସଲ କାରଣ ଥିଲା ରାଜନୀତିକ ? ପିଲାତୁସ୍ ରୋମାନ୍ ବିଚାରକ ଏବଂ ରୋମାନ୍ ବିଚାରବ୍ୟବସ୍ଥାର ସୁଖ୍ୟାତି ଜଗଦ୍‌ବିଖ୍ୟାତ । ପ୍ରଶାସନ ହାତରେ ନିଶ୍ଚୟ ପ୍ରମାଣ ଥିଲା, ଯୀଶୁ ପ୍ରତିଷ୍ଠାନବିରୋଧୀ ସନ୍ତ୍ରାସବାଦୀ; ଅନ୍ୟଥା, ଅନୁଚର ସଶସ୍ତ୍ର ପ୍ରତିରୋଧ କରିବେ କାହିଁକି? ତା ଛଡ଼ା, ଖଟିଖିଆ ଲୋକଙ୍କୁ ମତାଉଛନ୍ତି ପ୍ରତିଷ୍ଠିତ ଧର୍ମାନୁଶାସନ ବିପକ୍ଷରେ, କଣ ନା, ଇହୁଦୀଙ୍କ ନବୀନତମ ମସିହା ସିଏ ନିଜେ ! ଗ୍ୟାଲିଲିର ଗାଉଁଲିଚୋକା ଦଳବଳ ଘେନି ଜେରୁସାଲେମ୍ ଗଳିକନ୍ଦିରେ ମସ୍ତାନିକରି ବୁଲୁଛି ମନଇଛା; ଅନୁଚର ବି ଯୋଗାଡ଼କଲାଣି ବେଜାଏ ସତେଅବା ଗୋଟାଏ ହିରୋ ! ଉତ୍ସବମୁଖର ଉତ୍ତେଜିତ ଜନତାଭିତରେ ରୋମାନ୍ ଆଧିପତ୍ୟ ବିପକ୍ଷରେ ବିକ୍ଷୋଭର ସ୍ଫୁଲିଙ୍ଗ ସ୍ଫୁରିତକରିବା ତା ପାଇଁ ଅସମ୍ଭବନୁହେଁ ନିଶ୍ଚୟ । ଅବାଞ୍ଛିତ ସମ୍ଭାବନାଗୁଡ଼ାକର ମୂଳୋତ୍ପାଟନ ସକାଶେ ପ୍ରାଣଦଣ୍ଡ ହିଁ ସମୀଚୀନ । ସହର ଉପକଣ୍ଠରେ ରାସ୍ତାକଡ଼ରେହିଁ କ୍ରୁଶ୍‌କାଠରେ ଚଢ଼ାଯାଇଚି ଯୀଶୁଙ୍କୁ । ସମ୍ଭବତଃ ୩୦ କିମ୍ବା ୩୩ ଖ୍ରୀଷ୍ଟାବ୍ଦ । ଗସ୍‌ପେଲ୍‌ର ପ୍ରାଚୀନତମ ଲେଖକ ମାର୍କ କହିଛନ୍ତି, ମରଣମୁହୂର୍ତ୍ତରେ ଯୀଶୁଙ୍କ ନିକଟରେ କି ବଧ୍ୟଭୂମିରେ ଶିଷ୍ୟ କେହି ଉପସ୍ଥିତ ଥିଲେନାହିଁ ।

ପାଖଆଖଲୋକ କୁଆଡ଼େ ଶୁଣିଥିଲେ, ପ୍ରାଣବାୟୁ ଉଡ଼ିଯିବା ଆଗରୁ ପୟଗମ୍ବର ଏଲିଜାଙ୍କୁ ଆହ୍ୱାନକରିଥିଲେ ଯୀଶୁ ଅସମାପ୍ତ କର୍ମର ଦାୟିତ୍ୱ ବହନକରିବାକୁ । ମତାନ୍ତରେ, ଯୀଶୁ ଉଚ୍ଚାରଣ କରିଥିଲେ ଧର୍ମଗୀତିକାରୁ ଏକମାତ୍ର ପଙ୍‌କ୍ତି: 'ଈଶ୍ୱର, ହେ ମୋର ଈଶ୍ୱର, କାହିଁକି ପରିତ୍ୟାଗକଲ ମୋତେ ?' ମାର୍କ ଆହୁରି କହିଛନ୍ତି, ଶିଷ୍ୟ ବା ସହଚର ନୁହେଁ, ଯୀଶୁଙ୍କୁ ସମାଧିସ୍ଥ କରିଥିଲେ ଜଣେ ଅପରିଚିତ ଧାର୍ମିକ ଇହୁଦୀ । ଯଥେଷ୍ଟ ବିଶ୍ୱାସଯୋଗ୍ୟ ଏ ଖବର, କାହିଁକିନା, କ୍ରୁଶ ଉପରେ ମରିଥିବା ଲୋକଙ୍କୁ ନିଜ ହାତରେ କବରଦେଲେ ମହାପୁଣ୍ୟ ଅର୍ଜନହୁଏ, ଏଭଳି ବିଶ୍ୱାସ ଇହୁଦୀସମାଜରେ ଥିଲା ଜନପ୍ରିୟ ।

ଗ୍ରୀକ୍ 'କ୍ରିଷ୍ଟସ୍' (=ଖ୍ରୀଷ୍ଟ) ଶବ୍ଦର ଆକ୍ଷରିକ ଅର୍ଥ 'ଲେପନ'; ଅର୍ଥାତ୍ ଯୀଶୁଙ୍କ ଉପରେ ପଡ଼ିଛି ଈଶ୍ୱରଙ୍କ ପ୍ରଲେପ । ମଣିଷ ତ ଈଶ୍ୱର ହୋଇପାରେନା ଏବଂ ଖ୍ରୀଷ୍ଟଧର୍ମ ଯେହେତୁ ଜୁଦାଇଜ୍ମ (= ପ୍ରାଚୀନ ଇହୁଦୀଧର୍ମ)ର ସଂପ୍ରସାରଣ ମାତ୍ର, କବରଭିତରୁ ପୁନରୁତ୍ଥିତ ହେବାଉତ୍ତାରୁ, *ଓଲ୍ଡ ଟେଷ୍ଟାମ୍ୟାଣ୍ଟ* ର ଭବିଷ୍ୟବାଣୀକୁ ସ୍ମରଣ କରି ଅନୁର ଭାବିଚନ୍ତି ଯୀଶୁଙ୍କୁ ମସିହା (=ତ୍ରାଣକର୍ତ୍ତା) । ସେଥିପାଇଁ ଈଶ୍ୱରଙ୍କ ସହିତ ସମ୍ବନ୍ଧ ଅସାମାନ୍ୟ, ରୀତିମତ ପୁତ୍ରର ସମ୍ବନ୍ଧ, ଅଥବା 'ଲୋଗସ୍' (=ମୁଖନିଃସୃତ ବଚନ), କାହିଁକିନା, ବିଶ୍ୱଜଗତର ଅବବୋଧ ଆସେ ଏକମାତ୍ର ଭାଷା ମାଧ୍ୟମରେ । ତେଣୁ ଈଶ୍ୱର (=ପିତା) ଅବ୍ୟକ୍ତ; ଯୀଶୁ (=ପୁତ୍ର) ହିଁ ପରିବ୍ୟକ୍ତ । ଏଇ ଥିଲା ଯୀଶୁଙ୍କ ସାକ୍ଷାତ୍‌ଶିଷ୍ୟ ଦ୍ୱାଦଶ ଆଦିପ୍ରଚାରକଙ୍କ ତତ୍ତ୍ୱନିର୍ମାଣ; ସମଗ୍ର ଇଉରୋପରେ ଏଇ ରୂପରେ ହିଁ ବ୍ୟକ୍ତହୋଇଚି ଯୀଶୁବାଣୀ । ରଜା-ଉଜୀରଙ୍କ ବଦାନ୍ୟତା ଦରକାର ହୋଇନାହିଁ; ମାତ୍ର, ୩୧୫ ଖ୍ରୀଷ୍ଟାବ୍ଦରେ ସମ୍ରାଟ୍ କନ୍‌ଷ୍ଟାଣ୍ଟିନ୍ ଏ ଧର୍ମକୁ ରୋମାନ୍ ସାମ୍ରାଜ୍ୟର ରାଷ୍ଟ୍ରଧର୍ମ ଘୋଷଣା କରିଦେବା ଉତ୍ତାରୁ ରୂପଭେକ ହୋଇଗଲା ଏକେବାରେ ଓଲଟା, ବୌଦ୍ଧଧର୍ମ ଯେମିତି ଅଶୋକ ବା କନିଷ୍କଙ୍କ ହାତରେ । ଧର୍ମ ଏବେ ଆଉ ପରମାର୍ଥ ସଂଧାନ ନୁହେଁ, ମଧ୍ୟଯୁଗୀୟ ଇଉରୋପର 'ଅଭିନ୍ନ' ମହାଦେଶୀୟ ସଭ୍ୟତା । କନ୍‌ଷ୍ଟାଣ୍ଟିନ୍ ଦ ଗ୍ରେଟ୍ (ଖ୍ରୀ ୨୭୨-୩୩୭) ସମ୍ରାଟ୍ ହେଲେ କିନ୍ତୁ ୩୦୬ ଖ୍ରୀଷ୍ଟାବ୍ଦରେ, ମ୍ୟାକ୍ସେଣ୍ଟିଅସ୍ ସାଙ୍ଗରେ ସମରାଭିଯାନରେ ବ୍ୟାପୃତ ଥିବାବେଳେ ୩୧୨ ଖ୍ରୀଷ୍ଟାବ୍ଦରେ ଆକାଶରେ ଦେଖିବାକୁ ପାଇଲେ ଜାଜ୍ୱଲ୍ୟମାନ ଏକ କ୍ରୁଶ୍, ତା ତଳକୁ କୁଆଡ଼େ ଲେଖାହୋଇଥିଲା In hoc signo vinces (=ଏଇ ଚିହ୍ନ ତୋତେ ଆଣିଦେବ ବିଜୟଗୌରବ), ଅଚିରେ ମ୍ୟାକ୍ସେଣ୍ଟିଅସ୍‌ଙ୍କୁ ରୋମ୍ ନିକଟରେ ପରାଜିତ କରିପାରି,

କନ୍‌ଷ୍ଟାଣ୍ଟିନ୍ ଖ୍ରୀଷ୍ଟଧର୍ମ ଗ୍ରହଣକରିନେଲେ, ଏବଂ ସେଇ ସୂତ୍ରରେ, ହେଲେ ପୃଥିବୀରେ ସର୍ବପ୍ରଥମ ଖ୍ରୀଷ୍ଟାନ୍ ସମ୍ରାଟ୍ । ପରେ ଅବଶ୍ୟ, ରାଜଧାନୀ ଉଠାଇନେଇଛନ୍ତି ରୋମ୍‌ରୁ ବାଇଜାଣ୍ଟିଅମ୍, ଅର୍ଥାତ୍ ଆଧୁନିକ ତୁରସ୍କକୁ, ଯା ଇସ୍ରାଏଲ୍‌ର ନିକଟତର । ନୂତନ ରାଜଧାନୀ ଇଉରୋପରୁ ଏସିଆକୁ ଆସି, ନାଁ ହୋଇଛି କନ୍‌ଷ୍ଟାଣ୍ଟିନୋପ୍ଲ । ପଶ୍ଚିମଗୋଲାର୍ଦ୍ଧରୁ ପ୍ରାଚ୍ୟ ଭୂଖଣ୍ଡକୁ ରୋମାନ୍ ସାମ୍ରାଜ୍ୟର କେନ୍ଦ୍ର ଯେ ଉଠିଆସିଲା, ପରିଣାମରେ ପ୍ରାଚ୍ୟଜଗତ ହେଲା କ୍ରମଶଃ ଇଉରୋପ-କୈନ୍ଦ୍ରିକ । ତଥାପି ଭେଦକରି ପାରିନାହିଁ ତୁରସ୍କର ପୂର୍ବାଞ୍ଚଳ । ସେ ଅନୁପ୍ରବେଶ ଘଟିଚି ଉନବିଂଶ ଓ ବିଂଶଶତକରେ ଔପନିବେଶିକ ପ୍ରଭୁଙ୍କୁ ଅନୁଧାବନକରି ଖ୍ରୀଷ୍ଟଧର୍ମ ଯେତେବେଳେ ବିନା ପ୍ରତିରୋଧରେ ପଶିଆସିଚି ଏସିଆ, ଆଫ୍ରିକା ଓ ଲାଟିନ୍-ଆମେରିକା ଭିତରକୁ; ରାଜନୀତିକ କ୍ଷମତାର ଅଧସ୍ତନ ଭୂମିକାରେ ଅବତୀର୍ଣ୍ଣ ହୋଇଛି ତେଣୁ ଯୀଶୁଙ୍କ ର୍‍ୟାଡିକ୍ୟାଲିଜ୍ମ । ଦକ୍ଷିଣଆଫ୍ରିକାର ଖ୍ରୀଷ୍ଟାନ୍‌ଯାଜକ, କିନ୍ତୁ କୃଷ୍ଣାଙ୍ଗ, ଡେସ୍‌ମଣ୍ଡ ଟୁଟୁ କହନ୍ତି, ହାତରେ ବହି ଧରାଇଦେଇ କହିଲେ ଆଖି ବୁଜିବାକୁ; ଆଖି ଖୋଲିଲୁଁ ଯେତେବେଳେ, ଦେଖିଲୁଁ ହାତରେ ଅଛି *ବାଇବେଲ୍*, ଜମିବାଡ଼ି ହୋଇଯାଇଛି ହସ୍ତାନ୍ତର !

ଯୋଉ ଯୀଶୁ ନୂଆକୋଉ ଚର୍ଚ୍ଚବସାଇବାକୁ ଚାହିଁନାହାନ୍ତି, ତାଙ୍କରି ନାଁ କୁ ଘେରି ଦାନାବାନ୍ଧିଲା ଏବେ ଅଭିନବ ଏକ ଧର୍ମ ପ୍ରତିଷ୍ଠାନ । ତାଙ୍କୁ ପ୍ରତିପନ୍ନକରାଗଲା କ୍ରିଷ୍ଟାନ୍ ତ୍ରିମୂର୍ତ୍ତି (=ଟ୍ରିନିଟି)ର ଅବିଚ୍ଛେଦ୍ୟ ଉପାଦାନ, ଈଶ୍ୱରଙ୍କ ମନୁଷ୍ୟରୂପ, ଆତ୍ମୋତ୍ସର୍ଗ ମାଧ୍ୟମରେ ସାରା ମାନବପ୍ରଜାତିର ଭାବଗ୍ରାହୀ ତ୍ରାତାପୁରୁଷ । ଯୀଶୁ ଯା କେବେ ଦାବିକରିନାହାନ୍ତି, ସେଇ କଥାଗୁଡ଼ାକ ଏବେ ହୋଇଗଲା ଚର୍ଚ୍ଚଶିକ୍ଷାର ଖିଲାଣ ମଧ୍ୟବର୍ତ୍ତୀ ପାଷାଣ । ଅଯୌକ୍ତିକ ହେଲେସୁଦ୍ଧା, ଏଇ ହେଲା ଇତିହାସ ଓ ବାସ୍ତବ । ତାଙ୍କ ଗୁରୁତ୍ୱପୂର୍ଣ୍ଣ ଭାବବସ୍ତୁ ଭିତରୁ ଅବଶ୍ୟ ଗୃହୀତହୋଇଚି ଈଶ୍ୱରକୃପା, ଈଶ୍ୱରବିଶ୍ୱାସ, ମୋକ୍ଷ ପ୍ରଭୃତି ଉପାଦାନ; ମାତ୍ର ପ୍ରାଧାନ୍ୟ ଲାଭକରିଚି ବିଶେଷ କେତେଟି ପ୍ରବଣତା । ଯୀଶୁ କହିଥିଲେ ଭଗବତ୍‌ରାଜ୍ୟ କଥା, ଚର୍ଚ୍ଚ କହିଲା ଯୀଶୁ ହିଁ ସ୍ୱୟଂ ଭଗବାନ୍, ଭଗବତ୍‌ରାଜ୍ୟର ରାଜା । ଯୀଶୁ କହିଥିଲେ, ମୋକ୍ଷ ଆସିବ ଈଶ୍ୱରଙ୍କ କୃପା ରୂପରେ, ଚର୍ଚ୍ଚ କହିଲା ଏକାଧାରରେ ଯୀଶୁ ଏକମାତ୍ର ମୁକ୍ତିର ଉପାୟ ଓ ମୁକ୍ତିଦାତା । ଯୀଶୁ କହିଥିଲେ, ଈଶ୍ୱରଙ୍କ ପଦପ୍ରାନ୍ତରେ କର ଆତ୍ମସମର୍ପଣ; ଚର୍ଚ୍ଚ କହିଲା ଯୀଶୁହିଁ ଏକମାତ୍ର ଆଶା ଭରସା । ଯୀଶୁ ଚାହିଁଥିଲେ ସ୍ୱର୍ଗରାଜ୍ୟର ନୀତିନିୟମ ଗୃହୀତହେଉ ଅତ୍ର ଏବଂ ଅଦ୍ୟ, କ୍ଷମା-ପ୍ରେମ-ଅହିଂସା ବିରାଜକରୁ ଏକତ୍ର; ମାତ୍ର ଚର୍ଚ୍ଚ ଯୋଉ ଶିକ୍ଷାଦେଲା,

ସେଥିରୁ ବାହାରିଲା କାମଚଳା ଆପୋଷ : ମରଜୀବନରେ ହୁଗୁଳାହେଲେ ଚଳିବ (ଯେପରି, ବସ୍ତ୍ରସ୍ତାଭାବେ ସୂତ୍ରଂ ଦଦ୍ୟାତ୍), ସ୍ୱର୍ଗୀୟ ଆଚରଣର କ୍ଷେତ୍ର ଏକମାତ୍ର ପରଲୋକ । ମୂଳ ଜୁଦାଇଜ୍ମ-ରୁ ତେଣୁ ଯୋଗସୂତ୍ର ଛିଡ଼ିଗଲା, ଆଉ ର୍ୟାଡିକ୍ୟାଲିଜ୍ମ ସାଙ୍ଗରେ ଚର୍ଚ୍ଚଘନଘନ ରଫାକରିବା ଫଳରେ ଯୀଶୁ ବି ହୋଇଗଲେ ନିଷ୍ପ୍ରଭ ।

ସମାଧିଭିତରୁ ପୁନରୁତ୍ଥାନ ଭଳି ବିତର୍କିତ ଉପାଖ୍ୟାନ ପ୍ରଚାରରୁ ଘଟିଚି ଏ ବିପଦ— ଏକଥା ମଧ୍ୟ କହିହେବନାହିଁ, କାହିଁକିନା, ଇହୁଦୀ ଯେ ଇସ୍‌ରାଏଲ୍ ଛାଡ଼ି ଛିନ୍ନଛତ୍ରହୋଇ ବାହାରିଗଲେ ଯତ୍ର ତତ୍ର, ସେଇ ବିପର୍ଯ୍ୟୟ ସାଙ୍ଗରେ ଜଡ଼ିତ ଏ ରଫାଗୁଡ଼ାକ; କାହିଁକିନା, ଦ୍ୱାଦଶ ପରିବ୍ରାଜକଙ୍କ ହାତରେ ଖ୍ରୀଷ୍ଟଧର୍ମ, ଚରିତ୍ରରେ ଥିଲା ଇହୁଦୀ; ୭୦ ଖ୍ରୀଷ୍ଟାବ୍ଦ ବେଳକୁ ଆପଣା ଭିଟାମାଟିରୁ ଇହୁଦୀଙ୍କ ଖୁଣ୍ଟ ଯେତେବେଳେ ଉପୁଡ଼ିଗଲା, ଖ୍ରୀଷ୍ଟଧର୍ମ ଆଶ୍ରୟ ଖୋଜିଲା ଅଣଇହୁଦୀ ଦୁନିଆରେ, ଅବତାରବାଦକୁ ଛାଡ଼ିଲେ ଠାଇଁ ମିଳିବନାହିଁ ଯୋଉଠି । ଧର୍ମର ନୂତନ ପ୍ରତିଷ୍ଠାନ (=ଚର୍ଚ୍ଚ)ର ରୂପଭେକ ତେଣୁ ବଦଳିବାକୁ ଆରମ୍ଭକରିଚି । ସଙ୍କଟର ଏଇ ଐତିହାସିକ ସମସ୍ୟାପଟରେ ଚର୍ଚ୍ଚର ବିବର୍ତ୍ତନ, କେମ୍ବ୍ରିଜ୍ ଇମାନୁଯେଲ୍ କଲେଜ୍‌ର ଅଧ୍ୟକ୍ଷ ଡନ୍ କିଉପିଟ୍‌ଙ୍କୁ ବିକ୍ଷୁବ୍ଧକରିଥିଲେ ସୁଦ୍ଧା, ଅଧିକ ଘଣ୍ଟାଚକଟା କରିବାରୁ ବିରତ ରହିଚନ୍ତି; ତେଣୁ ପୌରାଣିକ ଯୀଶୁଙ୍କ ଐତିହାସିକ ପରିଚୟକୁ ଏଇଠି ମୁଲ୍‌ତବିରଖି, ସାମାନ୍ୟ ଏକ ଦାର୍ଶନିକ ପ୍ରଶ୍ନକୁ, ଅର୍ଥାତ୍ ଲଗସ୍ ବା ଭାଷାର ଭୂମିକାକୁ, ଚୁମ୍ବକରେ ପରଖକରାଯାଉ । ଖ୍ରୀଷ୍ଟାନ୍ ତ୍ରିମୂର୍ତ୍ତି (=ଟ୍ରିନିଟି) ହେଲେ : ଗଡ୍ ଦ ଫାଦର୍, ଗଡ୍ ଦ ସନ୍, ଆଉ ଗଡ୍ ଦ ହୋଲି ଘୋଷ୍ଟ (= ପିତା, ପୁତ୍ର ଆଉ ଉଭୟ ମଧ୍ୟସ୍ଥ ଯୋଗସୂତ୍ର ଲଗସ୍ ବା ଆଦିଶବ୍ଦ; ଯେପରି ଆମ ଓଁକାର) । ଏ ଧରଣର ଭାବଶୃଙ୍ଖଳା ସ୍ପଷ୍ଟତଃ ଅବିମିଶ୍ର ଅଧିବିଦ୍ୟା (=ମେଟାଫିଜିକ୍ସ); ତା ଉପରେ ଅନ୍ତର୍ଦୃଷ୍ଟି ନିକ୍ଷେପକରିଛନ୍ତି ସଦ୍ୟପ୍ରୟାତ୍ ଦାର୍ଶନିକ ଜାକ୍ ଦେରିଦା । ଅଧିବିଦ୍ୟାତ୍ମକ ସମ୍ପର୍କ-କଳ୍ପନାରେ, ଧରିନିଆଯାଇଛି ଈଶ୍ୱରଙ୍କୁ ଅବିଚଳ ଭିତ୍ତି; ସେ ଭିତ୍ତିର ପ୍ରତିରୂପ (=ଇମେଜ୍) ତାଙ୍କ ବାହକ (=ପୁତ୍ର) ଏବଂ ପ୍ରତିରୂପକୁ ବ୍ୟକ୍ତକରିବା ମାଧ୍ୟମ, ଈଶ୍ୱରଙ୍କୁ ମଣିଷ ପାଖରେ ପହଞ୍ଚାଇଦେବା ଯା କାମ, ତା ଭାଷା । ଉପଲବ୍ଧିର ଅପରିହାର୍ଯ୍ୟ ସର୍ତ୍ତ ସେଥିପାଇଁ ଶବ୍ଦ-ବ୍ରହ୍ମ । ଗ୍ରୀକରେ 'ଲଗସ୍' ସେଇ ଶବ୍ଦବ୍ରହ୍ମ, ସତ୍ୟର ମୌଳିକ ଅଭିବ୍ୟକ୍ତି; ଦାର୍ଶନିକ ପ୍ଲାଟୋ ଭାବିଚନ୍ତି ମୌଖିକ ସେଇ ରୂପକୁ ପ୍ରାଥମିକ । ଅର୍ଥାତ୍, ମୁଖନିଃସୃତ ଶବ୍ଦ ଅର୍ଥବହ ହୋଇପାରେ, ଯିଏ କହୁଛି କେବଳ ତାହାରି ପ୍ରେକ୍ଷିତରେ; ତେଣୁ

ଭାଷାଶୃଙ୍ଖଳା ଭିତରେ ଏକ କେନ୍ଦ୍ର ବା ସେଣ୍ଟର୍‌ର କଳ୍ପନା । ଯୀଶୁଙ୍କୁ କେନ୍ଦ୍ରରେ ନ ରଖିଲେ ପୂରା *ନିଉ ଟେଷ୍ଟାମେଣ୍ଟ* ହୋଇଯିବ ନିରର୍ଥକ; ଯେପରି ଈଶ୍ୱରଙ୍କୁ ସେଣ୍ଟର୍ ବୋଲି କଳ୍ପନା ନ କଲେ, ସତ୍ୟ ବା ରିଆଲିଟି ଅର୍ଥହୀନ । ଅତଏବ, କଥା ହେଉ କି ଲେଖା, ଅର୍ଥବହ ହେବାକୁହେଲେ ଆଶ୍ରୟକରିବ କୋଉ ନା କୋଉ କୈନ୍ଦ୍ରିକତା, ଯୋଉ କେନ୍ଦ୍ର ଜ୍ଞାନବିଜ୍ଞାନକୁ ନିର୍ଦ୍ଦିଷ୍ଟ ବିନ୍ଦୁରେ କରିପାରେ ସଂଗଠିତ, ଏବଂ ସେଇ ସୂତ୍ରରେ, ସତ୍ୟ ବା ଅବ୍ୟକ୍ତକୁ ସର୍ତ୍ତହୀନ ନିସ୍ପନ୍ଦ ନିଟୋଳ ରୂପରେ ପ୍ରତିଭାତ । ତା'ହେଲେ କିନ୍ତୁ ବୁଝିବାକୁ ହେବ ମର୍ମାର୍ଥ ବା ମିନିଙ୍ଗ୍‌ର ଅବସ୍ଥାନ ଭାଷାଶୃଙ୍ଖଳା ବହିର୍ଭୂତ; ଅଥଚ ଭାଷାଶୃଙ୍ଖଳା ଏକ ସଂହତ 'କୋଡ୍' ବା ସଙ୍କେତସମଷ୍ଟି ଏବଂ ସଙ୍କେତଗୁଡ଼ିକହିଁ ନିର୍ମାଣକରେ ବଚନ/ଲିଖନର ସଂଗଠନ । ସେ ସଂଗଠନକୁ ଦେରିଦା ନାଁ ଦେଇଛନ୍ତି 'ଟେକ୍‌ସ୍ଟ'(=ପାଠବସ୍ତୁ) । ସେଇ ସଂଗଠନର ଗ୍ରନ୍ଥିମୋଚନ (=ଡିକୋଡ୍) କରି ମର୍ମାର୍ଥରେ ଉପନୀତହୁଏ ମଣିଷ; ମାତ୍ର ପ୍ରତିଟି ଡିକୋଡିଙ୍ଗ୍ ମଧ୍ୟ ନିଜେ ଏକ କୋଡ୍; ତେଣୁ ଦରକାରହେବ ପୁନଃପୁନଃ ଡିକୋଡିଙ୍ଗ୍ । ଅର୍ଥାତ୍ ଅନ୍ତହୀନ ଏ ପ୍ରକ୍ରିୟା : କୋଡ୍-ଡିକୋଡ୍-ଏନ୍‌କୋଡ୍-ଡିକୋଡ୍ । ଅନ୍ୟ ଶବ୍ଦରେ, ମର୍ମାର୍ଥ କେବେହେଲେ ଅଦ୍ୱିତୀୟ ନୁହେଁ କି ଏକରସ ନୁହେଁ, ବଦଳିଯାଏ ବିକୀର୍ଣ୍ଣହେବା ପ୍ରକ୍ରିୟାରେ । କାହାର ବିକୀର୍ଣ୍ଣହେବା ପ୍ରକ୍ରିୟାରେ ? ପାଠ/ଶ୍ରୁତବସ୍ତୁର, ଟେକ୍‌ସ୍ଟର; କେନ୍ଦ୍ର ବା ସେଣ୍ଟର୍‌ର ନୁହେଁ । ଅର୍ଥାତ୍, ଟେକ୍ସଟ୍ ଯେତେବେଳେ ମନର ଚେତନ-ଅବଚେତନ-ଅଚେତନରେ ଯାଇ ପହଞ୍ଚେ, ଦୀପଶିଖା ପରି କମ୍ପମାନ ହେଉଥାଏ ମର୍ମାର୍ଥ, ଏବଂ ହେଉଥାଏ ବୋଲି, ମର୍ମାର୍ଥ ଏକ ନୁହେଁ, ଅନେକ; ସ୍ଥିର ନୁହେଁ, ଅସ୍ଥିର; ଟେକ୍ସଟ୍ ବାହାରେ ତା ଅସ୍ତିତ୍ୱ ନାହିଁ କି ଥାଇପାରେନା, ଅର୍ଥାତ୍, ଭାଷାଶୃଙ୍ଖଳା କୋଉହେଲେ କୈନ୍ଦ୍ରିକତା ଉପରେ ନିର୍ଭରକରେନା; କେନ୍ଦ୍ର ରହିବା ମାନେ ମର୍ମାର୍ଥକୁ ସୀମାବଦ୍ଧକରିବାକୁ ଚେଷ୍ଟା, ଅଥଚ ମର୍ମାର୍ଥ ତ ଅସୀମ ! ସେଥିପାଇଁ ଦରକାର ହେଇଚି ସୁସମାଚାରଗୁଡ଼ିକର ଡିକୋଡିଙ୍ଗ୍ । ଏବଂ ସେ-ବାଟରେ ମର୍ମାର୍ଥ ଉଦ୍‌ଘାଟନ କରିବାକୁ ଯାଇ ଦେଖାଯାଇଛି, ଯୀଶୁ କ୍ରୁଶବିଦ୍ଧହେବାର ଷାଠିଏବର୍ଷ ନପୂରୁଣୁଁ ସମଗ୍ର ପାଲେସ୍ଟାଇନ୍ ହୋଇଯାଇଛି ରୋମାନ୍ ଶାସନାଧୀନ, ତା' ଆଗରୁ ସିରିଆ ଥିଲା ଏକ ରୋମାନ୍ ସୁବା ଏବଂ ପାଲେସ୍ଟାଇନ୍, ସିରିଆସ୍ଥିତ ଭାଇସ୍‌ରାୟଙ୍କ ଶିବିର ବିଶେଷ; ତାଙ୍କରି ପ୍ରତିନିଧି ପ୍ରକିଓରେଟର୍ (=ଛୋଟଲାଟ) ଥିଲେ ପାଲେସ୍ଟାଇନ୍‌ର ସାକ୍ଷାତ୍ ପ୍ରଶାସକ । ଇହୁଦୀଙ୍କ ଧର୍ମକର୍ମରେ ହସ୍ତକ୍ଷେପ କରିନାହାନ୍ତି ପ୍ରଥମାବସ୍ଥାରେ; କିନ୍ତୁ ପଛକୁପଛ ଦାମ୍ଭିକ କେତେ ଛୋଟଲାଟ ଇହୁଦୀଙ୍କୁ ଆଉ ଶାନ୍ତିରେ ରହିବାକୁ

ଦେଇନାହାନ୍ତି; ଅତ୍ୟାଚାର କ୍ରମାଗତ ବଢ଼ିଚି ଯେତେବେଳେ ସଂଘବଦ୍ଧଭାବେ ରୋମ୍ ବିରୋଧରେ ବିଦ୍ରୋହ ଘୋଷଣାକରିଛନ୍ତି ଇହୁଦୀ । ସେବର୍ଷ ୬୬ ଖ୍ରୀଷ୍ଟାବ୍ଦ, ଯେତେବେଳେ ରୋମ୍‌ର ବାଦଶା' ନିରୋ; ଖ୍ରୀଷ୍ଟାନଙ୍କ ଉପରେ ତାଙ୍କ ଦୌରାତ୍ମ୍ୟ ଫଳରେ ଦ୍ୱାଦଶପରିବ୍ରାଜକଙ୍କ ଭିତରୁ ପଲ୍ ଆଉ ପିଟର୍ ସେତେବେଳକୁ ନିହତ । ସମ୍ରାଟ୍ କନସ୍ଟାଣ୍ଟିନ୍ ଏ ଦୁହିଁଙ୍କ ସ୍ମୃତିରକ୍ଷାପାଇଁ ଅବଶ୍ୟ ବନାଇଦେଇଚ଼ନ୍ତି କ୍ୟାଥିଡ୍ରାଲ୍ । ପାଲେସ୍ଟାଇନ୍‌ର ଇହୁଦୀଙ୍କ ବିଦ୍ରୋହ ବହୁଦିନ ଲାଗିରହିଚି, ଶାନ୍ତି ଫେରିନାହିଁ । ଇହୁଦୀଙ୍କୁ ବାଗମନାଇ ନ ପାରି ସିରିଆର ଭାଇସ୍‌ରାୟ ନିରୋଙ୍କ ଆଦେଶ ଆଣିବାକୁ ଧାଇଁଯାଇଛନ୍ତି ରୋମ୍, ଏବଂ ସେନାଧ୍ୟକ୍ଷ ଭେସ୍‌ପେନିୟନ୍ ଆସିଚ଼ନ୍ତି ପୁଅ ଟାଇଟସ୍‌କୁ ସାଙ୍ଗରେ ଘେନି ପାଲେସ୍ଟାଇନ୍; ବର୍ଷକ ଭିତରେ ଭାଙ୍ଗିଦେଇଚ଼ନ୍ତି ବିଦ୍ରୋହୀଙ୍କ ମେରୁଦଣ୍ଡ, କିନ୍ତୁ ଦକ୍ଷିଣାଞ୍ଚଳର ରାଜଧାନୀ ଜେରୁସାଲେମ୍ ରହିଚ଼ି ବିଦ୍ରୋହୀଙ୍କ ଦଖଲରେ । ଭେସ୍‌ପେନିୟନ୍ ହୁଏତ ମାଡ଼ି ଯାଇଥାନ୍ତେ ଜେରୁସାଲେମ୍, ମାତ୍ର ନିରୋ ଆତ୍ମହତ୍ୟାକରିଥିବା ଖବରପାଇ (ଜୁନ୍ ୯.୬୮ ଖ୍ରୀଷ୍ଟାବ୍ଦ), ପୁଅ ଉପରେ ବିଦ୍ରୋହଦମନ ଭାର ନ୍ୟସ୍ତକରି ବାହାରିଗଲେ ସିଧା ରୋମ୍, କାହିଁକିନା, ନିରୋ ଥିଲେ ନିଃସନ୍ତାନ । ମିଶରରେ ପହଞ୍ଚି ଜାଣିଲେ, ତିନିଜଣ ସେନାପତି ଦଖଲକରିଚ଼ନ୍ତି ସିଂହାସନ । ମିଶରରେ ହିଁ ରହିଗଲେ । ମାତ୍ର ବର୍ଷକଭିତରେ ତିନିଜଣଯାକ ସେନାପତି ପ୍ରଜାଙ୍କ ହାତରେ ହୋଇଛନ୍ତି ନିହତ, ଏବଂ ସେଥିପାଇଁ, ଦେଶବାସୀ ଭେସ୍‌ପେନିୟନ୍‌ଙ୍କୁହିଁ ବରଣକରିଚ଼ନ୍ତି ସମ୍ରାଟ୍ । ଖ୍ରୀ. ୬୯ରୁ ୭୯, ଦଶବର୍ଷକାଳ ଭେସ୍‌ପେନିୟନ୍ ସିଂହାସନରେ ଅଧିଷ୍ଠିତଥିଲେ ଏକାଦିକ୍ରମେ । ସେତିକିବେଳେ ପୁତ୍ର ଟାଇଟସ୍ ୬୫ ହଜାର ସୈନ୍ୟ ନେଇ ଅବରୋଧକରିଚ଼ି ଜେରୁସାଲେମ୍ । ସହରର ଚତୁର୍ଦ୍ଦିଗ ନିଶ୍ଛିଦ୍ର; ଯିବା-ଆସିବା ସମ୍ପୂର୍ଣ୍ଣ ନିଷିଦ୍ଧ । ଭିତରେ ଚାଲୁଚି ହଣାକଟା । କ୍ଷତି ହୋଇଚି ଉଭୟ ପକ୍ଷର; ମାତ୍ର କ୍ରମାଗତ ୧୩୬ ଦିନଧରି ରୋମାନ୍ ବାହିନୀକୁ ଓଗାଳି ରଖିଛନ୍ତି ଅସ୍ତ୍ରବଳରେ ଇହୁଦୀ । ଶେଷକୁ ହାରିଯାଇଛନ୍ତି ଅବଶ୍ୟ, ପରାଜୟକୁ କିନ୍ତୁ ତ୍ୱରାନ୍ୱିତ କରିଚି ଦୁର୍ଭିକ୍ଷ ଆଉ ମହାମାରୀ । ଇହୁଦୀଙ୍କ ପୁଣ୍ୟଭୂମି ଜେରୁସାଲେମ୍ ହେଇଚି ବିଦେଶୀ ବିଧର୍ମୀ ପାଖରେ ନତଶିର; ପୁରୁଷାନୁକ୍ରମେ ସଞ୍ଚିତ ସୁନାରୁପା, ସୋଲମନ୍‌ଙ୍କ ସ୍ୱର୍ଣ୍ଣମନ୍ଦିରକୁ ନାରଖାରକରି ସ୍ୱଦେଶକୁ ବୋହିନେଇଚ଼ନ୍ତି ରୋମାନ୍ । କିଛି ଯେତେବେଳେ ଅବଶିଷ୍ଟ ରହିନାହିଁ, ନିଆଁ ଲଗାଇଦେଇଚ଼ନ୍ତି ଦେଉଳରେ । ୭୦ ଖ୍ରୀଷ୍ଟାବ୍ଦରେ ଜଗଦ୍‌ବିଖ୍ୟାତ ସେଇ ଦେଉଳ ପରିଣତହେଲା ଭସ୍ମକୁଢ଼ । ଦୁର୍ଭିକ୍ଷ ଆଉ ହଣାକଟା ସତ୍ତ୍ୱେ ଯେତେ ଇହୁଦୀ ପ୍ରାଣଧରି

ବଞ୍ଚିଥିଲେ ସେବାଦାସ ହାଟରେ ତାଙ୍କୁ ବିକିଦେବାକୁ ହେଇଚି ଯୋଗାଡ଼ । ଭାଗ୍ୟବିପର୍ଯ୍ୟୟ ଆହୁରି କେତେଥର ଘଟିଛି, ମାତ୍ର ୭୦ଖ୍ରୀଷ୍ଟାବ୍ଦ ଉତ୍ତାରୁ ଇହୁଦୀଜାତି ଅଣ୍ଟା ସଳଖକରି ଆଉ ଠିଆହୋଇ ପାରିନାହିଁ । ଜାତି ପରିଚୟ ବଞ୍ଚିରହିଚି ସତ, ମାତ୍ର ଇହୁଦୀର ରାଷ୍ଟ୍ର ରହିନାହିଁ କି ଦେବତା । ମାତୃଭୂମି ନାହିଁ, ଇତିହାସ ନାହିଁ, ଛିନ୍ନଛତ୍ରହୋଇ ପୃଥିବୀସାରା ଆଶ୍ରୟଖୋଜିଛନ୍ତି ଉଦ୍‌ବାସ୍ତୁ । ଜାତିର ଏଇ ଜୀବନ-ମରଣ ସଂଗ୍ରାମରେ ଖ୍ରୀଷ୍ଟାନ୍ କିନ୍ତୁ ଇହୁଦୀଙ୍କୁ ସାହାଯ୍ୟ କରିନାହାନ୍ତି ନିଜେ ଇହୁଦୀ ହେବାସତ୍ତ୍ୱେ । ସ୍ୱାଭାବିକଭାବେ, ଇହୁଦୀ ବି ଖ୍ରୀଷ୍ଟାନ୍‌ଙ୍କୁ ଆଉ ପାଖ ପୂରାଇ ଦେଇନାହାନ୍ତି । ଜାତିର ମୂଳସ୍ରୋତରୁ ଅପ୍ରତ୍ୟାଶିତଭାବେ ବିଚ୍ଛିନ୍ନହୋଇ ଏକପ୍ରକାର ଉପଜାତିରେ ପରିଣତହେଲେ ଏଥର ଖ୍ରୀଷ୍ଟାନ୍; ହେଲେସୁଦ୍ଧା ଇହୁଦୀଙ୍କ ଭିତରେ ଥାଇ ସଂଖ୍ୟାଲଘୁ ସମ୍ପ୍ରଦାୟ ଭାବରେ କାଳାତିପାତ କରିଛନ୍ତି ଜେରୁସାଲେମ୍-ସମାଜରେ; ଇହୁଦୀ ବୋଲି ତାଙ୍କୁ ଗଣ୍ୟକରିନାହିଁ ଇହୁଦୀସମାଜ । ଗୋଷ୍ଠୀବିଦ୍ୱେଷ କ୍ରମଶଃ ଏପରି ମାତ୍ରାକୁ ଉଠିଚି ଯେ ଯୀଶୁ-ପ୍ରବର୍ତ୍ତିତ କ୍ଷମାଧର୍ମ ଇଞ୍ଚେହେଲେ ଜାଗାପାଇନାହିଁ ଗୋଡ଼ରଖିବାକୁ । ଯୁଗରୁ ଯୁଗାନ୍ତର ଜଳିଚି ସେଇ ବିଦ୍ୱେଷଶିଖା, ନିର୍ବୃତ୍ତ ହୋଇନାହିଁ ଅଦ୍ୟାବଧି । ଇହୁଦୀ ଆଉ ଖ୍ରୀଷ୍ଟାନ୍ ହେବେନାହିଁ ଜାଣି ସନ୍ଥ ଧରିଚ୍ଛନ୍ତି ଜେଣ୍ଟାଇଲ୍ (=ଅଣଇହୁଦୀ)ଙ୍କୁ; ଜଳସଂସ୍କାର (=ଡୁବନ)ଚାଲିଚି ନିର୍ବିଚାର, ପାପକ୍ଷାଳନର ଉପାୟ ଏଣିକି କନ୍‌ଫେସନ୍, ପରଲୋକ ଜନ୍ମାନ୍ତର ଇତ୍ୟାଦି କୁହାଯାଇଚି ଯୀଶୁଙ୍କ ପୁନର୍ଭବକୁ ଉପଲକ୍ଷ୍ୟକରି । ସେଥିରୁ ବାହାରିଚି ଅବତାରବାଦ । ଯୀଶୁଙ୍କ ସ୍ୱର୍ଗରାଜ୍ୟ ମର୍ତ୍ତ୍ୟମଣ୍ଡଳରେ ଆଉ ଉଙ୍କି ବି ମାରିନାହିଁ । ଖାଲି ଶାସ୍ତ୍ରମାନି ଚଳିଲେ ଯେ ମଣିଷ ଧାର୍ମିକ ହୁଏନା, ଏକଥା ଶାସ୍ତ୍ରରେ ହିଁ ରହିଛି; ବ୍ରାହ୍ମଣଙ୍କ ଆଖିରେ ସିଏ ଶ୍ରୁତିଦାସ; ଅଥଚ ଯୀଶୁ ଚାହିଁଥିଲେ ସକଳ ପ୍ରକାର ଦାସତ୍ୱରୁ ମୁକ୍ତି ! ଗାଧୋଇ ପଡ଼ିଲେ ଯେ କଳଙ୍କ ଧୋଇହୋଇ ଯାଏନା, ଯୀଶୁଭକ୍ତ ସେତିକି ବି ବୁଝିନାହାନ୍ତି !

କିନ୍ତୁ ଚର୍ଚ୍ଚ୍ ଅବା କରନ୍ତା କଣ ? ଯୀଶୁ ତ ସ୍ୱର୍ଗରାଜ୍ୟର ଆଶୁପ୍ରତିଷ୍ଠା ଘୋଷଣାକରିଥିଲେ; ସେଇ ଆଶାରେ କେତେବର୍ଷ ଟକାଇ ବସିଥିଲେ ଶିଷ୍ୟ; ନିଶ୍ଚିତଥିଲେ, ଆକସ୍ମିକ କିଛି ଘଟିଯିବ ହୁଏତ, ଗୁରୁ ମଧ ଫେରିଆସିବେ ଯେକୌଣସି ରୂପରେ । ଦିନ ପରେ ଦିନ ଗଡ଼ିଗଲା; ସ୍ୱର୍ଗ ଓହ୍ଲାଇଲାନାହିଁ, ଯୀଶୁ ସୁଦ୍ଧା ଲେଉଟିଲେନାହିଁ; ଏ ପରିସ୍ଥିତିରେ ଦୃଷ୍ଟି ଯେ କିଞ୍ଚିତ୍ ତିର୍ଯ୍ୟକ୍ ହେବ, ତା ସ୍ୱାଭାବିକ ଓ ସଙ୍ଗତ । ସ୍ୱର୍ଗରାଜ୍ୟର ମର୍ତ୍ତ୍ୟାବତରଣ ଯେହେତୁ ଅନିଶ୍ଚିତ, ଆପାତତଃ ଯୀଶୁଙ୍କୁ ଠାକୁରବନାଇ

ଦେବତା ରୂପରେ ଆରାଧନା କରିବାକୁ ମନଦେଇଚି ଚର୍ଚ୍ଚ । ଈଶ୍ୱର କେବେ ଆସିବେ, କେବେ ବସାଇବେ ସ୍ୱର୍ଗରାଜ୍ୟ, ଠିକ୍‌ଠିକଣା ନାହିଁ; ଏଣେ ଲୋକଙ୍କୁ ଦରକାର ଭକ୍ତିଜଣାଇବେ, ପୂଜାକରିବେ, ସେମିତି ଏକ ମୂର୍ତ୍ତି, ବିଗ୍ରହ, ପ୍ରତିମା । ମାନବହୃଦୟରେ ପୋଷିତ ସଚ୍‌ରାଚ୍‌ର ଏଇ ପୌତ୍ତଳିକତା; କୋଉହେଲେ ଗୁରୁ ତା କବଳରୁ ରକ୍ଷାପାଇନାହାନ୍ତି, ଗୌତମ ବୁଦ୍ଧଙ୍କ ଛଡ଼ା । ଖ୍ରୀଷ୍ଟୀୟ ଚର୍ଚ୍ଚର ବିବର୍ତ୍ତନ ତେଣୁ ବୋଧଗମ୍ୟ ଏକ ଐତିହାସିକ ଘଟଣା; ବିବର୍ତ୍ତନ ତ ସେଇଠି ଅଟକିରହିନାହିଁ, ରୋମାନ୍ ସାମ୍ରାଜ୍ୟର ରାଷ୍ଟ୍ରଧର୍ମରେ ପରିଣତହେବା ଉତ୍ତାରୁ, ଯୀଶୁ ହୋଇଉଠିଚନ୍ତି ସତେଅବା ସ୍ୱର୍ଗୀୟ ସମ୍ରାଟ୍; ରାଜକୀୟ ସେଇ ଦୂରତ୍ୱକୁ ରେଫରମେସନ୍ ଆନ୍ଦୋଳନ କିଞ୍ଚିତ୍ ହ୍ରସ୍ୱକରିଦେଇଚି ସିନା, ଯୀଶୁବାଣୀ କିନ୍ତୁ, ଚର୍ଚ୍ଚର ବିବର୍ତ୍ତନପ୍ରକ୍ରିୟାରେ, ଦେରିଦା କହିଲାପରି, କୋଡ୍-ଡିକୋଡ୍-ଏନ୍‌କୋଡ୍-ଡିକୋଡ୍ ହୋଇଚାଲିଛି ଅବିରତ, ସାହିତ୍ୟରେ ହେଉ, ସିନେମାରେ ହେଉ କି ଚିତ୍ର-ଭାସ୍କର୍ଯ୍ୟରେ ।



## ।। ଦୁଇ ।।

ଆପଣାକୁ 'ଖ୍ରୀଷ୍ଟ'କହିନାହାନ୍ତି କି ଇହୁଦୀଜାତିର ପାରମ୍ପରିକ ଧର୍ମଧାରଣାଠୁଁ ପୃଥକ୍ ଧର୍ମମତ ବି ପ୍ରଚାର କରିନାହାନ୍ତି ଯୀଶୁ । କି ରକମ ଥିଲା ତେବେ ତାଙ୍କ ବିଶ୍ୱବୀକ୍ଷା ବା ତତ୍ତ୍ୱଜଗତ ? ଅର୍ଥାତ୍, କି ଧରଣ ଜୀବନଦର୍ଶନ ପ୍ରେରିତକରିଥିଲା ତାଙ୍କୁ ମର୍ତ୍ତ୍ୟରେ ସ୍ୱର୍ଗରାଜ୍ୟ କଳ୍ପନାକରିବାକୁ ? ଚର୍ଚ୍ଚ ବିଶଦ କିଛି ନ କହିଲେ ସୁଦ୍ଧା ଇହୁଦୀ ବିଶ୍ୱଦୃଷ୍ଟିକୁ ଧାରଣକରୁଚି ଯୋଉ ଶାସ୍ତ୍ର-ସୂତ୍ର, *ବାଇବେଲ୍*ର ଆଦ୍ୟଭାଗ (=*ଓଲ୍ଡ ଟେସ୍ଟାମ୍ୟାଣ୍ଟ*) ଚର୍ଚ୍ଚ ତାକୁ ମାନ୍ୟତା ଦେଇଛି । ସେ ବିଶ୍ୱବୀକ୍ଷା ଉଭୟ ଅଧ୍ୟାତ୍ମ୍ୟ ଉପଲବ୍ଧି ଓ ଇତିହାସର ସମ୍ମିଶ୍ରଣ । ମାତ୍ର ଖ୍ରୀଷ୍ଟଧର୍ମର ମୂଳପ୍ରତ୍ୟୟ 'ଆଦିପାପ' (=ଅରିଜିନାଲ୍ ସିନ୍), ବୌଦ୍ଧଧର୍ମର 'ଦୁଃଖ' ପରି ଏକ ମୌଳିକ ଅବବୋଧ, କାହିଁକିନା, ଏ ପାପ ବ୍ୟକ୍ତିଗତ ନୁହେଁ, ପ୍ରଜନ୍ମରୁ ପ୍ରଜନ୍ମ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ସମଗ୍ର ମାନବପ୍ରଜାତି କାନ୍ଧରେ ବୋଝସଦୃଶ । ସେ କଳ୍ପଲଜି (=ବୀଶ୍ୱବୀକ୍ଷା/ ସୃଷ୍ଟିତତ୍ତ୍ୱ)କୁ *ବାଇବେଲ* କହିଛି 'ଜେନିସିସ୍' । ଜେନିସିସ୍‌କୁ ଉଦ୍ଧୃତକରିବା ଆଗରୁ କହିରଖେଁ ଯେ *ଗସ୍‌ପେଲ୍*ରେ, ଯୀଶୁ ହାରମନ୍ ପାହଡ଼ଚୂଡ଼ାରେ ଯୋଉ ଦୁଇଜଣଙ୍କ ସାଙ୍ଗରେ କଥାବାର୍ତ୍ତା କରିଚନ୍ତି ବୋଲି ପିଟର୍, ଜେମ୍‌ସ ଓ ଜନ୍ କହିଚ୍ନ୍ତି, ତାଙ୍କ ନାଁ ଯଥାକ୍ରମେ ମୌଜେସ୍ ଓ ଏଲିଜା । ଅର୍ଥାତ୍, ପ୍ରେତାତ୍ମା ସାଙ୍ଗରେ ଏଇ ସଂଳାପ; ଅଥଚ୍ ଯୀଶୁ କିମ୍ବା ସାକ୍ଷୀ ଶିଷ୍ୟତ୍ରୟ ଇହଜୀବନରେ ଜଣକୁ ହେଲେ ଦେଖିନାହାନ୍ତି । ଚିହ୍ନିଲେ ତେବେ କେମିତି, ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଲେସୁଦ୍ଧା, ଯୀଶୁଙ୍କ ସହିତ ଯେ ଇହୁଦୀଜାତିର ଅତୀତ ଅଙ୍ଗାଙ୍ଗୀ, ବହନକରୁଚି ସେଇ ସତ୍ୟର ସାକ୍ଷ୍ୟ । *ଓଲ୍ଡ ଟେସ୍ଟାମ୍ୟାଣ୍ଟ*ରୁ ସେଇ ସୃଷ୍ଟିତତ୍ତ୍ୱକୁ ତେଣୁ ଉଦ୍ଧାରକରାଯାଉ ।

ଜେନିସିସ୍ : ଈଶ୍ୱର ସର୍ବାଦୌ ସର୍ଜନାକଲେ ସ୍ୱର୍ଗ ଆଉ ମର୍ତ୍ତ୍ୟ । ମର୍ତ୍ତ୍ୟର ଆକାର ଥିଲାନାହିଁ କି ଥିଲେନାହିଁ ଗଛବୃକ୍ଷ ଜୀବଜନ୍ତୁ; ଥିଲା ଖାଲି ନିରାଳମ୍ବ ଶୂନ୍ୟତା, ଆଉ ତା ଉପରେ ବିଚରଣକରିଚି ଈଶ୍ୱରଙ୍କ ଦିବ୍ୟସୌମ୍ୟ ଆବେଗ । ଈଶ୍ୱର କହିଲେ,

ଫୁଟିଉଠୁ ଆଲୋକ   ନିମିଷକେ ଅପସୃତହେଲା ଅନ୍ଧକାର । ଆଉ ଈଶ୍ୱର ଅବଲୋକନକଲେ ସତତ ପ୍ରକ୍ଷିପ୍ତ ଜ୍ୟୋତିଃ, ଯା ମଙ୍ଗଳର ପୂର୍ବାଭାସ । ଆଉ ଈଶ୍ୱର ଅନ୍ଧାରକୁ ଆଲୁଅରୁ କରିଦେଲେ ବିଛିନ୍ନ; ଆଲୁଅକୁ ନାଁ ଦେଲେ ଦିବସ, ଅନ୍ଧାରକୁ ନିଶୀଥ । ଆଉ ପ୍ରଭାତ ଆଉ ପ୍ରଦୋଷ ମିଳି ରଚନାକଲେ ଆଦ୍ୟକାଳ ।

ଆଉ, ଈଶ୍ୱର କହିଲେ, ଜଳଧି ଦ୍ୱିଧାହୋଇ ପ୍ରକାଶପାଉ ଚକ୍ରବାଳ; ଆଉ ଚକ୍ରବାଳ ଜଳରାଶିକୁ କରୁ ଦ୍ୱିଭାଗ । ତତ୍କ୍ଷଣାତ୍ ପ୍ରକଟହେଲା ଚକ୍ରବାଳ, ଆଉ ଚକ୍ରବାଳ ଊର୍ଦ୍ଧ୍ୱର ଜଳରାଶିକୁ ଅଧୋଭାଗରୁ କରିଦେଲେ ବିଦୀର୍ଣ୍ଣ । ଆଉ ଊର୍ଦ୍ଧ୍ୱଭାଗକୁ ନାଁ ଦେଲେ ଆକାଶ । ପ୍ରଦୋଷ ଓ ପ୍ରଭାତ ପୁଣି ରଚନାକଲେ ଦ୍ୱିତୀୟଦିବସ ।

ଆଉ ଈଶ୍ୱର କହିଲେ, ଆକାଶତଳେ ଯେତେକ ଜଳରାଶି, ସବୁଯାକ ଠୁଳହେଉ ଏକାଠି, ଆଉ ନିର୍ଜଳ ମୃତ୍ତିକା କରୁ ଆତ୍ମପ୍ରକାଶ : ସେ ଆଜ୍ଞା ପାଳିତହେଲା ସତ୍ୱର । ଶୁଷ୍କଭୂତଳକୁ ନାଁ ଦେଲେ ଧରଣୀ; ଜଳପୁଞ୍ଜକୁ ସାଗର । ଆଉ ଈଶ୍ୱର କହିଲେ ଶୁଭମସ୍ତୁ । ଆଉ ଈଶ୍ୱର କହିଲେ, ଧରଣୀ ଧାରଣାକରୁ ତୃଣବୀଥି, ପୁଣି ଶସ୍ୟରାଜି, ଯା ହେବ ପ୍ରଥମ ବୀଜାଧାର; ଆଉ ବୃକ୍ଷଲତା ଜନ୍ମଦେବେ ନାନାଜାତି ଫୁଲଫଳ, ଯା ବୀଜ ରହିଛି ମୃତ୍ତିକାରେ ହିଁ ନିହିତ : ଆଉ ସେ ଆଜ୍ଞା ହେଲା ଅନୁକ୍ଷଣ ସାକାର । ଆଉ ଉଦ୍‌ଗମହେଲା ମୃତ୍ତିକାରୁ ତରୁପଲ୍ଲବ, ଆଉ ଶସ୍ୟ ଉଡ଼ାଇଦେଲେ ବୀଜରାଶି, ଦ୍ରୁମ ଓ ବିଟପୀକୁ ଫଳ କଲା ଅବନତ, ଯା ବୀଜ ଥିଲା ଫଳରେ ହିଁ ନିହିତ; ଆଉ ଈଶ୍ୱର କହିଲେ, ଶୁଭମସ୍ତୁ । ଆଉ ପ୍ରଦୋଷ ଓ ପ୍ରଭାତ କଲେ ତୃତୀୟଦିବସ । ଈଶ୍ୱର ପୁଣି କହିଲେ, ଦିବସ ଆଉ ନିଶୀଥକୁ ପୃଥକ୍‌କରିବାକୁ ଆକାଶରେ ଜଳୁ ଆଲୁଅ; ସେ ଆଲୁଅ ବାଟଦେଖାଉ ପଥିକକୁ, ଋତୁମାନଙ୍କୁ ଚିହ୍ନାଇଦେଉ କୃଷକକୁ ଆଉ ଦିନ ଆଉ ବର୍ଷରେ କରୁ କାଳଗତିକୁ ବିଭାଜିତ : ଆଉ ଦିଗ୍‌ବଳୟରେ ଜଳିଉଠୁ ଆଲୁଅ ଧରଣୀକୁ ଉଜ୍ଜ୍ୱଳକରି : ଯଥାବିହିତ ତା ଘଟିଗଲା । ଆଉ ଈଶ୍ୱର ତିଆରିକଲେ ବୃହଦାକାର ଅନ୍ୟ ଦୁଇଟି ଆଲୁଅ; ଅପେକ୍ଷାକୃତ ବଡ଼ ଆଲୁଅଟି ଶାସନକରେ ଦିବସ, ତଦପେକ୍ଷା କ୍ଷୁଦ୍ର ଜ୍ୟୋତି ଶାସନକରେ ନିଶୀଥ : ତା ସାଙ୍ଗକୁ ପୁଣି ଖଞ୍ଜିଦେଲେ ନକ୍ଷତ୍ର । ଆଉ ସେଗୁଡ଼ିକୁ ଚକ୍ରବାଳରେ ସଜାଇଦେଲେ ଏପରି ଯେ ଆଲୋକ ବିତରଣକରିବା ସାଙ୍ଗକୁ ଦିନ ଓ ରାତିକୁ ମଧ୍ୟ କରୁଥିବେ ଶାସନ ପୃଥିବୀରେ, ଆଉ ଆଲୁଅରୁ ଅଲଗାକରୁଥିବେ ଅନ୍ଧାର : ଆଉ ଈଶ୍ୱର ଦେଖିଲେ ସେ ବିଧାନ ମଙ୍ଗଳମୟ । ଆଉ ସଞ୍ଜରୁ ସକାଳ, ଏଥର ହେଲା, ଚତୁର୍ଥଦିବସ ।

ଈଶ୍ୱର ଆଦେଶକଲେ, ଜଳରାଶି ବୋହିଆଣୁ ଅଗାଧ ଗତିଶୀଳ ଜୀବଜନ୍ତୁ ଆଉ ମାଂସଦାୟୀ ପକ୍ଷୀ, ମାଟି ଉପରେ ଯିଏ ଉଡ଼ିପାରେ, ଆଉ ଯିଏ ଉଡ଼ିପାରେ ନଭୋମଣ୍ଡଳରେ । ଆଉ ସୃଷ୍ଟିକଲେ ଅତିକାୟ ତିମି ଆଉ ଜଙ୍ଗମ ପ୍ରାଣୀସମୂହ ଯା ଜଳ ଗହନରେ କରିପାରେ ନିଜ ପ୍ରଜାତିକୁ ପୁନରୁତ୍ପନ୍ନ, ଆଉ ମାଂସଦାୟୀ ପକ୍ଷୀ, ଯିଏ ନିଜ ପ୍ରଜାତିକୁ ପୁନରୁତ୍ପନ୍ନ କରିବ ଅସୁମାରି: ଆଉ ଈଶ୍ୱର ଲକ୍ଷ୍ୟକଲେ ଏ ବ୍ୟବସ୍ଥା ଉତ୍ତମ; ଆଉ ଈଶ୍ୱର ସେମାନଙ୍କୁ ଆଶୀର୍ବାଦକରି କହିଲେ, ଫଳପ୍ରସୂ ହୁଅ, ଉତ୍ତରୋତ୍ତର ଅଭିବୃଦ୍ଧିହେଉ ତୁମର, ଆଉ ଆକାଶତଳେ ଜଳରାଶିକୁ କର ପରିପୂର୍ଣ୍ଣ, ଆଉ ପକ୍ଷୀମାନେ ମାଟିଉପରେ କରନ୍ତୁ ବଂଶବୃଦ୍ଧି । ପ୍ରଦୋଷ ଓ ପ୍ରଭାତ ସେତେବେଳେ ରଚନାକଲେ ପଞ୍ଚମଦିବସ ।

ଈଶ୍ୱର ପୁଣି କହିଲେ, ମାଟିଉପରେ ଆତଯାତ ଯେତେ ଜଙ୍ଗମପ୍ରାଣୀ, ସମସ୍ତେ କରନ୍ତୁ ଯଥେଚ୍ଛା ବଂଶବୃଦ୍ଧି; ଗବାଦି ପଶୁ, ସରୀସୃପ, ଆଉ ଜନ୍ତୁଜାନୁଆର ନିଜ ନିଜ ସ୍ୱରୂପରେ ସକଳ : ସେ ଆଜ୍ଞା ପାଳିତହେଲା ସତ୍ୱର, ଆଉ ପୃଥିବୀରେ ଜୀବଜନ୍ତୁଙ୍କୁ ଆକାରପ୍ରକାର ମଧ ପ୍ରଦାନକଲେ ଈଶ୍ୱର; ଗବାଦି ପଶୁଙ୍କୁ ନିଜ ଆକାରପ୍ରକାର, ସରୀସୃପଙ୍କୁ ନିଜ ଆକାରପ୍ରକାର: ଆଉ ଈଶ୍ୱର ଦେଖିଲେ ସେ ଦୃଶ୍ୟ ମନୋରମ ।

ଆଉ ଈଶ୍ୱର କହିଲେ, ମଣିଷଙ୍କୁ କିନ୍ତୁ କରିବା ଆମ ନିଜ କଳ୍ପରେ ତିଆରି, ସାଦୃଶ୍ୟ ରହିବ ତା'ହେଲେ ଆମ ସାଙ୍ଗରେ; ଆଉ ସମୁଦ୍ରର ମାଛ, ଆକାଶର ଚଢ଼େଇ, ଭୂପୃଷ୍ଠର ଗାଈଗୋରୁ, ଘୋଡ଼ା, ଗଧ, ସରୀସୃପ, ଖଗମୃଗ ଓ ମେଦିନୀ ହେଉ ମଣିଷର ଆଜ୍ଞାଧୀନ । ଈଶ୍ୱର ତେଣୁ ମଣିଷକୁ ପ୍ରତିମା କଲେ ନିଜ ଛାଞ୍ଚରେ, ଈଶ୍ୱରଙ୍କ ପ୍ରତିଭୂ କଲେ ତାକୁ; ଆଉ ମଣିଷକୁ କଲେ ପୁରୁଷ ଓ ନାରୀ । ଆଉ ଆଶୀର୍ବାଦକରି କହିଲେ, ଫଳପ୍ରସୂ ହୁଅ, ବଂଶବୃଦ୍ଧି କର, ପୃଥିବୀକୁ କରିଦିଅ ଜନପୂର୍ଣ୍ଣ, ପୃଥିବୀକୁ କର ନିଜ କରଗତ : ସମୁଦ୍ରର ମାଛକୁ କର ଆୟତ୍ତ, ଆକାଶର ପକ୍ଷୀକୁ କର ଦମନ, ଦମନକର ଧରାପୃଷ୍ଠରେ ଯେତେଯାହା ଜଙ୍ଗମ ।

ଆଉ ଈଶ୍ୱର କହିଲେ, ନିରୀକ୍ଷଣ କର, ତମକୁ ଦେଇଛି ମୁଁ ନାନାବିଧ ବୀଜ, ଯିଏ ଧାରଣକରିବେ ଭକ୍ଷ୍ୟ ଯେତେ ଫଳମୂଳ ପୃଥିବୀଉପରେ, ଆଉ ଦେଇଛି ଗଛଲତା ଯା ଫଳଭିତରେ ରହିଛି ତା ନିଜ ବୀଜ; ସେ ଫଳହିଁ ହେବ ତୁମ ଖାଦ୍ୟ । ଆଉ ଜୀବଜନ୍ତୁ, ପକ୍ଷୀ କିମ୍ବା ସରୀସୃପ ଭକ୍ଷଣକରିବେ ହରିତ୍ ଉଦ୍ଭିଦ କେବଳ : ଏବଂ ତାହାହିଁ ଘଟିଲା । ଈଶ୍ୱର ଏଥର ଚାହିଁଦେଖିଲେ ଆପଣା ତିଆଣ, ଆଉ ଦେଖ ହୋ, ସବୁଗୁଡ଼ାକ ଦିଶୁଛି ଭାରି ମନୋରମ ଆଉ ସଂଧ୍ୟା ଓ ସକାଳ ସାରିଦେଲେ ଷଷ୍ଠଦିବସ ।

ଏମିତି ନିର୍ମିତହେଲା ସ୍ୱର୍ଗ ଆଉ ମର୍ତ୍ତ୍ୟ, ଆଉ ପରିବ୍ୟାପ୍ତ ସ୍ଥାବର-ଜଙ୍ଗମ । ଆଉ ସାତଦିନ ସରିକି ସମାପ୍ତ କରିଦେଲେ ନିଜ ସର୍ଜନା-ଉଦ୍ୟୋଗ; ଆଉ ସପ୍ତମ ଦିବସରେ ନେଲେ ପରିଶ୍ରମରୁ ଅବସର । ଆଉ ସେଇ ସପ୍ତମ ଦିବସକୁ ଆଶୀର୍ବାଦରେ ଧନ୍ୟକରି କରିଦେଲେ ପବିତ୍ର : କାହିଁକିନା, ଈଶ୍ୱର ନେଇଛନ୍ତି ସେଦିନ କର୍ମଅନ୍ତେ ବିଶ୍ରାମ ।

ଏହିଭଳି ଘଟିଲା ସ୍ୱର୍ଗ ଆଉ ମର୍ତ୍ତ୍ୟର ଉଦ୍‌ଭବ, ଆଉ ଉତ୍ପନ୍ନ ହୋଇଛି ପୃଥିବୀ ବକ୍ଷରେ ଅଭୂତପୂର୍ବ ଯେତେ ଉଦ୍‌ଭିଦ, ଆଉ କୃଷିକ୍ଷେତ୍ରରେ ଶସ୍ୟ ଯା'ର ଅଙ୍କୁରୋଦ୍‌ଗମ ହୋଇନାହିଁ ତଥାପି, ଯେହେତୁ ବୃଷ୍ଟିପାତ ଆଜ୍ଞାକରିନାହାନ୍ତି ଈଶ୍ୱର, ଆଉ ଜନମାନବ ବି ସୃଷ୍ଟି ହୋଇନାହାନ୍ତି ଯିଏ କର୍ଷଣକରିବେ ମୃତ୍ତିକା । ପରମେଶ୍ୱର ତଳୁ ଟିପେ ଧୂଳି ତୋଳିନେଇ ଗଢ଼ିଦେଲେ ତେଣୁ ମାନବ, ଆଉ ତା ନାସାଗହ୍ୱରରେ ଫୁଙ୍କିଦେଲେ ପ୍ରାଣବାୟୁ, ଆଉ ମାଟିର ମୂର୍ତ୍ତି ଲଭିଲା ତତ୍‌କ୍ଷଣାତ୍ ଜୀବନ୍ୟାସ ।

ଆଉ ପରମପିତା ପୂର୍ବଦିଗକୁ ରୋପଣକଲେ ଇଡେନ୍‌ଠି ଏକ ଉଦ୍ୟାନ; ଆଉ ସଦ୍ୟ ଗଢ଼ିଥିବା ପୁରୁଷଟିକୁ ନେଇ ସ୍ଥାପନକଲେ ସେଇଠି । ଆଉ ମାଟିରୁ ଭିଆଣକଲେ ଏମିତି ଗଛବୃକ୍ଷ, ଯା ନୟନାଭିରାମ ଆଉ ଫଳ ଯାର ସୁସ୍ୱାଦୁ; ଆଉ ଉଦ୍ୟାନ ମଝିରେ ରଖିଲେ କେବଳ ଜୀବନ-ବୃକ୍ଷକୁ ଆଉ ତା' କଡ଼କୁ ରହିଲା ଏକ ଜ୍ଞାନ-ବୃକ୍ଷ । ଆଉ ଇଡେନ୍ ଭିତରୁ ନଦୀଟିଏ ବି ବହିଗଲା ଉଦ୍ୟାନକୁ ପରିସିକ୍ତକରି; ଆଉ ଉଦ୍ୟାନପାଖରୁ ସେ ନଦୀ ହେଲା ପୁଣି ଚାରିଧାରା । ପ୍ରଥମ ଧାରାର ନାଁ ପିସନ୍ ଯା ଆଲିଙ୍ଗନ କରିଛି ସ୍ୱର୍ଣ୍ଣଗର୍ଭା ଭୂଖଣ୍ଡ ହବିଲାକୁ; ଆଉ ସେ ଜାଗାର ସୁନା ନିଷ୍କଳୁଷ : ରତ୍ନ ଓ ମଣି ମଧ୍ୟ ମିଳିବ ମାଟିତଳୁ । ଆଉ ଦ୍ୱିତୀୟ ଧାରାର ନାଁ ଗିହୋନ୍ : ମେଖଳା ପରି ଘେରିଛି ଇଥିଓପିଆ ଭୂମିଖଣ୍ଡକୁ । ଆଉ ତୃତୀୟ ଧାରାର ନାଁ ହିଦ୍ଦେକେଲ୍ : ବହିଯାଇଛି ଆସିରିଆର ପୂର୍ବଦିଗକୁ । ଚତୁର୍ଥ ଧାରାଟି କିନ୍ତୁ ଇଉଫ୍ରେଟିଜ୍ । ଆଉ ପୁରୁଷଟିକୁ ଈଶ୍ୱର ଏବେ ଠାଇଁଦେଇଛନ୍ତି ଇଡେନ୍ ଉଦ୍ୟାନରେହିଁ; ବଗିଚାଟିର ଯତ୍ନ ନେବ । ଆଉ ଈଶ୍ୱର ତାକୁ ଆଜ୍ଞାକରିଛନ୍ତି, ସବୁଯାକ ଗଛରୁ ଫଳ ଖାଇପାର: ଶୁଭ-ଅଶୁଭ ଜ୍ଞାନବୃକ୍ଷର ଫଳକୁ କେବେ ମନକରିବନାହିଁ : କାହିଁକିନା, ଯୋଉଦିନ ସେ ଫଳ ପାଟିରେ ଦେବ, ସେଦିନ ନିଶ୍ଚିତ ମୃତ୍ୟୁ ।

ଆଉ ଈଶ୍ୱର ପୁଣି କହିଲେ, ପୁରୁଷଲୋକ ଏକାରହିବା ଠିକ୍‌ନୁହେଁ; ସାଙ୍ଗୋପାଙ୍ଗ ଦରକାର । ବିଲରେ ଖଟିବାଭଳି ପଶୁ ତେଣୁ ଗଢ଼ିଦେଲେ ମାଟିଦେହରୁ, ଆଉ

ଗଢ଼ିଦେଲେ ଆକାଶର ନାନାଜାତି ଚଢ଼େଇ; ଆଉ ଆଦାମ୍ ଆଗରେ ରଖିଦେଇ ଲକ୍ଷ୍ୟକଲେ କି ନାଁରେ ଚିହ୍ନୁଚି ସେମାନଙ୍କୁ ଆଉ ଆଦାମ୍ ସେହି ଜଙ୍ଗମ ପ୍ରାଣୀଙ୍କୁ ଯୋଉ ନାଁରେ ଡାକିଚି, ତାହାହିଁ ହୋଇଛି ତାଙ୍କ ପରିଚ଼ୟ । ଆଉ ଆଦାମ୍ ଗବାଦି ପଶୁଙ୍କୁ ନାଁ ଦେଇଚ଼ି ଯେମିତି, ସେମିତି ଆକାଶର ଚଢ଼େଇଙ୍କୁ ଆଉ ବଣର ଶ୍ୱାପଦଙ୍କୁ; ମାତ୍ର ଆଦାମ୍ ସାଙ୍ଗରେ ସହବାସ କରିବାକୁ ମିଳିନାହିଁ କେହି । ଆଉ ଗଭୀରନିଦ୍ରା ଈଶ୍ୱର ଓହ୍ଲେଇଆଣିଚନ୍ତି ଆଦାମ୍ ଉପରକୁ ଆଉ ନିଦଘୋରରେ ବୁଡ଼ିଯାଇଛି ତା ଚେତା; ଆଉ ଈଶ୍ୱର ତା ପଞ୍ଜରାହାଡ଼ରୁ ଖଣ୍ଡେ କାଢ଼ିଆଣି ବୁଜିଦେଇଛନ୍ତି ଫାଙ୍କ, ଆଉ ଯୋଉ ହାଡ଼କୁ କାଢ଼ିଥିଲେ ପୁରୁଷ ଛାତିରୁ, ଈଶ୍ୱର ସେଥିରେ ହିଁ ଗଢ଼ିଛନ୍ତି ନାରୀ, ଆଉ ତାକୁ ଆଣି ଉଭାକରିଛନ୍ତି ପୁରୁଷ ଆଗରେ । ଆଉ ଆଦାମ୍ କହିଛି, ଏ ତ ମୋ ହାଡ଼ର ହାଡ଼, ମେଦର ମେଦ : ତା ନାଁ ହେଉ ତେଣୁ ମାନବୀ, କାହିଁକିନା, ମାନବ ଦେହରୁ ତାର ଉତ୍ପତ୍ତି । ମାନବ ଏଣିକି ବାପା-ମା'ଙ୍କୁ ଛାଡ଼ିବ ଆଉ ଭାର୍ଯ୍ୟାକୁ କରିବ ଦି'ଫାଳ : ଆଉ ଉଭୟ ହେବେ ଅଭିନ୍ନ । ଆଉ ଦୁହେଁଯାକ ଥିଲେ ନଗ୍ନ ନିର୍ବସନ, ମାନବ ଆଉ ମାନବୀ, ଏବଂ ଲଜ୍ଜା ଥିଲା ସେମାନଙ୍କୁ ଅଜ୍ଞାତ ।

ଏବେ, ଈଶ୍ୱର ଗଢ଼ିଥିଲେ ଯେତେ ଜୀବଜନ୍ତୁ ତନ୍ମଧ୍ୟରେ ସାପ ହିଁ ଥିଲା ଅଧିକ ଧୂର୍ତ୍ତ । ଆଉ ସିଏ ଯାଇ ମାନବୀକୁ କହିଲା, ହେଇ, ଭଗବାନ୍ କୁଆଡ଼େ ତୁମକୁ କହିଛନ୍ତି ସବୁଗଛରୁ ଫଳ ଖାଇବନାହିଁ ? ଆଉ ମାନବୀ କହିଲା, ସବୁଗଛରୁ ଫଳତୋଳି ଖାଇପାରୁଁ: ଖାଲି ବଗିଚାମଝିରେ ଅଛି ଯୋଉ ଗଛ, ଭଗବାନ୍ କହିଛନ୍ତି ତା ଫଳ ଆମେ ଖାଇବୁନାହିଁ କି ଛୁଇଁବୁନାହିଁ, ଅନ୍ୟଥା ମୃତ୍ୟୁ ଯେ ନିଶ୍ଚିତ । ଆଉ ସାପ କହିଲା, ଏ ମରିଯିବା କଥାଟା ତାହାମିଛ : କାହିଁକିନା, ଭଗବାନ୍ ଜାଣିଛନ୍ତି, ଯୋଉଦିନ ସେ ଫଳ ତମେ ଚାଖିବ, ଫିଟିଯିବ ତମ ଦିବ୍ୟଦୃଷ୍ଟି, ଆଉ ତମେ ବି ହୋଇଯିବ ସତେଅବା ଦେବତା, ତମେ ବି ଜାଣିପାରିବ ମଙ୍ଗଳ-ଅମଙ୍ଗଳ । ଆଉ ରମଣୀ ଯେତେବେଳେ ଦେଖିଲା ଗଛଟା ଖାଦ୍ୟ ବିଚାରରେ ଉପଯୁକ୍ତ, ଦେଖିବାକୁ ବି ସୁନ୍ଦର, ଆଉ ତା ଫଳକୁ ବାଞ୍ଛାକରିବା ଅର୍ଥ ଜ୍ଞାନଲାଭକରିବାକୁ ଇଚ୍ଛା, ଡାଳରୁ ଫଳଟିଏ ତୋଳିନେଇ ଚାଖି ଦେଖିଚି, ଆଉ ଭାଗଦେଇଛି ବରକୁ; ଆଉ ଭକ୍ଷଣକରିଛି ପୁରୁଷ । ଆଉ ଦୁହିଁଙ୍କ ଦୃଷ୍ଟି ଖୋଲିଯାଇଛି ଅକସ୍ମାତ୍; ଆଉ ଉଭୟ ଉପଲବ୍ଧି କରିଛନ୍ତି ନିରାଭରଣ ନଗ୍ନତା; ଆଉ ଡିମିରିଗଛରୁ ପତ୍ର ତୋଳିଆଣି ଗୁନ୍ଥିଛନ୍ତି ଆବରଣ । ଆଉ ଶୁଣିବାକୁ ପାଇଛନ୍ତି ସକାଳର ସ୍ନିଗ୍ଧଶୀତରେ ଉଦ୍ୟାନରେ ବିଚରଣରତ ଈଶ୍ୱରଙ୍କ କଣ୍ଠସ୍ୱର : ଆଉ ଆଦାମ୍

ନିଜ ସଙ୍ଗିନୀ ସହିତ ତରୁଛାୟା ଗହନରେ କରିଛି ଆତ୍ମଗୋପନ ଈଶ୍ୱରଙ୍କ ଦୃଷ୍ଟି ଏଡ଼ାଇବାକୁ ।

ଆଉ ଈଶ୍ୱର ଡାକପାରିଚନ୍ତି, କୁଆଡ଼େ ଲୁଚିଛ ତମେ, ଆଦାମ୍ ? ଆଉ ସିଏ କହିଚି, ଆପଣଙ୍କ ପାଟି ଶୁଣିଲି ବଗିଚାରେ, ଆଉ ମୋ ମନରେ ଲଜ୍ଜା ପଶିଗଲା, କାହିଁକିନା, ଦେହରେ ଥିଲାନାହିଁ ଆବରଣ; ସେଥିପାଇଁ ତ ଲୁଚିପଡ଼ିଥିଲି । ଆଉ ଈଶ୍ୱର ପଚାରିଲେ, କିଏ କହିଲା ତୁମେ ଉଲଗ୍ନ ? ତମେ କଣ ଭକ୍ଷଣକରିଛ ସେଇ ନିଷିଦ୍ଧବୃକ୍ଷର ଫଳ ? ଆଉ ପୁରୁଷଟି କହିଲା, ଯୋଉ ମାନବୀକୁ ସଙ୍ଗିନୀ ହେବାକୁ ଦେଇଥିଲେ ମୋତେ, ସେହି ଆଣିଦେଇଛି ଫଳ, ମୁଁ ଅବଶ୍ୟ ଖାଇଛି । ଈଶ୍ୱର ସ୍ତ୍ରୀଲୋକଟିକୁ ସେଠୁ ପଚାରିଲେ, ଏ କଣ କରିଛ ତମେ ? ନାରୀ କହିଲା, ସାପ ତ ମୋତେ ପ୍ରତାରିତ କରିଛି, ନ ହେଲେ କଣ ମୁଁ ଖାଉଥିଲି ! ଆଉ ଈଶ୍ୱର ସାପକୁ ଡାକି କହିଲେ, ଏଇ ଅପକର୍ମ ସକାଶେ ମାଟିଉପରେ ଚରୁଛନ୍ତି ଯେତେ ପଶୁପକ୍ଷୀ, ସମସ୍ତଙ୍କୁ ଛାଡ଼ି ତୋତେହିଁ ଏକେଲା ଅଭିଶାପ ଦେଲି, ଯେତେଦିନ ବଞ୍ଚିଥିବୁ ପେଟରେ ଘୋଷାରିହୋଇ ତୁ ଚାଲିବୁ ଆଉ ତୋ ଆହାର ହେବ ଏକମାତ୍ର ଧୂଳି । ଆଉ ଏ ସ୍ତ୍ରୀଲୋକ ଓ ତୋ ମଝିରେ ମୁଁ ଠିଆକରିବି ବୈରୀଭାବ, ଠିଆକରିବି ତୋ ମଞ୍ଜି ଆଉ ତା ମଞ୍ଜି ମଝିରେ; ଆଉ ତୋ ମୁଣ୍ଡକୁ ଛେଚିବ ସିଏ ଓ ତା ପାଦକୁ କରିବୁ ତୁ ଦଂଶନ । ଆଉ ସ୍ତ୍ରୀଲୋକଟିକୁ ଡାକି କହିଲେ, ତୁମ ଦୁଃଖ ଓ ପ୍ରସବବେଦନାକୁ ବଢ଼ାଇଦେବି ବହୁଗୁଣ; ଦୁଃଖ ଭୋଗକରିବ ସନ୍ତାନ ଆଣିବାକୁ ପୃଥିବୀକୁ; ଆଉ କାମନାକରିବ ତଥାପି ନିଜ ସ୍ୱାମୀକୁ, ଆଉ ସିଏ କରିବ ତୁମ ଉପରେ ପ୍ରଭୁତ୍ୱ ।

ଆଉ ଆଦାମ୍‌କୁ ଡାକି କହିଲେ, ଯେହେତୁ ନିଜ ସ୍ତ୍ରୀ କଥାକୁ ଅମଳଦେଇ ମୋ ବାରଣ ସତ୍ତ୍ୱେ ନିଷିଦ୍ଧବୃକ୍ଷର ଫଳ ତୁମେ ଖାଇଛ, ଆଉ ତୁମ କାରଣରୁ ମାଟି ହୋଇଛି ଅଭିଶପ୍ତ; ମାଟିରୁ ଫଳନ ଭୋଗକରିବ ଆଜୀବନ କଠିନ ପ୍ରତିବନ୍ଧକ ସମ୍ମୁଖୀନହୋଇ, କଣ୍ଟାଝଟାରେ ଲହୁଲୁହାଣ ହେଲେଯାଇ ଫସଲ ତୋଳିବ ଖଳାକୁ । ମୁଣ୍ଡଝାଳ ତୁଣ୍ଡରେ ନମାରିଲେ ଭାତଗୁଣ୍ଡା ଉଠିବନାହିଁ ପାଟିକୁ; ଆଉ ଏଇଭଳି ଚାଲୁଥିବ ତୁମେ ଫେର୍ ମାଟିକୁ ଫେରିବାଯାଏଁ; କାହିଁକିନା, ମାଟିରୁହିଁ ତମେ ଉଠିଚ, ମାଟି ଛଡ଼ା ତୁମେ କିଛିନୁହେଁ, ସେଇ ମାଟିକୁହିଁ ତମେ ଫେରିଯିବ । ଆଉ ଆଦାମ୍, ଭାର୍ଯ୍ୟାଙ୍କ ନାଁ ରଖିଲା ଇଭ୍, କାହିଁକିନା, ସେହି ତ ଜୀବଜଗତର ଜନନୀ । ଈଶ୍ୱର

ତା' ପରେ ଚର୍ମରେ ତିଆରିକଲେ ପରିଛଦ ଆଉ ସେ ପରିଛଦରେ ଆବୃତ କରିଦେଲେ ଆଦାମ୍ ଆଉ ଇଭ୍‌ଙ୍କ ନଗ୍ନତା ।

ଆଉ ଈଶ୍ୱର କହିଲେ, ଆରେ, ମଣିଷ ତ ହୋଇଯାଇଛି ଆମଭଳି ଅବିକଳ, ବୁଝିପାରୁଛି ଶୁଭ-ଅଶୁଭ : ଆଉ ଏଇ ଜ୍ଞାନ ଲାଭକରି ଜୀବନବୃକ୍ଷର ଫଳକୁ ଯଦି ବାଞ୍ଛାକରେ, ଖାଇଲେ ତ ହୋଇଯିବ ଅଜର-ଅମର: ଇଡେନ୍ ଉଦ୍ୟାନରୁ କାଢ଼ିଆଣି ପଠାଇଦେଲେ ମାନବଙ୍କୁ ସେଇ ଭୂମିକୁ ଯୋଉଠି ତା ଆଦ୍ୟ ଅଭ୍ୟୁଦୟ, ସେଠି କରିବ ସିଏ ଭୂମିକର୍ଷଣ । ମାନବଙ୍କୁ ନିର୍ବାସିତକରି ଉଦ୍ୟାନର ପୂର୍ବଦିଗକୁ ଯୋଉ ପ୍ରବେଶଦ୍ୱାର, ସେଠି ନିଯୁକ୍ତ କରିଦେଲେ ସ୍ୱର୍ଗଦୂତ ପ୍ରହରୀ; ଦେଖିବାକୁ ଦୁଗ୍ଧପୋଷ୍ୟ ଶିଶୁ, କିନ୍ତୁ ସିଏ ଗଗନବିହାରୀ; ଆଉ ରୋପଣ କରିଦେଲେ ଜ୍ୱଳନ୍ତ ଏକ କୃପାଣ ଯା ପ୍ରକୃତରେ ଘୂର୍ଣ୍ଣାୟମାନ ବିଧ୍ୱଂସୀ ଏକ ଚକ୍ର; ଜୀବନବୃକ୍ଷକୁ ଯିବାବାଟ ମଣିଷପାଇଁ ହୋଇଗଲା ଚିରଦିନ ଅଗମ୍ୟ ।

ଆଉ ଆଦାମ୍ ମୈଥୁନରେ ହୃଦୟଙ୍ଗମ କଲା ଇଭ୍‌କୁ; ଆଉ ଇଭ୍ ହେଲା ଗର୍ଭବତୀ, ଆଉ ପ୍ରସବକଲା କାଇନ୍‌କୁ, ଆଉ ଘୋଷଣାକଲା, ମହାପ୍ରଭୁ ମୋତେ ଦେଇଛନ୍ତି ଆଉଏକ ମାନବ । ଇଭ୍ ଫେର୍ ପ୍ରସବକରିଚି କାଇନ୍-ର ଭାଇ ଆବେଲ୍‌କୁ, ଆଉ ଆବେଲ୍ ହେଇଚି ମେଷପାଳକ, କିନ୍ତୁ କାଇନ୍ କରିଛି ଭୂମିକର୍ଷଣ । ଆଉ ଦିନ ପରେ ଦିନ ଗଡ଼ିଗଲା, କାଇନ୍ ଘରକୁ ଆଣିଲା ଫସଲ ଆଉ ସେଇ ଶସ୍ୟରେ ଅର୍ଘ୍ୟ ନିବେଦନ କରିଚି ମହାପ୍ରଭୁଙ୍କୁ । ଆଉ ଆବେଲ୍ ବି ନିବେଦନ କରିଚି ପ୍ରଥମ ମେଷଶାବକର ମାଂସ ଆଉ ଚର୍ବି । ଆଉ ପ୍ରଭୁ ତା ପ୍ରତି, ନିବେଦିତ ଅର୍ଘ୍ୟପାଇ, ହେଇଚନ୍ତି ପ୍ରସନ୍ନ : ମାତ୍ର କାଇନ୍ କି ତା ନୈବେଦ୍ୟ ପ୍ରୀତକରିନାହିଁ ପରମେଶ୍ୱରଙ୍କୁ । ଆଉ ମନକ୍ଷୁଣ୍ଣ କାଇନ୍‌କୁ ଅଧୋବଦନ ଦେଖି ପଚାରିଛନ୍ତି, କାହିଁକି ତୋ ମନ ବିରସ ଆଉ କଣପାଇଁ ଅବା ଝାଉଁଳିପଡ଼ିଛି ତୋ ମୁଖମଣ୍ଡଳ ? ତୁ ବି ଯଦି ଭଲକାମ କରୁ, ତୋତେ କଣ ମୁଁ ଗ୍ରାହ୍ୟକରିବିନାହିଁ ? ଆଉ ଯଦି ନ କରୁ, ଜାଣିବୁ ପାପ ବସିଛି ଦୁଆରମୁହଁରେ, ତୋତେହିଁ ଚାହିଁବ ସେ । ମାତ୍ର ତୁ ତାକୁ ଦମନକରିବୁ । ସାନଭାଇ ଆବେଲ୍ ସାଙ୍ଗରେ କାଇନ୍ ପରାମର୍ଶ କରିଚି, ଆଉ ଦିନାକେତେ ବିତିଯାଇଚି ବି ଅବଲୀଳାରେ, ଆଉ ହଠାତ୍ ଦିନେ ଉଠିଯାଇ ଆବେଲ୍‌କୁ ହତ୍ୟାକରିଛି କାଇନ୍ ବିଲମଝିରେ ।

ଆଉ ମହାପ୍ରଭୁ ପଚାରିଛନ୍ତି କାଇନ୍‌କୁ, ଆବେଲ୍ ଗଲା କୁଆଡ଼େ ? ଆଉ ସିଏ କହିଲା, ଜାଣିନାହିଁ : ମୁଁ କଣ ମୋ ସାନଭାଇର ଜଗୁଆଳି ? ଆଉ ଈଶ୍ୱର କହିଲେ, କଣ କରିଛୁ ତୁ ? ତୋ ଭାଇର ଶୋଣିତ ହୁରିଛାଡ଼ିଛି ମୋଠେ ଭୂଇଁଉପରୁ । ଆଉ ସେଥିପାଇଁ ଅଭିଶପ୍ତହୋଇ ଭୂମିବକ୍ଷରୁ ତୁ ହେବୁ ନିର୍ବାସିତ, ଯୋଉ ଭୂମି ତୋ ହାତରୁ ଗ୍ରହଣକରିଛି ନିଜ ମୁଖଗହ୍ୱରରେ ତୋ ଭାଇର ରକ୍ତ । ଯେତେ ମନଦେଇ ଚାଷକର ପଛେ, ଭୂଇଁ ନିଜ ବଳ ତୋତେ ଦେବନାହିଁ ଆଉ; ଆଉ ଭୂଇଁଉପରେ ତୁ ହେବୁ କେବଳ ପଳାତକ ଆଉ ଯାଯାବର । ଆଉ କାଇନ୍ ସେତେବେଳେ ନେହୁରା ହେଇଚି, ଏ ଶାସ୍ତି ମୋ ସହ୍ୟଶକ୍ତିରୁ ବଳି ଅତ୍ୟଧିକ । ଦେଖନ୍ତୁ, ପୃଥିବୀବକ୍ଷରୁ ମୋତେ ନିର୍ବାସିତ କରିଛନ୍ତି ଆପଣ; ଆଉ ଆପଣଙ୍କ ଚକ୍ଷୁର ଅନ୍ତରାଳରେ ରହିବି ଏଣିକି; ଆଉ ଦୁନିଆରେ ମୁଁ ନିରୁଦ୍ଦେଶ ଘୂରିମରିବି ପଳାତକ ଯାଯାବର ଭଳି; ଆଉ ସେ ଦଣ୍ଡ ବି ଦିନେ ସରିଯିବ ଆଉ ଯିଏ ପାରିବ ସିଏ ହାଣିବ କି କାଟିବ ମୋତେ । ସେକଥା ଶୁଣି ପରମେଶ୍ୱର କହିଲେ, କାଇନ୍‌କୁ ଯିଏ ମାରିବ, ତା ଉପରେ ନିଆଯିବ ସାତଗୁଣ ପ୍ରତିଶୋଧ । ଆଉ ଈଶ୍ୱର କାଇନ୍ ଦେହରେ କାଟିଦେଲେ ଚିହ୍ନ, ଯା ଦେଖି କେହି ହତ୍ୟା କରିବେ ନାହିଁ ତାକୁ ।

ଆଉ କାଇନ୍ ଈଶ୍ୱରଙ୍କ ଦୃଷ୍ଟିପଥରୁ ଅପସରିଯାଇ ପଳାଇଯାଇଚି ଇଡେନ୍ ପୂର୍ବଦିଗରେ ନୋଡ୍ ନାମକ ଜାଗାକୁ । ଆଉ ଯୁକ୍ତ ହୋଇଚି ଭାର୍ଯ୍ୟା ସାଙ୍ଗରେ ସଙ୍ଗମରେ; ଆଉ ଗର୍ଭସଞ୍ଚାର ହୋଇ ଜନ୍ମିଚି ଇନକ୍ : ଆଉ କାଇନ୍ ବସାଇଚି ସେଠି ଏକ ନଗର ଆଉ ପୁଅ ନାଁରେ ନଗରର ନାଁ ରଖିଚି ଇନକ୍ । ଆଉ ଇନକ୍‌ଠୁଁ ଜନ୍ମିଚି ଇରାଦ୍; ଆଉ ଇରାଦ୍‌ର ପୁଅ ନାଁ ମେହୁଯାଏଲ୍ : ଆଉ ମେହୁଯାଏଲ୍ ଜନ୍ମଦେଇଚି ମେଥୁସାଏଲ୍‌କୁ : ଆଉ ମେଥୁସାଏଲ୍‌ର ପୁଅ ନାଁ ଲାମେଚ୍ । ଆଉ ଲାମେଚ୍ ନେଇଚି ଦୁଇଟା ମାଇପ; ଜଣେ ଆଡାଃ, ଆରଜଣକ ଜିଲ୍ଲାଃ । ଆଉ ଆଡାଃ ପ୍ରସବକରିଚି ଜାବାଲ୍‌କୁ : ଜାବାଲ୍ ଏକ ଲୋକଗୋଷ୍ଠୀର ଜନକ ଯିଏ ତମ୍ବୁଭିତରେହିଁ ବାନ୍ଧନ୍ତି ଘରସଂସାର, କାହିଁକିନା, ଗୋଷ୍ଠୀର ଜନକ ଥିଲା ପଶୁପାଳକ । ଆଉ ଜାବାଲ୍‌ର ଆଉଜଣେ ଭାଇ ଜୁବଲ୍ : ଜୁବଲ୍ ସେଇ ଗୋଷ୍ଠୀର ଜନକ ଯିଏ ବଜାନ୍ତି ବୀଣା କି କାଠତରଙ୍ଗ । ଆଉ ଦ୍ୱିତୀୟ ସ୍ତ୍ରୀ ଜିଲ୍ଲାଃର ସନ୍ତାନ ତୁବଲ୍-କାଇନ୍ ଶିଖାଏ ତମ୍ବା ଆଉ ଲୁହାରେ ତେଜସ ତିଆରି କୌଶଳ; ଆଉ ତୁବଲ୍-କାଇନ୍‌ର ଭଗିନୀର ନାଁ ନାମାଃ । ଆଉ ଲାମେଚ୍ ସ୍ତ୍ରୀ ଦୁହିଁଙ୍କୁ କହିଚି, ମୋ କଥା ଶୁଣ ଆଡାଃ ଆଉ ଜିଲ୍ଲାଃ, ମୋତେ

ଆହତକରିଥିଲା ବୋଲି ଜଣକୁ, ପୁଣି ଆଉଜଣେ ତରୁଣକୁ, ମୁଁ ହତ୍ୟାକରିଛି । କାଇନ୍ ଉପରେ ପ୍ରତିଶୋଧର ପରିମାଣ ଥିଲା ଯଦି ସାତଗୁଣ, ମୋ ଉପରେ ହେବ ସତସ୍ତରିଗୁଣ ।

ଆଉ ଆଦାମ୍ ଫେର୍ ମିଳିତହେଲା ସ୍ତ୍ରୀ ସହିତ ସଙ୍ଗମରେ, ଆଉ ସିଏ ପ୍ରସବକଲା ଯୋଉ ପୁଅ, ତା ନାଁ ରଖିଲେ ଶେଠ୍ : ଆଉ ଇଭ୍ କହିଲା, ଈଶ୍ୱର ତ ଆବେଲ୍ ବଦଳରେ ଦେଇଛନ୍ତି ଏ ପିଲା, କାହିଁକିନା, କାଇନ୍ ପ୍ରାଣନେଇଥିଲା ଆବେଲ୍‌ର । ଆଉ ଶେଠ୍ ବି ଜନ୍ମଦେଲା ଏକ ପୁତ୍ରସନ୍ତାନ; ନାଁ ରଖିଲେ ଇନସ୍ : ସେଇ ନାଁରେ ଲୋକ ଡାକିବାକୁ ଲାଗିଲେ ଈଶ୍ୱରଙ୍କୁ ।

ବିତିଯାଇଚି ସେକାଳ, ଲୋକ ବଢ଼ିଯାଇଚ଼ନ୍ତି ବହୁଗୁଣ ଦୁନିଆଯାକ, ତାଙ୍କଠୁଁ ଉପୁଜିଚନ୍ତି କାହୁଁକାହାଁତକ୍ ଝିଅ, ଦେବତାଙ୍କ ପୁଅନାତି ଦେଖିଲେ: ମାନବୀକନ୍ୟା ହେଲେସୁଦ୍ଧା ରୂପରେ ଅନୁପମ; ଆଉ ବାଛିବାଛି ଦେବକୁମାର ତାଙ୍କୁ ଗ୍ରହଣକଲେ ଧର୍ମପତ୍ନୀ । ଆଉ ଈଶ୍ୱର କହିଲେ, ନିହିତ ମୋ ଦେବଶକ୍ତି ମାନବଶରୀରରେ ସ୍ଥିତହୋଇ ରହିପାରେନା, କାହିଁକିନା, ସେ ଦେହ ରକ୍ତମାଂସର ଆକର; ତଥାପି ସେ ବଞ୍ଚିବ ବିଶାଶହେ ବର୍ଷ । ପୃଥିବୀରେ ଆବିର୍ଭୂତ ହୋଇଚି ଦାନବକୁଳ, ପରବର୍ତ୍ତୀ କାଳରେ ମଧ୍ୟ, ଯେତେବେଳେ ଦେବତାପୁତ୍ର ସମ୍ଭବକରିଚନ୍ତି ମାନବକନ୍ୟା ଗର୍ଭରୁ ସନ୍ତାନସନ୍ତତି, ଆଉ ମହାଶକ୍ତିଧର ସେଇ ମାନବ କାଳକ୍ରମେ ଅର୍ଜନକରିଛି ମହାଖ୍ୟାତି ।

ଈଶ୍ୱର ଦେଖିଚନ୍ତି ମର୍ତ୍ତ୍ୟଲୋକରେ ବଢ଼ିଚାଲିଛି ମାନବର ଅପକର୍ମ, କଳ୍ପନା ଓ ଚିନ୍ତାରୁ ଦିଶୁଚି ଅମଙ୍ଗଳ ରାଜତ୍ୱକରୁଛି ତା ହୃଦୟରେ ବେଳକୁବେଳ । ଆଉ ଈଶ୍ୱର ଅନୁତପ୍ତ ହୋଇଛନ୍ତି ଏଇକଥା ଭାବି ଯେ ଧରାବକ୍ଷରେ ମାନବସୃଷ୍ଟି ତାଙ୍କରି କୃତକର୍ମ, ଆଉ ଅନୁତାପ ତାଙ୍କୁ କରିଛି ବିଷଣ୍ଣ । କହିଚ଼ନ୍ତି, ଯୋଉ ମାନବକୁ ମୁଁ ନିଜେ କରିଚି ସର୍ଜନା, ମର୍ତ୍ତ୍ୟର ମୁଖମଣ୍ଡଳରୁ ତାକୁ ତେବେ ଧ୍ୱଂସକରିବା ଦରକାର; ଖାଲି ମଣିଷକୁ ନୁହେଁ, ପଶୁପକ୍ଷୀ ସରୀସୃପ ସବୁଯାକ ନଷ୍ଟକରିବାକୁ ପଡ଼ିବ, କାହିଁକିନା, ଏଗୁଡ଼ାକ ସୃଷ୍ଟିକରି ମୋ ମନରେ ଆଉ ଶାନ୍ତି ନାହିଁ । ହେଲେସୁଦ୍ଧା, ନୋହା ଦେଖିଚି ଈଶ୍ୱରଙ୍କ ଦୃଷ୍ଟିରେ କରୁଣା ।

ନୋହାର ବଂଶଧର ଏମାନେ : ନୋହା କିନ୍ତୁ ସମଦର୍ଶୀ ଆଉ ବଂଶାନୁକ୍ରମେ ନିଷ୍କଳୁଷ, ଆଉ ଈଶ୍ୱରଙ୍କ ଅନୁଚର ମଧ୍ୟ । ଆଉ ନୋହାର ଥିଲେ ତିନିଟି ପୁଅ, ସେମ୍ ହାମ୍ ଆଉ ଜାଫିଥ୍ । ସାରା ପୃଥିବୀ ଦିଶିଚି ଈଶ୍ୱରଙ୍କୁ ବିକୃତ ଆଉ ହିଂସାରେ ପ୍ରମତ୍ତ ।

ଆଉ ଈଶ୍ୱର ଦୃଷ୍ଟି ନିକ୍ଷେପକରିଚ଼ନ୍ତି ମୃତ୍ତିକା ଉପରେ, ଆଉ ଦେଖିଚନ୍ତି ମୃତ୍ତିକା ବି କଦର୍ଯ୍ୟ; କାହିଁକିନା, ରକ୍ତମାଂସ ସବୁଯାକ ଦୂଷିତହୋଇଛି ଏହି ମାଟି ଉପରେ ।

ଆଉ ଈଶ୍ୱର କହିଲେ ନୋହାକୁ, ରକ୍ତମାଂସର ଅନ୍ତିମ ପରିଣତି ପ୍ରତିଭାତ ହୋଇଛି ମୋ ସମ୍ମୁଖରେ; ଆଉ ମର୍ତ୍ତ୍ୟମଣ୍ଡଳ ଯେହେତୁ ରକ୍ତମାଂସ ମାଧ୍ୟମରେ ହିଁ ହୋଇଛି ହିଂସାରେ ପ୍ରମତ୍ତ, ସବୁଯାକ ଧ୍ୱଂସ କରିଦେବି ଏକାବେଳକେ । ଏକ୍ଷଣି ତୁ ମୂଷାକଟାକାଠଦେଇ ସିନ୍ଦୁକ ଭଳି ବଡ଼ ଗୋଟାଏ ନୌକା ବାଗାଇଦେ; ଭିତରେ ରହିବ କୋଠରି, ଆଉ ଭିତର-ବାହାର ଉଭୟପଟକୁ ଲେପିଦେବୁ ପିଚୁ କଳାରେ । ଆଉ ମାପ ହେବ ଲମ୍ବାରେ ତିନିଶ' ହାତ, ଓସାରରେ ପଚାଶ ହାତ ଆଉ ଉଞ୍ଚରେ ତିରିଶ ହାତ । ଗବାକ୍ଷ ବି ରହିବ ସିନ୍ଦୁକରେ, ଉପରକୁ ହାତେ ଉଞ୍ଚ; ପାଖକୁ ଲାଗିଥିବ ଦ୍ୱାରବନ୍ଧ; ଆଉ ସିନ୍ଦୁକଭିତରେ ଥିବ ତଳୁ ଉପରକୁ ତିନିପ୍ରସ୍ଥ ବଖୁରି । ଆଉ, ଜାଣିଥା, ମୁଁ, ହଁ ମୁଁ, ମର୍ତ୍ତ୍ୟମଣ୍ଡଳକୁ ଭସାଇଦେଇପାରେଁ ପ୍ରଳୟପ୍ଲାବନରେ, ନିଶ୍ଚିହ୍ନ କରିଦେଇପାରେଁ ରକ୍ତମାଂସ, ଯା ଧାରଣକରେ ନିଃଶ୍ୱାସ-ପ୍ରଶ୍ୱାସ ଆକାଶର ପବନରୁ, ଆଉ ନିକ୍ଷେପକରିପାରେଁ ସମଗ୍ର ସ୍ଥାବର-ଜଙ୍ଗମକୁ ମୃତ୍ୟୁର ମୁଖଗହ୍ୱରରେ । କିନ୍ତୁ ତୋ ସାଙ୍ଗରେ ରହିବ ମୋର ଏକ କରାର୍ ଆଉ ତୁ ମଧ୍ୟ ଆସିବୁ ସେଇ ସିନ୍ଦୁକ ଭିତରକୁ; ତୋ ପୁଅ, ତୋ ସ୍ତ୍ରୀ, ତୋ ପୁତ୍ରବଧୂ ସମସ୍ତେ ଆସିବେ ତୋ ସାଙ୍ଗରେ । ଆଉ ଜୀବନ୍ତ ଯେତେ ମାଂସପିଣ୍ଡ, ସବୁଥିରୁ ଯୋଡ଼ାଏ ଲେଖାଁ ଆଣିବୁ ସିନ୍ଦୁକଭିତରକୁ, ନିଜ ସାଙ୍ଗରେ ବଞ୍ଚାଇରଖିବୁ ସମସ୍ତଙ୍କୁ, ସେ ଯୋଡ଼ାକ ହେବେ କିନ୍ତୁ ସ୍ତ୍ରୀ ଆଉ ପୁରୁଷ । ଚଢ଼େଇ ହୁଅନ୍ତୁ କି ଗୋରୁଗାଈ, ସରୀସୃପ କି କୀଟପତଙ୍ଗ, ସବୁଥିରୁ ଆଣିବୁ ଅଣ୍ଡିରା ଆଉ ମାଈ, ଆଉ ସେମାନଙ୍କୁ ମଧ୍ୟ ଜିଆଇରଖିବୁ ନିଜ ହେପାଜତରେ, ଆଉ ସାଙ୍ଗରେ ପୁଣି ଆଣିବୁ ସବୁରକମ ଖାଦ୍ୟ, ଆଉ ସବୁଯାକ ରଖିବୁ ନିଜ ହେପାଜତରେ । ସେଇ ହେବ ତୋର ଆଉ ତୋ ସହବାସୀଙ୍କ ଭକ୍ଷ୍ୟ । ନୋହା କରିଛି ସେହିପରି, ଈଶ୍ୱରଆଜ୍ଞା ପାଳନକରିଛି ଅକ୍ଷରେ ଅକ୍ଷରେ ।

ଏବଂ ଈଶ୍ୱର ନୋହାକୁ କହିଲେ, ଏଥର ସପରିବାର ସିନ୍ଦୁକଭିତରକୁ ପ୍ରବେଶ କର, କାହିଁକିନା, ଏଇ ପ୍ରଜନ୍ମରେ ତୋତେହିଁ ଏକା ଦେଖୁଛି ନ୍ୟାୟନିଷ୍ଠ ନିରପେକ୍ଷ । ପ୍ରତ୍ୟେକ ନିର୍ମଳ ପଶୁରୁ ସାଙ୍ଗରେ ନେବୁ ସାତଟି ଲେଖାଁ, ଉଭୟ ଅଣ୍ଡିରା ଆଉ ମାଈ; ଆଉ ଯୋଉ ପଶୁ ନିର୍ମଳ ନୁହେଁ, ସେଥିରୁ ମଧ୍ୟ ଅଣ୍ଡିରା-ମାଈ ଯୋଡ଼ାଏ । ଯୋଉ ପକ୍ଷୀ ଭକ୍ଷ୍ୟ, ସେଥିରୁ ନେବୁ ସାତଟି କରି, ଉଭୟ ଅଣ୍ଡିରା ଆଉ ମାଈ, ଯେପରିକି

ଧରାପୃଷ୍ଠରେ ତିଷ୍ଠିରହିବ ତା ବୀଜ । ଆଉ ସାତଦିନ କଟିଗଲେ, ଚାଳିଶଦିନ-ଚାଳିଶରାତି ଧରି କରାଇବି ଏମିତି ବର୍ଷଣ ଯେ ଜୀବନ୍ତ ଯେତେ ବସ୍ତୁ ସମ୍ଭବକରିଛି ନିଜେ, ଧରାପୃଷ୍ଠରୁ ଧ୍ୱଂସହୋଇଯିବେ ସବୁଯାକ, ଆଉ ନୋହା— ଆଜ୍ଞାନୁସାରେ ସମ୍ପନ୍ନକରିଚି କର୍ତ୍ତବ୍ୟ ।

ମାତ୍ର, ଜଳପ୍ଲାବନ ଜଗତ୍‌କୁ ଗ୍ରାସ କଲାବେଳକୁ ନୋହାକୁ ବୟସ 'ଛ'ଶ' ବର୍ଷ । ଆଉ ପ୍ଲାବନରୁ ରକ୍ଷାପାଇବାକୁ ସ୍ତ୍ରୀ-ପୁତ୍ର-ପୁତ୍ରବଧୂ ସମେତ ଆଶ୍ରୟନେଇଛି ସିନ୍ଦୁକରେ, ଆଉ ସାଙ୍ଗରେ ନେଇଛି ସମଳ-ନିର୍ମଳ ଜୀବଜନ୍ତୁ , ପକ୍ଷୀ ଏବଂ ସରୀସୃପ, ମାଈ-ଅଣ୍ଡିରା ଯୋଡ଼ାଯୋଡ଼ାହୋଇ ନୋହା ପାଖରେ ପହଞ୍ଚିଛନ୍ତି; ନୌକାରୂପୀ ସିନ୍ଦୁକଭିତରେ ସମସ୍ତେ ଠାଇଁନେବା ସାତଦିନ ଉତ୍ତାରୁ ଆକାଶରୁ ଝରିପଡ଼ିଚି ପ୍ରଳୟପୟୋଧିଜଳ । ନୋହାର ଷଷ୍ଠଶତତମ ସମ୍ବତ୍ସରର ଦ୍ୱିତୀୟମାସର ସପ୍ତଦଶ ଦିନରେ ସପ୍ତସିନ୍ଧୁ ଲଂଘନକରିଛି ଉପକୂଳ, ଖୋଲିଯାଇଛି ଆକାଶର ସମସ୍ତ ଗବାକ୍ଷ । ଆଉ ଅବିରାମ ଏ ବର୍ଷଣ ଅବ୍ୟାହତରହିଛି ଚାଳିଶ ଦିବସ ଆଉ ଚାଳିଶ ରଜନୀ ।

ସେହି ଏକାଦିନ ପୁଅ ଶେମ୍ ଓ ହାମ୍ ଆଉ ନିଜ ସ୍ତ୍ରୀ ଓ ପୁତ୍ରବଧୂ ଗହଣରେ ନୋହା ପ୍ରବେଶକରିଛି ସିନ୍ଦୁକଭିତରକୁ; ସାଙ୍ଗରେ ରହିଛନ୍ତି ନିର୍ବାଚିତ ପଶୁପକ୍ଷୀ ସରୀସୃପ କୀଟପତଙ୍ଗ । ରକ୍ତମାଂସ ଯାହାଙ୍କ ଶରୀର ଆଉ ନିଃଶ୍ୱାସପ୍ରଶ୍ୱାସ ଯାହାଙ୍କ ଜୀବନ, ମାଈ-ଅଣ୍ଡିରା ବିନ୍ୟାସରେ ଯୋଡ଼ା ଯୋଡ଼ା ହୋଇ ପହଞ୍ଚିବାପରେ ପ୍ରବେଶଦ୍ୱାର ରୁଦ୍ଧକରିଦେଇଛନ୍ତି ଈଶ୍ୱର ।

ଆଉ ପ୍ଲାବନ ମଧ୍ୟ ସ୍ଥାୟୀହୋଇଛି କ୍ରମାଗତ ଚାଳିଶଦିନ; ଜଳରାଶି ଫୁଲିଉଠିଛି ଦିନକୁ ଦିନ, ଧୋଇଧାଇ ସିନ୍ଦୁକକୁ କରିଦେଇଚି ନିର୍ମଳ, ତହିଁଉତ୍ତାରୁ ମାଟିଉପରୁ ସିନ୍ଦୁକକୁ ଉଠାଇନେଇଚି ଉପରକୁ । ଆଉ ଚତୁର୍ଦ୍ଦିଗରେ ଛୁଟୁଚି ସ୍ରୋତ ଉପରେ ସ୍ରୋତ, ଜଳଧାରା ହେଉଚି ସ୍ଫୀତରୁ ସ୍ଫୀତତର, ଆଉ ସିନ୍ଦୁକ ଭାସୁଚି ପ୍ଲାବନର ତୁଙ୍ଗଚୂଡ଼ାରେ, ଆଉ ସେ ପାଣି ବୁଡ଼ାଇଦେଇଛି ପାହାଡ଼ପର୍ବତ, ଆକାଶତଳେ ଯା ଦୃଶ୍ୟମାନ, ସବୁ ଏକ୍ଷଣି ଜଳମଗ୍ନ । ନିଶ୍ଚିହ୍ନ ପର୍ବତଶୀର୍ଷରୁ ପନ୍ଦରହାତ ଉପରକୁ ଉଠିଛି ପାଣି; ମଣିଷ, ଜୀବଜନ୍ତୁ କୀଟପତଙ୍ଗ ପକ୍ଷୀ କି ସରୀସୃପ, ଧରାବକ୍ଷରେ ବିଚରଣରତ ଯେତେ ପ୍ରାଣୀ, ମୃତ୍ୟୁ କରିଛି ସମସ୍ତଙ୍କୁ ନିମଜ୍ଜିତ । ନାସାରନ୍ଧ୍ର ଯାର ଜୀବନଦାୟୀ ନିଃଶ୍ୱାସର ପ୍ରବେଶପଥ, ସ୍ଥଳଚର ସେଇ ପ୍ରାଣୀ ନିବିଷ୍ଟ ହୋଇଚନ୍ତି ମୃତ୍ୟୁର କରାଳ କବଳରେ । ଆକାଶରେ ଉଡ଼ିପାରେ, ମାଟିଉପରେ ଚଳିପାରେ,

ଏଭଳି ପଶୁପକ୍ଷୀ ଧ୍ୱଂସହୋଇଗଲେ ସୁଦ୍ଧା, ବଞ୍ଚିରହିଛି ଏକେଲା ନୋହା ଆଉ ସିନ୍ଦୁକସ୍ଥିତ ସହଚର ଜନପ୍ରାଣୀ ଓ ଜୀବଜନ୍ତୁ । ଆଉ ପୃଥିବୀ ଉପରେ ବ୍ୟାପ୍ତ ହୋଇରହିଛି ପ୍ରଳୟ କ୍ରମାଗତ ଦେଢ଼ଶତ ଦିବସ ।

ଆଉ ଈଶ୍ୱର ସେତେବେଳେ ସ୍ମରଣକରିଛନ୍ତି ନୋହାଙ୍କୁ, ତା ସହଚର ଜନପ୍ରାଣୀଙ୍କୁ, ସିନ୍ଦୁକସ୍ଥିତ ସମସ୍ତ ଜୀବନ୍ତ ବସ୍ତୁକୁ : ଆଉ ପବନକୁ ଆଜ୍ଞାକରିଛନ୍ତି ଜଳପ୍ଲାବନକୁ କ୍ଷାନ୍ତକରିବାକୁ । ସିନ୍ଧୁନିର୍ଝର ଆଉ ଆକାଶ-ଗବାକ୍ଷକୁ ମଧ ବୁଜିଦିଆଯାଇଛି ଏକାବେଳକେ ଆଉ ବାରିପାତକୁ କରାଯାଇଛି ସଂଯତ । ଆଉ ଜଳରାଶି ବି ଫେରିଯାଇଛି କ୍ରମଶଃ, ଆଉ ଦେଢ଼ଶତ ଦିବସ ଗତହେଲେ ଜଳରାଶି ହୋଇଛି ଏକେବାରେ ନିଷ୍କ୍ରାନ୍ତ, ଆଉ ସପ୍ତମ ମାସର ସପ୍ତଦଶ ଦିବସରେ ସିନ୍ଦୁକ ମଧ ଭାସିଆସି ଠେକିଛି ଆରାରାତ ଗିରିଶୃଙ୍ଗରେ । ପାଣି ଛାଡ଼ିବାକୁ ସେଠି ଲାଗିଯାଇଛି ଦଶମ ମାସ, ଦଶମ ମାସର ପ୍ରଥମ ଦିବସରେ କେବଳ ଗିରିଶୃଙ୍ଗ ହୋଇଛି  ଦୃଷ୍ଟିଗୋଚର ।

ଚାଳିଶଦିନ ଏମିତି ବିତିଯିବା ଉତ୍ତାରୁ ନିଜ ହାତରେ ତିଆରି ସିନ୍ଦୁକଟିର ଜଳାକବାଟି ଖୋଲି ବାହାରକୁ ଚାହିଁଚି ନୋହା: ଆଉ ପଠାଇଦେଇଛି ଗୋଟେ ଡାମରାକାଉ, ଯିଏ ଉଡ଼ିଯାଇ ଖବରଆଣିଛି ପ୍ରତିନିୟତ, ଶୁଖିଲାପାକଲା ହେବାଯାଏଁ ଉଡ଼ିଯାଇଚି ପ୍ରତିଦିନ ସିନ୍ଦୁକ ବାହାରକୁ  । ଆଉଗୋଟେ କପୋତୀ ମଧ ଛାଡ଼ିଦେଇଛି ନୋହା ମାଟିରୁ ପାଣି ନିଗିଡ଼ିଗଲାଣି ନା ନାହିଁ, ଜାଣିବାସକାଶେ; କପୋତୀ କିନ୍ତୁ ଗୋଡ଼ରଖିବାକୁ ବି ଜାଗା ପାଇନାହିଁ, ଚାରିଆଡ଼ ଓଦା ଦେଖି  ଫେରିଆସିଛି; ନୋହା ହାତବଢ଼ାଇ ଧରିଆଣିଛି ତାକୁ ସିନ୍ଦୁକ ଭିତରକୁ । ସାତଦିନ ଅପେକ୍ଷାକଲା ଉତ୍ତାରୁ ଫେର୍ ପଠାଇଛି କପୋତୀକୁ । କପୋତୀ ଯେତେବେଳେ ଲେଉଟିଲା  ବେଳବୁଡ଼କୁ, ଦେଖିଲାବେଳକୁ ଥଣ୍ଟରେ ଧରିଛି ଜଳପାଇ ଗଛରୁ ତୋଳିଆଣିଥିବା ପତ୍ର : ନୋହା ଜାଣିଲା, ପାଣି ନିଗିଡ଼ିଯାଇଛି ମାଟିରୁ । ହେଲେସୁଦ୍ଧା, ଆହୁରି ସାତଦିନ ସିଏ ଅପେକ୍ଷାକରିଚି ଆଉ ଆଉଥରେ ଉଡ଼ାଇଦେଇଚି କପୋତୀକୁ; ଚଢ଼େଇ ଆଉ ଫେରିଆସିନାହିଁ ସିନ୍ଦୁକକୁ ।

ଦିନାକେତେ ବାଦେ ଛ'ଶତ ଏକ ବର୍ଷର ପ୍ରଥମମାସର ପ୍ରଥମଦିନ ପାଣି ଛାଡ଼ିଯାଇଛି ପୂରାପୂରି । ସିନ୍ଦୁକଘୋଡ଼ଣି ଖୋଲିପକାଇ ନୋହା ଦେଖିଲା ତଳର ମାଟି ଶୁଷ୍କ । ଆଉ ଦ୍ୱିତୀୟମାସ ସତାଇଶଦିନ ବେଳକୁ ପୃଥିବୀ ହୋଇଯାଇଛି ଆଗପରି ଶୁଖିଲାପାକଲା ।

ନୋହାକୁ ଡାକି ଈଶ୍ୱର କହିଲେ, ସିନ୍ଦୁକରୁ ନିଷ୍କ୍ରାନ୍ତହୁଅ ଏଥର ସପରିବାର, ସାଙ୍ଗରେ ବାହାର କରିଆଣ ଜୀବଜନ୍ତୁ ପକ୍ଷୀ-ପତଙ୍ଗ ସରୀସୃପ, ସମସ୍ତେ ହୁଅନ୍ତୁ ସଫଳ, ବଂଶବୃଦ୍ଧି କରନ୍ତୁ ମନଆନନ୍ଦରେ, ଧରାପୃଷ୍ଠରେ ସ୍ୱପ୍ରଜାତିକୁ କରନ୍ତୁ ବହୁଗୁଣ । ସ୍ତ୍ରୀ, ପୁତ୍ର ସହିତ ବହାରିଆସିଚି ନୋହା, ପଛକୁ ପଛ ବାହାରି ଆସିଲେ ଜୀବଜନ୍ତୁ, ପଶୁପକ୍ଷୀ, ସରୀସୃପ, କୀଟପତଙ୍ଗ ମାଟି ଉପରକୁ ।

ନୋହା ଆଗେ ନିର୍ମାଣକରିଚି ଈଶ୍ୱରଙ୍କ ସକାଶେ ଏକ ବେଦୀ ଆଉ ବେଦୀ ତଳେ ଯଜ୍ଞକୁଣ୍ଡରେ ଆହୁତିଦେଇଚି ପ୍ରତି ପରିଶୁଦ୍ଧ ପଶୁ ଓ ପକ୍ଷୀରୁ ଗୋଟାଏ ଲେଖାଁ; ଆଉ ସର୍ବନିୟନ୍ତା ପରମେଶ୍ୱର ଆଘ୍ରାଣର ଆମୋଦ ଉପଭୋଗକରି ମନେମନେ ଭାବିଲେ, ମଣିଷର ଦୋଷ ସକାଶେ ପୃଥିବୀକୁ ଅଭିଶପ୍ତ କରିବିନାହିଁ ଆଉକେବେ, କାହିଁକିନା, ଯୌବନ ଉଦୟଠାରୁ ହୃଦୟବାସନା ମଣିଷର ଅନିଷ୍ଟପ୍ରବଣ; ଆଉ ପ୍ରାଣୀକୁଳଙ୍କୁ ବି ଏଭଳି ଆଘାତ କରିବିନାହିଁ; ଯେତେଦିନ ସଂସାର ରହିଚି । ବୀଜବପନ, ଶସ୍ୟସଂଗ୍ରହ, ଶୀତ ଆଉ ଗ୍ରୀଷ୍ମ, ଶୀତଳ ଆଉ ଉଷ୍ଣ, ଆଲୁଅ ଆଉ ଅନ୍ଧାର, କିଛିହେଲେ ଥମିଯିବନାହିଁ ଆଉ ।

ତା'ପରେ ଈଶ୍ୱର ନୋହା ଓ ପୁଅମାନଙ୍କୁ ଆଶୀର୍ବାଦକରି କହିଲେ, ସଫଳ ହୁଅ, ନିଜକୁ ବହୁଗୁଣକରି ମେଦିନୀକୁ କର ପରିପୂର୍ଣ୍ଣ । ଆଉ ଅବଶିଷ୍ଟ ଯେତେ ପଶୁପକ୍ଷୀ କି ସରୀସୃପ, ସାମୁଦ୍ରିକ ଜୀବଜନ୍ତୁ, ସବୁଯାକ ଦିଆଗଲା ତମକୁ, ସେ ତମକୁ ଭୟ କରିବେ, ତମ କତିରେ ରହିବେ ଭୀତତ୍ରସ୍ତ । ସଚଳ ଯେତେ ଜୀବ, ସବୁ ହେବେ ତୁମ ଖାଦ୍ୟ; ଏପରିକି, ହରିତ୍ ଯେତେ ଉଦ୍ଭିଦ । ମାତ୍ର ଅଙ୍ଗନିଃସୃତ ରକ୍ତ, ଯା ପ୍ରାଣୀର ଜୀବନ, ଭକ୍ଷ୍ୟ ହେବନାହିଁ ତୁମର, ଆଉ ନିଶ୍ଚିତ ଜାଣିଥା, ଯୋଉରକ୍ତ ତୁମ ଜୀବନ, ତାକୁ ହୁଏତ ମୁଁ କେବେ ଲୋଡ଼ିବି : ପ୍ରତି ଜୀବଜନ୍ତୁଙ୍କ ପାଖରୁ ଲୋଡ଼ିବି, ଆଉ ମଣିଷ ପାଖରୁ ମଧ୍ୟ; ପ୍ରତି ମଣିଷର ସହୋଦର ହାତରୁ ଚାହିଁବି ସହୋଦରର ଜୀବନ । କିନ୍ତୁ ଯିଏ କରିବ ରକ୍ତପାତ, ତା' ଜୀବନ ବି ନିଃଶେଷହେବ ମଣିଷ ହାତରେ, କାହିଁକିନା, ଈଶ୍ୱରଙ୍କ ପ୍ରତିମୂର୍ତ୍ତି ହିଁ ମଣିଷ । ସେଥିପାଇଁ ତୁ ଫଳପ୍ରସୂ ହେବୁ, ଏକରୁ ହେବୁ ଅନେକ, ଭରପୂର କରିବୁ ସଂସାର, ଯୋଉଠି ହେବ ତୋର ଉତ୍ତରୋତ୍ତର ଅଭିବୃଦ୍ଧି ।

ଆଉ ନୋହାକୁ ଯେମିତି, ସହଚର ଅପତ୍ୟଙ୍କୁ ସେମିତି, ଈଶ୍ୱର କହିଲେ, ହେଇ ଦେଖ, ତୁମକୁ ଆଉ ତୁମ ପୁତ୍ରପୌତ୍ରାଦି ବଂଶାନୁକ୍ରମକୁ ଆଉ ସିନ୍ଦୁକଭିତରୁ

ନିଷ୍କ୍ରାନ୍ତ ଯେତେ ପଶୁପକ୍ଷୀ ଆଉ ପୃଥିବୀପୃଷ୍ଠରେ ଆତଯାତ ଯେତେ ପ୍ରାଣୀ, ସମସ୍ତଙ୍କୁ ଏଇ ଅଙ୍ଗୀକାରରେ ଆବଦ୍ଧକରୁଛି ଯେ ଜଳପ୍ଲାବନ ଆଉକେବେ ସମଗ୍ର ଜୀବଜଗତକୁ ଗ୍ରାସକରିବନାହିଁ କି ଆଉକେବେ ପ୍ରଳୟବନ୍ୟା ବିଂଧ୍ୱସ କରିବନାହିଁ ପୃଥିବୀକୁ, ଏଇ ଅଙ୍ଗୀକାର ରହିଲା ମୋର ତୁମ ସାଙ୍ଗରେ; ସମଗ୍ର ଜୀବଜଗତ ସାଙ୍ଗରେ, ଜନ୍ମଜନ୍ମାନ୍ତର ବ୍ୟାପୀ ଚିରକାଳ । ଅଙ୍ଗୀକାରର ସାକ୍ଷ୍ୟସ୍ୱରୂପ ମୋ ଧନୁକୁ ଆଜି ମେଘମାଳାରେ କରୁଛି ସ୍ଥାପନ, ଯା ହେବ ମର୍ତ୍ତ୍ୟଲୋକ ସହିତ ମୋ ଚୁକ୍ତିର ସ୍ମାରକ । ଦିନାକେତେ ଉତ୍ତାରୁ ପୃଥିବୀ ଉପରକୁ ଆଣିବି ଯେବେ ମେଘମାଳା, ଏ ଧନୁ ବି ଆବିର୍ଭୂତ ହେବ ଗଗନରେ ଯା ଦେଖି ସ୍ମରଣ କରିବି, ଧାରାବର୍ଷଣ ପ୍ରଳୟପ୍ଲାବନରେ ପରିଣତ ହେବନାହିଁ ବୋଲି କଥାଦେଇଛି ମୁଁ ମର୍ତ୍ତ୍ୟଲୋକକୁ, ଜୀବଜଗତକୁ, ଜୀବନ୍ତ ସକଳ ସତ୍ତାକୁ । ଆଉ ସେଇ ଇନ୍ଦ୍ରଧନୁକୁ ଦେଖିଲାକ୍ଷଣି ତୁମର ବି ମନେପଡୁଥିବ ସଂସାରକୁ ପ୍ରଦତ୍ତ ପରମେଶ୍ୱରଙ୍କ ଶାଶ୍ୱତ ବରାଭୟ । ଆଉ ଈଶ୍ୱର ନୋହାକୁ କହିଲେ, ଏଇ ଇନ୍ଦ୍ରଧନୁ ହିଁ ମୋ [illegible] ର ସାକ୍ଷୀ ଓ ପ୍ରତୀକ ।

ଆଉ ସିନ୍ଦୁକ ଭିତରୁ ନିଷ୍କ୍ରାନ୍ତ ହୋଇଥିଲେ ନୋହାର ଯୋଉ ପୁଅ, ସିଏ ଥିଲେ ଶେମ୍, ହାମ୍ ଆଉ ଜାଫେଥ୍ : ଆଉ ହାମ୍ ହୋଇଛି ଯଥାକାଳେ କ୍ୟାନାନ୍‌ର ଜନକ । ନୋହାର ଏଇ ପୁତ୍ରତ୍ରୟ ଅବଶ୍ୟ ସାରା ମାନବସମାଜର ଆଦିପୁରୁଷ ।

ନୋହା ଏକ୍ଷଣି ମନଦେଇଛି କୃଷିକର୍ମରେ ଆଉ ରୋପଣ କରିଚି ଏକ ଦ୍ରାକ୍ଷାବିତାନ । ଆଉ ଦ୍ରାକ୍ଷାସବ ପାନକରି ତମ୍ବୁଭିତରେ ଶୋଇରହିଛି ଉନ୍ମତ୍ତ ଓ ଉଲଗ୍ନ । ଆଉ ହାମ୍, କ୍ୟାନାନ୍‌ର ପିତା, ଲକ୍ଷ୍ୟ କରିଛି ବାପର ନଗ୍ନତା, ଆଉ ଅପର ଦୁଇଭାଇଙ୍କୁ ଯାଇ ଜଣାଇଛି ନିଜ ଅପ୍ରସନ୍ନତା । ଶେମ୍ ଆଉ ଜାଫେଥ୍ କାନ୍ଧଉପରେ ପୋଷାକଟିଏ ବହନକରି ପଛକୁ ମୁହଁକରି ତମ୍ବୁ ଭିତରକୁ ଆସି ଆବୃତ କରିଦେଇଛନ୍ତି ପିତାର ନଗ୍ନତା, ମାତ୍ର ପଛକୁ ମୁହଁକରି ଆସିଥିବାରୁ ଦେଖିନାହାନ୍ତି ପିତାକୁ ଉଲଗ୍ନ । ନିଶା କଟିଗଲା ଉତ୍ତାରୁ, ଅବଗତ ହେଲା ନୋହା, ସାନପୁଅ କରିଛି କି କାଣ୍ଡ; ଏବଂ କହିଲା,

କ୍ୟାନାନ୍‌କୁ ଦେଲି ଏଇ ଅଭିଶାପ;
ଭ୍ରାତା ସକଳର ହେବ ସେ ଭୃତ୍ୟାନୁଭୃତ୍ୟ ।
ଆଉ, ପରମେଶ୍ୱର ଶେମ୍‌କୁ ଦିଅନ୍ତୁ ଏଇ କୃପାବର:
କ୍ୟାନାନ୍ ହିଁ ହେବ ଶେମ୍‌ର ସେବକ
ଆଉ ଜାଫେଥ୍‌କୁ ମଧ୍ୟ କରିବେ ମୁକ୍ତ

ଆଉ ସିଏ ରହିବ ଯାଇ ଶେମ୍ ସାଙ୍ଗରେ ଏକାତମ୍ବୁରେ
ଆଉ କ୍ୟାନାନ୍ ହେବ ପୁଣି ଜାଫେଥ୍‌ର ସେବକ ।

ଆଉ ପ୍ରଳୟପ୍ଲାବନ ଉତ୍ତାରୁ ନୋହା ବଞ୍ଚିଚି ଆହୁରି ତିନିଶ' ପଚାଶ ସମ୍ବସର; ଆୟୁଷ ହେଲା ଯେବେ ସାଢ଼େ ନ'ଶହ ବର୍ଷ, ଘଟିଛି ତା ଦେହାବସାନ ।

## ତୁଙ୍ଗ ଔଦ୍ଧତ୍ୟ

ଆଉ ଜଗତଯାକ ଲୋକ କହୁଥିଲେ ଏକାରକମ କଥା, ସେମାନଙ୍କ ଭାଷା ବି ଥିଲା ଅଭିନ୍ନ । ଦିନାକେତେ ବାଦେ, ପୂର୍ବଦିଗରୁ ଯାତ୍ରାକରିଲେ ଯେତେବେଳେ ବାଟରେ ପଡ଼ିଲା ସମତଳ ପ୍ରାନ୍ତର, ଆଉ ସେଇ ଶିନାର୍ ଠିଁ ରହିଗଲେ ତମ୍ବୁଖଟାଇ । ପରସ୍ପରକୁ କହିଲେ, ଚାଲ ଯାଇ ଇଟାଗଡ଼ି ଭାଟିରେ ପୋଡ଼ିବା, ଆଉ ପଥର ଜାଗାରେ ଇଟା, ଚୂନସୁର୍‌କି ଜାଗାରେ ଅଠିଳାକାଦୁଅ ଯୋଗାଡ଼କରି କହିଲେ, ଚାଲ ଗୋଟେ ସହର ଗଢ଼ିବା, ଆଉ ତା ଭିତରେ ଏମିତି ଗୋଟିଏ ସୌଧ ଯା ମଥାନ ଛୁଇଁବ ଆକାଶ । ଏ କୀର୍ତ୍ତି ସରିଗଲେ, ଚାଲ ବିଞ୍ଚି ହୋଇପଡ଼ିବା ପୃଥିବୀସାରା ।

ଆଉ ଈଶ୍ୱର ମଧ୍ୟ ଧରାବତରଣ କରି ଦେଖିନେଲେ ମଣିଷପିଲା କି ଅପୂର୍ବ ନଗର ଆଉ ସୌଧ ଖାଡ଼ା କରିପାରେ ! ଦେଖିସାରି କହିଲେ, ଜନସମଷ୍ଟି ଯେହେତୁ ଏକ ଓ ଅଭିନ୍ନ, ସମସ୍ତେ କହୁଛନ୍ତି ପୁଣି ଏକାଭାଷା; ଏକ୍ଷଣି ଯା କଲେଣି, ଓଗାଳି ହେବନାହିଁ ଯା'ଙ୍କୁ ଆଉ; କଳ୍ପନା ଯୁଆଡ଼କୁ ଟାଣିନେବ ଚାଲିଯିବେ । ତଳକୁ ଯାଇ ତାଙ୍କ ବଚନକୁ ଏମିତି ବାଉଳା କରିଦିଏଁ ଯେ କାହାରି ଭାଷା ବୁଝିପାରିବେ ନାହିଁ କେହି । ପୃଥିବୀସାରା ଏମିତି ବିକ୍ଷିପ୍ତ କରିଦେଲେ ମଣିଷକୁ ଯେ ନଗରନିର୍ମାଣ ଛାଡ଼ିଦେଇ ଯିଏ ଯୁଆଡ଼େ ପାରିଲା ଧାଇଁ ପଳାଇଗଲା । ସୌଧଟାକୁ ତେଣୁ ନାଁ ଦେଲେ ବାବେଲ୍; କାହିଁକିନା, ଈଶ୍ୱର ସେଇ ଭାଷାକୁ କରିଦେଇଥିଲେ ବିଭ୍ରାନ୍ତ ଆଉ ସେଇ ଜାଗାରୁ ଭାଷାର ଅଂଶଗୁଡ଼ିକୁ ନିକ୍ଷିପ୍ତ କରିଥିଲେ ଜଗତ୍‌ସାରା ।

## ନିର୍ବାଚିତ ପରିଜନ : ଆବ୍ରାହାମ୍

ଏକ୍ଷଣି ଆବ୍ରାହାମ୍‌କୁ ପାଖକୁ ଡାକି ଆଜ୍ଞାକଲେ, ଆପଣା ଦେଶ କୁଟୁମ୍ବ ଆଉ ପିତୃଗୃହ ପରିତ୍ୟାଗକରି ବାହାରି ଆ'; ଏପରି ଏକ ଜାଗା ତୋତେ ଦେଖାଇଦେବି

ଯୋଉଠିକୁ ଗଲେ ବିଶାଳ ଏକ ଜାତିରେ କରିବି ତୋତେ ପରିଣତ, ବରାଭୟ ପ୍ରାପ୍ତହୋଇ ତୋ ଖ୍ୟାତି ବି ବ୍ୟାପ୍ତହେବ ଚତୁର୍ଦ୍ଦିଗ, ସତେଅବା ତୁ ଈଶ୍ୱରଙ୍କ ମୂର୍ତ୍ତିମନ୍ତ ଆଶୀର୍ବାଦ: ଆଉ ଯିଏ ତୋର ଭଲକରିବ ସିଏ ବି ପାଇବ ମୋ ଆଶୀର୍ବାଦ, ଯିଏ ବିରୋଧକରିବ ସିଏ ପାଇବ ଅଭିଶାପ : ଆଉ ତୋହରି ମାଧ୍ୟମରେ ହିଁ ସଂସାରଯାକ ପରିବାର ଲାଭକରିବେ ବିଭୁକୃପା । ଏକଥା ଶୁଣି ଆବ୍ରାହାମ ପ୍ରସ୍ଥାନକରିଚି ହାରାନ୍‌ରୁ, ବୟସ ହୋଇଚି ତାକୁ ପଞ୍ଚସ୍ତରି ବର୍ଷ ଆଉ ତା ସାଙ୍ଗରେ ଯାଇଚି ଲୋଟ୍ । ସ୍ତ୍ରୀ ସାରାଇ ବି ଯାଇଚି ଆବ୍ରାହାମ୍ ସାଙ୍ଗରେ ଆଉ ପୁତୁରା ଲୋଟ୍, ଆଉ ହାରାନ୍‌ରେ ପ୍ରାପ୍ତ ଲୋକଲସ୍କର ଆଉ ଗଚ୍ଛିତ ଯେତେ ଧନସମ୍ପଦ । ଯାଇ ପହଞ୍ଚିଲେ ଯୋଉଠି, ସେ ଖଣ୍ଡମଣ୍ଡଳର ନାଁ କ୍ୟାନାନ୍ । କ୍ୟାନାନ୍ ଭିତରଦେଇ ଆବ୍ରାହାମ୍ ଯାଇ ପହଞ୍ଚିଲା ଯୋଉଠି, ସେ ଜାଗା ସିଚ୍ଚେମ୍, ତଳକୁ ଗଡ଼ିଲେ ସମତଳ ଜାଗା ମୋରେହ୍, ଆଉ କ୍ୟାନାନ୍‌ର ବଂଶଧର ବାନ୍ଧିଲେ ସେଠି ବସତି । ଆବିର୍ଭୂତହୋଇ ପରମେଶ୍ୱର ଆବ୍ରାହାମ୍‌କୁ କହିଲେ, ଏଇ ଜମି ତୋ ଜିମାରେ ହିଁ ଦେବାକୁ ଚାହେଁ, ଯେପରିକି ଭୋଗ-ଦଖଲ କରିପାରିବେ ତୋ ପୁଅନାତି; ଆବ୍ରାହାମ୍ ଈଶ୍ୱରଙ୍କୁ ଭେଟିଥିଲା ଯୋଉ ସ୍ଥଳରେ ସେଇଠି ନିର୍ମାଣକରିଚି ଏକ ପୂଜାବେଦୀ । ଆଉ ସେ ଜାଗାରୁ ପୁଣି ବେଥ୍‌ଏଲ୍ ପୂର୍ବକୁ ଥିଲା ଯୋଉ ପର୍ବତ, ସେଠି ପହଞ୍ଚି ଆବ୍ରାହାମ୍ ପୁଣି ଖଟାଇ ଦେଇଚି ନିଜ ତମ୍ବୁ, ପଶ୍ଚିମକୁ ରହିଛି ବେଥ୍-ଏଲ୍, ପୂର୍ବକୁ ହାଇ : ସେଠି ପୁଣି ପୂଜାବେଦୀ ସ୍ଥାପନକରି ଆବ୍ରାହାମ୍ କରିଛି ଈଶ୍ୱରଙ୍କ ଗୁଣକୀର୍ତ୍ତନ ।

ଆଉ ଆବ୍ରାହାମ୍ ଥିଲା ପ୍ରଭୂତ ସମ୍ପଦଶାଳୀ, ସୁନାରୁପା ଗବାଦି ପଶୁ, କିଛିହେଲେ ଅଭାବ ନ ଥିଲା ତାର । ଆଉ ଦକ୍ଷିଣଦିଗରୁ, ବେଥ୍-ଏଲ୍ ଓ ହାଇ ମଝିରେ ତମ୍ବୁ ଆଣିଥିଲା ଯୋଉଠି, ସେଠିକି ଆସି ପୂଜାବେଦୀ ସମୀପରେ ସ୍ମରଣକରିଚି ପରମେଶ୍ୱରଙ୍କୁ । ଅନୁଚର ହେଲେସୁଦ୍ଧା, ଲୋଟ୍‌ର ମଧ୍ୟ ଗୋରୁଗାଈ, ଛେଳିମେଣ୍ଢା, ତମ୍ବୁ ଇତ୍ୟାଦି ଥିଲା ଯଥେଷ୍ଟ । ଏକାସାଙ୍ଗରେ ବସବାସକରିବାକୁ ଜମିଜାଗା ହୋଇଚି ଅକୁଳାଣ, ତା' ଛଡ଼ା, ଉଭୟ ମାଲିକଙ୍କ ଗୋରୁ-ମେଣ୍ଢା ରଖୁଆଳଙ୍କ ଭିତରେ ଲାଗିରହିଚି ଝଗଡ଼ାଝାଟି । କାନାନାଇଟ୍ ଓ ପେରିଜାଇଟ୍ ସେଠିକା ଆଦିବାସିନ୍ଦା । ଦେଖିଶୁଣି, ପୁତୁରାକୁ ଡାକି ଆବ୍ରାହାମ୍ କହିଲା, ଆପଣା ଭିତରେ ବାଦବିବାଦକରି ଲାଭନାହିଁ, ଆଖିଆଗରେ ପଡ଼ିରହିଚି କାହୁଁକାହାଁତକ ଜମିଜମା; ମୋଠୁଁ ତୁ ବରଂ ଅଲଗାହୋଇ ଯା, ଦକ୍ଷିଣପଟ ତୁ ନେଲେ ମୁଁ ଯିବି ଉତ୍ତରକୁ, ବାଁପଟକୁ ତୁ ନେଲେ

ମୁଁ ଯିବି ଡାହାଣକୁ । ଲୋଟ୍ ଆଖିବୁଲାଇ ଦେଖିଲା ଜର୍ଦନ୍-ର ବିସ୍ତୀର୍ଣ୍ଣ ସମତଳ, ଜଳାଭାବର ଚିହ୍ନନାହିଁ; ଆଉ ଜୋଆର୍ ଆଡ଼କୁ ଆଗେଇଗଲେ ଇଜିପ୍ଟ, ସତେଅବା ଈଶ୍ୱରଙ୍କ ପ୍ରମୋଦକାନନ । ସେତେବେଳକୁ ଅବଶ୍ୟ ସୋଡୋମ୍ ଆଉ ଗୋମେରାହ୍ ଈଶ୍ୱରଙ୍କ କୋପାନଳରେ ଦଗ୍ଧହୋଇନାହିଁ । ଲୋଟ୍ ବାଛିଚି ସେଇ ଜାଗାକୁ ଆଉ ଆବ୍ରାହାମ୍‌ଠୁଁ ଅଲଗାହୋଇ ଚାଲିଯାଇଚି ପୂର୍ବଦିଗକୁ । ଆବ୍ରାହାମ୍ ରହିଯାଇଚି କ୍ୟାନାନଠିଁ ଆଉ ଲୋଟ୍ ତମ୍ବୁ ଖଟାଇଚି ଯାଇ ଜୋର୍ଦନ୍ ସମତଳ ଭୂମିର ସୋଡୋମ୍ ନିକଟବର୍ତ୍ତୀ ସହରାଞ୍ଚଳରେ । ମାତ୍ର ସୋଡୋମ୍ ଲୋକଗୁଡ଼ାକ ଥିଲେ ଅତିଶୟ ଦୁଷ୍ଟ ଓ ପାପିଷ୍ଠ ।

ଏସବୁ ଘଟିଯିବା ଉତ୍ତାରୁ ସ୍ୱପ୍ନାଦିଷ୍ଟ ହୋଇଚି ଆବ୍ରାହମ୍ : ଶଙ୍କିତ ହୁଅନା, ଆବ୍ରାହାମ୍, ଈଶ୍ୱରହିଁ ତୁମ ରକ୍ଷାକବଚ୍, ଈଶ୍ୱରହିଁ ତୁମ ଶ୍ରେଷ୍ଠସମ୍ପଦ । ଆବ୍ରାହାମ୍ ଉତ୍ତରଦେଇଚି, ହେ ମହାପ୍ରଭୁ, କଣ ଅବା ଆଉ ଦେବ ମୋତେ : ମୁଁ ତ ନିଃସନ୍ତାନ, ମୋ ଘରର କର୍ଣ୍ଣଧାର ଏକ୍ଷଣି ଦାମାସ୍କସ୍‌ରୁ ଆନୀତ ଏଲିଏଜର୍ । ମୋତେ ତ ବୀଜ ଦେଇନା, ଉତ୍ତରାଧିକାରୀ କରି ମୋ ଘରେ ଜନ୍ମଦେଇଚ୍ ପାଳିତ ଏକ କର୍ମଚାରୀ । ଦୈବବାଣୀ ଘୋଷିତହୋଇଚି ତତ୍‌କ୍ଷଣାତ୍: ସିଏ ହେବନାହିଁ କେବେ ବଂଶଧର, ତୁମ ବଂଶଧର ଆସିବ ତୁମ ଔରସରୁ । ଘରବାହାରକୁ ଆବ୍ରାହାମ୍‌କୁ ଟେକିଆଣି କହିଲେ, ଆକାଶକୁ ଥରେ ଚାହିଁଦେଖ, ଆଉ ପାରିବ ଯଦି ନକ୍ଷତ୍ରବୀଥିକୁ ଗଣିଦେଖ, ସେଇଭଳି ଅକଳନ୍ତି ହେବେ ତୁମ ବୀଜପୁଞ୍ଜ । ଆଉ ଈଶ୍ୱରଙ୍କ ସେ ବାଣୀ ଆବ୍ରାହାମ୍ ହୃଦୟରେ ସଞ୍ଚାରକରିଛି ବିଶ୍ୱାସ, ଆଉ ସିଏ ବୁଝିପାରିଚି, ବିଜ୍ଞତାର ପ୍ରତିଦାନ ଇଏ । ଆଉ ଈଶ୍ୱର କହିଚନ୍ତି, ମୁଁ ସେଇ ଦେବତା ଯିଏ ଚାଲ୍‌ଡୀସ୍-ର ଉର୍-ରୁ ବାଟକଢ଼ାଇ ଆଣିଛି ତୋତେ ଏତେ ଦୂର, ଦେଇଚି ଏଇ ଭୂମି ଉପରେ ବଂଶାନୁକ୍ରମିକ ଏକାଧିକାର । ମାତ୍ର ଆବ୍ରାହାମ୍ ପଚାରିଚି, ଜାଣିବି କେମିତି ପ୍ରଭୁ, ମୁଁ ହିଁ ହେବି ଏକମାତ୍ର ଉତ୍ତରାଧିକାରୀ ? ଈଶ୍ୱର କହିଲେ, ମୋ ଲାଗି ତେବେ ତିନିବର୍ଷିଆ ଗୋଟେ ମାଇବାଛୁରି ଘେନିଆ, ଆଉଗୋଟେ ତିନିବର୍ଷିଆ ଛେଳିଛୁଆ, ତିନିବର୍ଷିଆ ଗୋଟେ ମେଣ୍ଢାଛୁଆ, ଗୋଟେ ବଣକବତି ଆଉଗୋଟେ ପାରାଛୁଆ । ଆବ୍ରାହାମ୍ ସବୁଯାକ ଆଣିଚି ତାଙ୍କ ପାଖକୁ । ଆଣିଚି ଆଉ ମଝିରୁ ଦି'ଗଡ଼କରି କାଟିଦେଇ ପାଖକୁପାଖ ଥୋଇଦେଇଚି , ମାତ୍ର ଚଢ଼େଇ ଦୁଇଟାଙ୍କୁ ଗଡ଼ କରିନାହିଁ । ଆଉ ଚିଲ କି କାଉ ଉଡ଼ି ଆସିଲେ, ଉଠିପଡ଼ି ତଡ଼ିଦେଇଚି ସଙ୍ଗେ ସଙ୍ଗେ । ଆଉ ବେଳ ଗଡଗଡ ହେବାବେଳକୁ ନିଘୋଡ଼ ନିଦ ଅଭିଭୂତକରିଚି ଆବ୍ରାହାମ୍‌କୁ; ଆଉ ଦେଖୁଦେଖୁଁ କିଟିକିଟି

ଅନ୍ଧାର ବି ଘୋଟିଆସିଚ଼ି ତା' ଉପରକୁ । ଈଶ୍ୱର ସେତେବେଳେ କହିଚ଼ନ୍ତି, ନିଶ୍ଚିତ ଜାଣିଥା, ତୋ ବଂଶଧର ଏପରି ଜାଗାକୁ ଯିବେ ଯା ତାଙ୍କ ନିଜର ନୁହେଁ, ବିଦେଶୀ ବହିରାଗତ ଭଳି ସେଠି ଉତ୍ପୀଡ଼ିତହେବେ ସେ ଦେଶର ଅଧିବାସୀଙ୍କ ହାତରେ ଚାରିଶ'ବର୍ଷ ଆଉ ଫେର୍ କୋଉଜାତି ପାଖରେ ଅବନତହୋଇ ରହିବେ, ସେକଥା ଯଥାକାଳେ ସ୍ଥିରକରିବି; ତେବେ ଚାରିଶ'ବର୍ଷ ଉତ୍ତାରୁ ହୋଇଉଠିବେ ମହାପ୍ରତାପଶାଳୀ । ତୁ ଅବଶ୍ୟ ପିତୃପୁରୁଷଙ୍କ ପାଖକୁ ନିଜେ ଚାଲିଯିବୁ ଦୀର୍ଘପରମାୟୁ ଭୋଗକରିବା ପରେ ଏବଂ ସମାଧିସ୍ଥ ହେବୁ ଶାନ୍ତ ସମାହିତ ମହିମାରେ । ଚତୁର୍ଥ ପ୍ରଜନ୍ମ ବେଳକୁ ସେମାନେ କିନ୍ତୁ ଫେରିଆସିବେ ଏଇ ଜାଗାକୁ ପୁନଶ୍ଚ, କାହିଁକିନା, ଆମୋରାଇଟ୍‌ଙ୍କ ଅନ୍ୟାୟ ଅବିଚାର ଦୈବରୋଷ ଆକର୍ଷଣକରିବା ଭଳି ସ୍ତରକୁ ଉଠିବାକୁ ସମୟ ଲାଗିବ । ନିଦ ଭାଙ୍ଗିଗଲା, ଆବ୍ରାହାମ୍ ଅନାଇ ଦେଖିଲା ସୂର୍ଯ୍ୟ ଅସ୍ତହୋଇଚ଼ନ୍ତି, ଚାରିଆଡ଼େ ଘୋଟିଚି ସଞ୍ଜ-ଅନ୍ଧାର, ଅଥଚ଼ ଉତ୍ସର୍ଗୀକୃତ ମାଂସଖଣ୍ଡ ଭିତରୁ, ଚୁଲିରୁ ଯେମିତି, ଧୂଆଁଉଠୁଚି ଆଉ ଜ୍ୱଳନ୍ତ ଏକ ପ୍ରଦୀପ ଚରିବୁଲୁଚି ବଳିଦତ୍ତ ପଶୁପକ୍ଷୀଙ୍କ ଗହଣରେ ।

ଠିକ୍ ସେଇଦିନ ଆବ୍ରାହାମକୁ ଏକ ଚୁକ୍ତିରେ ଆବଦ୍ଧକରିଚ଼ନ୍ତି ପରମେଶ୍ୱର, ଯେ, ଇଜିପ୍ଟର୍ ନୀଳନଦୀଠୁଁ ଇଉଫ୍ରେଟିସ୍ ନଦୀ ପର୍ଯ୍ୟନ୍ତ ସମଗ୍ର ସ୍ଥଳଭାଗ ତୋ ବଂଶଧରଙ୍କୁ ମୁଁ ଦେଇଗଲି : ସେଠି ଏବେ ରହିଚ଼ନ୍ତି କେନାଇଟ୍ ଆଉ କେନିଜାଇଟ୍ ଆଉ କାଡ୍‌ମୋନାଇଟ୍ ଆଉ ହିଟାଇଟ୍, ପେରିଜାଇଟ୍ ଆଉ ରେଫାଇମ୍ । ପୁଣି ଆମୋରାଇଟ୍ ଆଉ କାନାନାଇଟ୍ ଆଉ ଗିର୍‌ଗାସାଇଟ୍ ଆଉ ଜେବୁସାଇଟ୍ ।

## ଆବ୍ରାହାମ୍‌ଙ୍କ ଅପତ୍ୟ

ଭାର୍ଯ୍ୟା ସାରାଇ ଏକ୍ଷଣି ପ୍ରଜନନକୁ ଅଯୋଗ୍ୟ; କିନ୍ତୁ ସାରାଇର ଡାହାଣହାତ ଥିଲା ମିଶରଦେଶୀୟ ଯୋଉ ନାରୀ, ତା ନାଁ ହ୍ୟାଗାର୍ । ସାରାଇ କହିଲା, ଦେଖ, ଭଗବାନ୍ ମୋତେ ସନ୍ତାନସୁଖରୁ ବଞ୍ଚିତକରିଛନ୍ତି: ତୁମେ ବରଂ ଏଇ ପରିଚାରିକା ସହିତ ମିଳିତ ହୁଅ, ତା ପିଲାଙ୍କୁ ତେବେ ନିଜର କରିପାରିବି ମୁଁ । ସାରାଇ କଥା ମାନିଛି ଆବ୍ରାହାମ୍ । କ୍ୟାନାନ୍ ଭୂଇଁରେ ଦଶବର୍ଷକାଳ ଘରକରିବା ଉତ୍ତାରୁ, ସାଙ୍ଗରେ ହ୍ୟାଗାର୍-କୁ ନେଇ ସାରାଇ ଦେଇଛି ଆବ୍ରାହାମକୁ ଏବଂ ହ୍ୟାଗାର୍ ହୋଇଛି ଅନ୍ତଃସତ୍ତ୍ୱା । ଆଉ ହ୍ୟାଗାର୍ ନିଜ ଗର୍ଭସଞ୍ଚାର ବୁଝିପାରି କର୍ତ୍ତ୍ରୀଙ୍କୁ କରିଛି ଅବଜ୍ଞା । କ୍ଷୁବ୍ଧହୋଇ ସାରାଇ ଆବ୍ରାହାମକୁ କହିଛି, ଏ ଦୋଷ ତମକୁହିଁ ଲାଗିବ, ଚାକରାଣୀକୁ ଦେଲି

ସ୍ୱାମୀର ବକ୍ଷଲଗ୍ନ ହେବାକୁ, ଆଉ ଦେଖିଲା ଯେତେବେଳେ ମା' ହେବାକୁ ଯାଉଛି, ମୁଁ ହୋଇଗଲି ଇତରଜନ ! ଭଗବାନ୍ ବିଚାରକରନ୍ତୁ । କିନ୍ତୁ ଆବ୍ରାହମ୍ କହିଲା, ଦେଖ ସାରାଇ, ତମ ଦାସୀକୁ ମୁଁ ଫେରାଇଦେଉଛି ତମ ହାତକୁ, ଯା ଭଲ ବୁଝୁଛ କରିପାର । ଆଉ ସାରାଇ ଯେତେବେଳେ କଠୋର ବ୍ୟବହାର କରିଚି, ହ୍ୟାଗାର୍ ପଳାଇଯାଇଚି ଛାଟିପିଟି ହୋଇ ।

ଆଉ ଶୂର୍‌କୁ ଯିବାବାଟରେ ଜଙ୍ଗଲମଝିରେ ଯୋଉ ନିର୍ଝର, ଦେବଦୂତ ହ୍ୟାଗାର୍‌କୁ ଭେଟିଛି ସେଇ ଜଳସ୍ରୋତ ଧାରରେ; ପଚାରିଛି, ତୁ ତ ସାରାଇର ପରିଚାରିକା, ଏଠିକି ଫେର ଆସିଲୁ କେମିତି, ଯିବୁ ଅବା କୁଆଡ଼େ ? ହ୍ୟାଗାର୍ କହଚି ମାଲିକାଣୀଙ୍କ ଡରରେ ମୁଁ ପଳାଇ ଆସିଛି ଘରଛାଡ଼ି । ଦେବଦୂତ କହିଚି, ଠିକ୍ କରିନୁ, ଘରକୁ ଫେରିଯାଇ ଶରଣ ପଶ ସାରାଇର । ଆଉ ତୋ ଗର୍ଭଜଙ୍କ ସଂଖ୍ୟା ମୁଁ ଏତେଗୁଣ ବଢ଼ାଇଦେବି ଯେ ବ୍ୟାପିଯିବେ କାହୁଁକାହାଁତକ୍ । ଆଉ, ଏବେ ତୁ ଗର୍ଭବତୀ, ମାତ୍ର ଇଏ ହେବ ପୁତ୍ରସନ୍ତାନ; ଆଉ ପ୍ରଭୁ ଯେହେତୁ ତୋ କଷ୍ଟ ବଥା ଶୁଣିଛନ୍ତି, ଏ ପିଲାର ନାଁ ରଖିବୁ ଇସ୍‌ମାଇଲ୍ । ସିଏ କିନ୍ତୁ ହେବ ବନ୍ୟସ୍ୱଭାବ, ଯା'କୁ ଦେଖିବ ତା ଉପରକୁ ହାତଉଠାଇବ, ଅବଶ୍ୟ ଦେବ ଯେମିତି ପାଇବ ବି ସେମିତି । ଆଉ ନିଜ ଭାଇମାନଙ୍କ ସମ୍ମୁଖରେ ହେବ ତା ବସବାସ । ଆଉ ହ୍ୟାଗାର୍ ଯଥାକାଳେ ପ୍ରସବକରିଛି ଏକ ପୁତ୍ରସନ୍ତାନ ଆଉ ଆବ୍ରାହାମ୍ ତା ନାଁ ରଖିଛି ଇସ୍‌ମାଇଲ୍,ଆବ୍ରହାମ୍‌କୁ ବୟସ ସେତେବେଳକୁ ଛୟାଅଶୀ ବର୍ଷ ।

ବୟସ ହେଲା ଯେତେବେଳେ ଅନେଶତ, ଈଶ୍ୱର ଆସି ଉଭାହେଲେ ଆବ୍ରାହାମ୍ ସମ୍ମୁଖରେ; କହିଲେ, ସର୍ବଶକ୍ତିମାନ୍ ମୁଁ ପରମେଶ୍ୱର, ଜାଗ୍ରତ ମୋ ଦୃଷ୍ଟି ସମ୍ମୁଖରେ ଏବେ ବିଚରଣ କର ଆଉ ସେଥିପାଇଁ ନିଜକୁ କର ପରିଶୁଦ୍ଧ । ଆଉ ମୁଁ ଯୋଉ ଅଙ୍ଗୀକାର କରିବି ତୁମ ସହିତ, ତା ଫଳରେ ତୁମେ ହେବ ଏକରୁ ବହୁ, ବହୁରୁ ବହୁତର ବହୁତମ । ଆବ୍ରାହାମ୍ ତତ୍‌କ୍ଷଣାତ୍ ସାଷ୍ଟାଙ୍ଗ ପ୍ରଣିପାତ କରିବାକ୍ଷଣି ଈଶ୍ୱର କହିଲେ, ଦେଖ, ତୁମ ସହିତ ଯୋଉ ଚୁକ୍ତିକଲି, ତା' ବଳରେ ତୁମେ ହେବ ବହୁଜାତିର ଜନକ । ତୁମକୁ କେହି ଆବ୍ରାମ୍ ଡାକିବେନାହିଁ, ଡାକିବେ ଆବ୍ରାହାମ୍, କାହିଁକିନା, ତମକୁ ମୁଁ କରିଦେଇଛି ବହୁଜାତିର ପିତା । ଆଉ ତୁମକୁ କରିବି ଅତିଶୟ ଫଳବାନ୍, ଯେପରିକି ତୁମେ ନିଜେ ହେବ ନାନାଦି ଜାତି, ଆଉ ତମଠିରୁଁ ଉପୁଜିବେ କେତେନାକେତେ ରାଜଚକ୍ରବର୍ତ୍ତୀ । ଆଉ ଖାଲି ତୁମ ସାଙ୍ଗରେ ନୁହେଁ, ତୁମ

ପୁତ୍ରପୌତ୍ରାଦିଙ୍କ ସହିତ ପୁରୁଷାନୁକ୍ରମେ ମଧ୍ୟ ପ୍ରତିଷ୍ଠାକରିବି ଏଇ ଚିରସ୍ଥାୟୀ ବନ୍ଦୋବସ୍ତ ଯେ ତୁମେ ନିଜେ ଲାଭକରିବ ଦେବତ୍ୱ ଆଉ ତୁମ ଉତ୍ତାରୁ ତୁମ ଉତ୍ତରସୂରୀ । ଆଉ ଦେବି ତୁମକୁ, ଆଉ ତୁମପରେ ତୁମ ଉତ୍ତରପୁରୁଷଙ୍କୁ, ସମଗ୍ର ଏଇ କ୍ୟାନାନ୍ ପ୍ରଦେଶ, ଯୋଉଠି ଆଜି ତୁମେ ଅଭ୍ୟାଗତ ପ୍ରବାସୀ । ଏ ଅଙ୍ଗୀକାର ରକ୍ଷାକରିବ ସଯତ୍ନ ଆଉ ତୁମ ବଂଶଧରସକଳ । ଆଉ ଯୋଉ ଅଙ୍ଗୀକାର ପାଳନକରିବ, ତା'ହେଲା, ତୁମେ ଆଉ ତୁମ ବଂଶଧର ପ୍ରତ୍ୟେକ, ପୁରୁଷସନ୍ତାନ ମାତ୍ରକେ, କରିବେ ଲିଙ୍ଗାଗ୍ର ତ୍ୱକ୍‌କୁ ଛେଦନ । ସେଇ ସୁନ୍ନତ୍ ହେବ ତୁମ ସହିତ ମୋ ଚୁକ୍ତିର ନିଦର୍ଶନ । ପରିବାର ଭିତରେ ଜନ୍ମିବେ ଯେତେ ପୁତ୍ରସନ୍ତାନ, ଅଥବା ଜ୍ଞାତିକୁଟୁମ୍ବ, କ୍ରୀତହୋଇ ଆସିବେ ଯଦି କେହି ବାହାରୁ, ଭୂମିଷ୍ଠହେବାର ଅଷ୍ଟମ ଦିବସରେ ବିନା ବ୍ୟତିକ୍ରମରେ ପାଳନକରିବେ ଏଇ ଅନୁଜ୍ଞା । ଏଇ ସୂତ୍ରରେ ଚିରସ୍ଥାୟୀ ହେବ ମୋ ନିର୍ବନ୍ଧ ତୁମ ରକ୍ତସ୍ରୋତରେ, ପ୍ରଜନ୍ମ ପଛକୁ ପ୍ରଜନ୍ମ । ଯୋଉ ଶିଶୁ ସୁନ୍ନତ ମାନିବନାହିଁ, ସ୍ୱତଃ ହେବ ଜ୍ଞାତିସମ୍ବନ୍ଧରୁ ବହିର୍ଭୂତ, ପରିଜନବର୍ଗଙ୍କ ପାଖରୁ ବିଚ୍ଛିନ୍ନ; ତାହାହିଁ ହେବ ଅବାଧ୍ୟତାର ଶାସ୍ତି ।

ଆଉ ଭାର୍ଯ୍ୟାକୁ ମଧ୍ୟ ନାଁଧରି ଡାକିବନାହିଁ ତୁମେ 'ସାରାଇ', । ଆଜିଠାରୁ ତା ନାଁ ହେବ ସାରାହ୍; ଆଉ ମୁଁ ତାକୁ କରିବି ବରଦାନ, ସାରାହ୍ ତୁମକୁ ଦେବ ନିଜ ଗର୍ଭଜାତ ଏକ ପୁତ୍ରସନ୍ତାନ । ଆଉ ସିଏ ନିଜେ ହେବ ବହୁଜାତିର ଜନନୀ, ବହୁ ନୃପତିଙ୍କ ଆଦିମାତା । ସେକଥା ଶୁଣି ଆବ୍ରାହାମ୍ ଭୂଇଁ ଉପରେ ମୁହଁମାଡ଼ି ଶୋଇପଡ଼ିଲା ଆଉ ମନେମନେ ହସିବାକୁ ଲାଗିଲା : ଶହେବର୍ଷ ବୟସରେ ବଳପାଇବ କୋଉଠୁ ଯେ ପାରିବ ପୁତ୍ର ଉପୁଜାଇ ? ଆଉ ନବେବର୍ଷ ବୟସରେ ସାରାହ୍ ପୁଣି କରିବ କେମିତି ଗର୍ଭଧାରଣ ? କହିଚି, ଇସ୍‌ମାଇଲ୍ ଉପରେ ତେବେ ଲକ୍ଷ୍ୟରହିଛି ଆପଣଙ୍କର ! ଈଶ୍ୱର କହିଲେ, ନା, ସାରାହ୍, ତୁମ ଧର୍ମପତ୍ନୀହିଁ ପ୍ରସବକରିବ ସେଇ କୁମାରକୁ, ଯା ନାଁ ହେବ ଆଇଜାକ୍; ଆଉ ତା ସହିତ ପ୍ରତିଷ୍ଠାକରିବି ଏକାଭଳି ନିର୍ବନ୍ଧ, ଆଉ ତା ପୂର୍ବଜଙ୍କ ସାଙ୍ଗରେ ଯେମିତି, ତା ଆତ୍ମଜଙ୍କ ସାଙ୍ଗରେ ବି ସେମିତି, ଚିରକାଳ । ଆଉ ଇସ୍‌ମାଇଲ୍ ସମ୍ବନ୍ଧରେ ଯା କହିଲ ସେକଥା ତ ଶୁଣିଲି: ସିଏ ମଧ୍ୟ ପାଇଛି ମୋ ଶୁଭାଶିଷ, ତାକୁ ମଧ୍ୟ କରିଦେବି ବହୁକୁଟୁମ୍ବୀ । ପୁରୁଷପୁଙ୍ଗବ, ଦ୍ୱାଦଶ ରାଜକୁମାର ବାହାରିବେ ତା ବୀଜରୁ, ଆଉ ସେଇ ସୂତ୍ରରେ, ସିଏ ବି ହେବ ଏକ ବିଶାଳଜାତିର ପୁରାଣପୁରୁଷ । କିନ୍ତୁ ଆଇଜାକ୍ ସହିତ ହେବ ଅଲଗା ନିର୍ବନ୍ଧ ଆଉ ସାରାହ୍ ତାକୁ

ଗର୍ଭରେ ଧାରଣକରିବ ଆସନ୍ତାବର୍ଷ ଠିକ୍ ଏଇ ତିଥିରେ । କହୁ କହୁଁ ଆବ୍ରାହାମ୍ ସମୀପରୁ ଅନ୍ତର୍ହିତ ହୋଇଗଲେ ପରମେଶ୍ୱର ।

ଆଉ କାଳବିଳମ୍ବ ନ କରି, ଇସ୍‌ମାଇଲ୍ ଆଉ ନିଜ ବଂଶରେ ଜାତ ଯେତେ ଅଣ୍ଡିରିପିଲା, ଆଉ କିଣିଆଣିଥିଲା ଯେତେ ଇତର ପିଲାଙ୍କୁ, ପରିବାରର ଅପରାପର ପୁରୁଷଙ୍କ ସହିତ ସମସ୍ତଙ୍କୁ ନେଇଯାଇ ସୁନ୍ନତ କରାଇଦେଲା ଆବ୍ରାହାମ୍ ସେଇଦିନ, ଆଉ ଦୈବାଦେଶ ଅନୁସରଣକରି ଅନେଶତବର୍ଷ ବୟସରେ ସୁଦ୍ଧା ନିଜ ଲିଙ୍ଗାଗ୍ରର ତ୍ୱକ୍ ଛେଦନକରିଛି ଆବ୍ରାହାମ୍ । ସୁନ୍ନତ ହେବାବେଳକୁ ଇସ୍‌ମାଇଲ୍‌କୁ ବୟସ ତେରବର୍ଷ । ବାପପୁଅ ଦୁହେଁଯାକ ସୁନ୍ନତହେଇଛନ୍ତି ଏକାଦିନ । ଆଉ ତାଙ୍କ ସାଙ୍ଗରେ ସୁନ୍ନତ ହେଇଛନ୍ତି ପରିବାରସ୍ଥିତ ବଂଶରେ ଜନ୍ମ ଅଥବା କ୍ରୀତହୋଇ ଆସିଥିବା ସକଳ ଆତ୍ମୀୟ ଓ ଇତର ପୁରୁଷ । (*ଜେନିସିସ୍ ୧-୧୭*)

ମାନବକୈନ୍ଦ୍ରିକ, ପୁରୁଷକୈନ୍ଦ୍ରିକ ଏକେଶ୍ୱରବାଦର ଏ ବିଶ୍ୱବୀକ୍ଷାକୁ ପ୍ରତ୍ୟାଖ୍ୟାନ କି ପରିତ୍ୟାଗ କରିନାହାନ୍ତି କେବେ ଯୀଶୁ । ଭୁଲ୍‌ରେ ସୁଦ୍ଧା କହିନାହାନ୍ତି, ଈଶ୍ୱରଙ୍କ ଏ ଅସମ ବିଧାନ ଯାଜକଶ୍ରେଣୀର ଭିଆଣ । ବିଦ୍ରୋହର ଉତ୍ସ ତେଣୁ ଅନ୍ୟତ୍ର ।



## ।। ତିନି ।।

ଯୀଶୁଙ୍କର ମଧ୍ୟ ଯଥାକାଳେ ସମ୍ପନ୍ନହୋଇଛି ସୁନ୍ନତ; ଅର୍ଥାତ୍, ତାଙ୍କ ସହିତ ମଧ୍ୟ ସ୍ଥାପିତହୋଇଛି ଈଶ୍ୱରଙ୍କ ପ୍ରାଗୁକ୍ତ ନିର୍ବନ୍ଧ । ମାତ୍ର, ଗସ୍‌ପେଲ୍‌ରେ ଆଉଏକ ଉଲ୍ଲେଖ ରହିଛି: ମୌଜେସ୍ ଆଉ ଏଲିଜା, ଯୀଶୁଙ୍କ ଆଧ୍ୟାତ୍ମିକ ବିକଚନ ପକ୍ଷରେ ଯାର ତାତ୍ପର୍ଯ୍ୟ ସବିଶେଷ । ଜେନିସିସ୍‌ରୁ ଦିଶୁଛି ଯୀଶୁଙ୍କ ଜନ୍ମର ପ୍ରାୟ ଉଣେଇଶଶହ ବର୍ଷ ଆଗରୁ ଇହୁଦୀ, ଅର୍ଥାତ୍ ଜ୍ୟୁଙ୍କ ପୂର୍ବପୁରୁଷ ଆବ୍ରାହାମ୍, ମଧ୍ୟପ୍ରାଚ୍ୟରୁ ବାହାରିପଡ଼ି ବୁଲିବୁଲି ଶେଷକୁ କ୍ୟାନାନ୍ ପ୍ରଦେଶରେ ହେଇଚ଼ନ୍ତି ସ୍ଥିତିବାନ୍; ଏବଂ ଆଦ୍ୟାବସ୍ଥାରେ ସିଏ ମଧ୍ୟ ଥିଲେ ପୌତ୍ତଳିକ । କୌଣସି କାରଣରୁ, ପ୍ରତିମାପୂଜା ପ୍ରତି ଜନ୍ମିଚି ଗଭୀର ବିରାଗ; ଈଶ୍ୱର ଦିଶିଚ଼ନ୍ତି ନିରାକାର, ନିର୍ବିକାର, ସର୍ବବ୍ୟାପୀ । ନ୍ୟାୟନୀତିହିଁ ତାଙ୍କ ଅସଲ ସ୍ୱରୂପ । କାହାରି କାହାରି ମତରେ ଏକେଶ୍ୱରବାଦ ହିଁ ଆବ୍ରାହାମ୍‌ଙ୍କୁ କରିଛି ଆତ୍ମୀୟସ୍ୱଜନଙ୍କ ପାଖରୁ ବିଚ୍ଛିନ୍ନ ଆଉ ଭିଟାମାଟି ତ୍ୟାଗକରିବାକୁ ବାଧ୍ୟ । ମାତ୍ର ତାଙ୍କ ମୃତ୍ୟୁର ଦୁଇ କି ଅଢେଇଶ' ବର୍ଷ ଭିତରେ ଦେଖାଯାଇଚି ଇହୁଦୀ ହେଇଗଲେଣି ପ୍ରତିବେଶୀ ରାଜ୍ୟ ମିଶରର ଫ୍ୟାରୋଙ୍କ ସେବାଦାସ; କିଏ କହୁଛି, କ୍ୟାନାନ୍‌ର ଇହୁଦୀଙ୍କୁ ଯୁଦ୍ଧରେ ପରାସ୍ତକରି ବନ୍ଦୀକରି ନେଇଯାଇଛି ମିଶର । ଆଉକିଏ କହୁଚି *ଓଲ୍ଡ ଟେସ୍ଟାମ୍ୟାଣ୍ଟ* ହିଁ ଠିକ୍; କ୍ୟାନାନ୍‌ରେ ଦୁର୍ଭିକ୍ଷପଡ଼ିବାରୁ ଇହୁଦୀ ସ୍ୱଇଚ୍ଛାରେ ପଳାଇଯାଇଛନ୍ତି ମିଶର, ନୀଳନଦୀ କୃପାରୁ ଯୋଉଠି ଶସ୍ୟ ଅଭାବହୋଇନାହିଁ କଦାପି । କାରଣ ଯା ହେଉ, ଇହୁଦୀ ଯାଇ ମିଶରରେ ଭୋଗିଚନ୍ତି ଚରମ ଦୁର୍ଗତି । ପୁରାତାତ୍ତ୍ୱିକ ପ୍ରମାଣ, ଦୁର୍ଦ୍ଦଶାର ବହୁ ଦୃଷ୍ଟାନ୍ତକୁ ଏବେ ସ୍ପଷ୍ଟକରିଚି । ନିଦାରୁଣ ସେଇ ଯାତନାରୁ ମୁକ୍ତକରି ଜ୍ୟୁଙ୍କୁ ଯିଏ ସ୍ୱଦେଶକୁ ଫେରାଇ ଆଣିଚନ୍ତି, ତାଙ୍କରି ନାଁ ମୌଜେସ୍ । 'ମୌଜେସ୍' ଶବ୍ଦର ଅର୍ଥ 'ପାଣିରୁ ଉଦ୍ଧାରକରାଯାଇଚି ଯାହାକୁ ।' ମିଶରର ରାଜକୁମାରୀ ଏଇ ଇହୁଦୀଶିଶୁକୁ ପାଣିରୁ ଉଠାଇନେଇ ବଡ଼ କରିଥିଲେ; କିନ୍ତୁ ରାଜପ୍ରାସାଦରେ ପାଳିତହେଲେ ସୁଦ୍ଧା, ବଡ଼ହୋଇ ମୌଜେସ୍ ଜାଣିପାରନ୍ତି, ନିଜେ ସିଏ ଇହୁଦୀ । ଦିନପରେ ଦିନ ଅବଶ୍ୟ ଦେଖିବାକୁ ପାଇଚନ୍ତି ଇହୁଦୀଙ୍କ ଉପରେ ମିଶରୀୟଙ୍କ

ଅତ୍ୟାଚାର, ଏବଂ ସେଇ ନିଗ୍ରହରୁ ସ୍ୱଜାତିକୁ ଉଦ୍ଧାରକରିବାକୁ ହୋଇଚ଼ନ୍ତି ମନେ ମନେ ବ୍ୟାକୁଳ; ଏବଂ କାଳକ୍ରମେ ଈଶ୍ୱରଙ୍କ କୃପା ଲାଭକରି ହେଇପାରିଚ଼ନ୍ତି ସିଦ୍ଧକାମ । ପ୍ରନ୍‌ବିତ୍ କହୁଚ଼ନ୍ତି, ଇହୁଦୀ ଜନଗୋଷ୍ଠୀକୁ ସାଙ୍ଗରେ ଧରି ମୌଜେସ୍ ମିଶର ତ୍ୟାଗକରିଚ଼ନ୍ତି ଖ୍ରୀଷ୍ଟପୂର୍ବ ୧ ୨ ୯ ୦ରେ, ଫ୍ୟାରୋ ଯେତେବେଳେ ଦ୍ୱିତୀୟ ର୍ୟାମେସିସ୍ । ଏବଂ, ଇହୁଦୀକୁଳକୁ ସେବାଦାସ ଅବସ୍ଥାରୁ, କୁଶଳ ପରିଚାଳନା ବଳରେ, ଉନ୍ନୀତକରିଚ଼ନ୍ତି ସ୍ୱାତନ୍ତ୍ର୍ୟପ୍ରିୟ ଏକ ବଦ୍ଧପରିକର ଲୋକଗୋଷ୍ଠୀକୁ । ଆଉ ଉଦ୍‌ଭାବନକରିଚ଼ନ୍ତି ଏପରି କେତେ ଅନୁଶାସନ, ଯା ଅଦ୍ୟାବଧି ଏକାତ୍ମକରିଚ଼ି ଭାଗ୍ୟାନୁସଂଧାନରେ ପୃଥିବୀସାରା ବିକ୍ଷିପ୍ତ ଇହୁଦୀଜନଜାତିକୁ । ସେ ଅନୁଶାସନ ଯିଏ ମାନେ ନା, ସିଏ ଜାତିଭ୍ରଷ୍ଟ । କାହିଁକିନା, ଏ ଅନୁଶାସନ ଏକାଧାରରେ ନୀତି ଆଉ ଚର୍ଯ୍ୟାବିଧି, ଧର୍ମ ଆଉ ରାଜତନ୍ତ୍ର, ଶ୍ରୁତି ଆଉ ସ୍ମୃତି । *ବାଇବେଲ୍*, କହୁଚ଼ି, ମୌଜେସ୍ କୁଆଡ଼େ ଦିବ୍ୟଦର୍ଶନ ଲାଭକରିଥିଲେ ଏକାଧିକ ବାର, ଯେତେବେଳେ ସ୍ୱୟଂ ପରମେଶ୍ୱର ଜ୍ୟୋତିରୂପରେ ପ୍ରକଟହୋଇ ଦେଇଥିଲେ କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଦ୍ଦେଶ । ଆଉ କହିଥିଲେ, ଇହୁଦୀଜାତିକୁ ପରିଜନଭାବେ ବରଣକରିଚ଼ନ୍ତି ନିଜେ, କାହିଁକିନା; ଏ ଆଶ୍ୱାସ ବହୁଆଗରୁ ଦେଇସାରିଚ଼ନ୍ତି ଆବ୍ରାହାମ୍‌ଙ୍କୁ; ସେ ଚୁକ୍ତି ଅନତିକ୍ରମ୍ୟ । ଏକମାତ୍ର ଉପାସ୍ୟ ବୋଲି ବିଶ୍ୱାସକରି ତାଙ୍କ ଅନୁଜ୍ଞାଗୁଡ଼ିକୁ ଯଦି ଶିରୋଧାର୍ଯ୍ୟ କରିବେ ଇହୁଦୀ, ପରମେଶ୍ୱର ବି ପରିତ୍ୟାଗ କରିବେନାହିଁ ଆପଣା ପରିଜନଙ୍କୁ; ଆଉ ଇହୁଦୀଙ୍କୁ ବିପଦବିପାକରୁ ରକ୍ଷାକରିବା ସଙ୍ଗେ ସଙ୍ଗେ ତାଙ୍କରି ଦ୍ୱାରାହିଁ ପ୍ରତିଷ୍ଠାକରିବେ ନ୍ୟାୟଧର୍ମ ଏଇ ଧରା ପୃଷ୍ଠରେ । ମୌଜେସ୍ ଯେତେବେଳେ ପଚାରିଲେ, ଇହୁଦୀ ତାଙ୍କୁ ଡାକିବେ କି ନାଁରେ, ପରମେଶ୍ୱର କହିଲେ, 'ଜିହୋଭା'(=ତତ୍‌ସତ୍), ଅର୍ଥାତ୍ ଅବାଙ୍‌ମାନସଗୋଚ଼ର । ମୂଳ ହିବ୍ରୁଶବ୍ଦ 'ଇୟାହ୍ୱେ'ର ଅପଭ୍ରଂଶ ଜିହୋଭା । ମର୍ମାର୍ଥ ହେଲା : ମିଶରରେ ଦୀର୍ଘକାଳ ବସବାସକରି, ଇହୁଦୀ ବିସ୍ମୃତହୋଇଥିଲେ ଆବ୍ରାହାମ୍‌ଙ୍କ ଏକେଶ୍ୱରବାଦ; ମିଶରବାସୀଙ୍କ ଅନୁକରଣରେ ପୂଜା କରୁଥିଲେ ଅସଂଖ୍ୟ ଦେବଦେବୀ, ଆଉ ପାଳନକରୁଥିଲେ ମିଶରରେ ଗୃହୀତ ଆଚାର-ଅନୁଷ୍ଠାନ । ରାଜପ୍ରାସାଦରେ ଲାଳିତପାଳିତ ବୈରାଗୀ କିନ୍ତୁ ନକ୍ଷତ୍ରଖଚିତ ଅନନ୍ତ ଅନ୍ଧାରରେ ଯେମିତି, ଦିଗନ୍ତବିଲୀନ ନିର୍ଜନ ମରୁପ୍ରାନ୍ତରରେ ସେମିତି, ଧ୍ୟାନସ୍ଥହୋଇ ଉପଲବ୍ଧି କରିଥିଲେ ସକଳ ଦେବଦେବୀଙ୍କ ଊର୍ଦ୍ଧ୍ୱରେ ପରମ ଅନିର୍ବଚ଼ନୀୟ ଏକ ସତ୍ତାର ଅସ୍ତିତ୍ୱ । ସର୍ବବ୍ୟାପୀ ସେଇ ଅସ୍ତିତ୍ୱକୁ ହୁଏତ ନାମିତ କରିଥିଲେ, ଜିହୋଭା । କିନ୍ତୁ ଜିହୋଭା ଯେହେତୁ ଅବୟବହୀନ, ମୂର୍ତ୍ତିଗଢ଼ି ପୂଜାକରିବା ବିବେଚିତ ହୋଇଚି ଘୋର ଅଧର୍ମ ।

*ଓଲ୍ଡ ଟେଷ୍ଟ୍ୟାମ୍ୟାଣ୍ଟ*ର ସାକ୍ଷ୍ୟ ଅନୁସାରେ ଭଗବାନ୍ ଜ୍ୟୋତିରୂପରେ ପ୍ରକଟହୋଇ ମୌଜେସ୍‌ଙ୍କୁ ଦେଇଥିଲେ ଦଶଟି ଅନୁଜ୍ଞା, ଅର୍ଥାତ୍, ମରୁପ୍ରାନ୍ତର ମଧ୍ୟସ୍ଥ ସିନାଇପର୍ବତ ଉପରେ ଏକାନ୍ତଧ୍ୟାନରେ ନିମଗ୍ନହେବା ଚାଳିଶଦିନ ଉତ୍ତାରୁ ମୌଜେସ୍ ଦେଖିବାକୁ ପାଇଲେ ସମ୍ମୁଖସ୍ଥ ଶିଳାଗାତ୍ରରେ ଖୋଦିତ ଦଶଟି ଅନୁଜ୍ଞା; ଶିଳାଦ୍ୱୟ ବହନକରି ସମତଳକୁ ଓହ୍ଲାଇଆସିଲେ ଆଉ ଇହୁଦୀଅନୁଚରଙ୍କୁ ପ୍ରଦର୍ଶନକଲେ ଈଶ୍ୱରଆଜ୍ଞା; . ସେଗୁଡ଼ିକ ଯଥାକ୍ରମେ: (୧) ପରମେଶ୍ୱରଙ୍କ ଆସନରେ ଆଉକୋଉ ଦେବଦେବୀଙ୍କୁ ବସାଇ ପୂଜାକରିବନାହିଁ; (୨) ଜଳସ୍ଥଳ ଅନ୍ତରୀକ୍ଷର ପ୍ରତିମା ଗଢ଼ି (=ପ୍ରାଣୀରୂପରେ କଳ୍ପନାକରି) ଅଥବା ଚିତ୍ରଆଙ୍କି ଈଶ୍ୱର ଜ୍ଞାନରେ ଆରାଧନା କରିବନାହିଁ; (୩) ପରମେଶ୍ୱରଙ୍କ ନାଁରେ ଶପଥ ନେବନାହିଁ; (୪) ସ୍ୟାବାଥ୍, ମାନେ, ଯୋଉ ଶନିବାର ଭଗବାନ୍ ସର୍ଜନାକର୍ମ ସମାଧାକରି ବିଶ୍ରାମନେଇଥିଲେ, ସପ୍ତାହରେ ସେଇ ଶନିବାର ଦିନଟି ନିଷ୍ଠାସହିତ ପାଳନକରିବ, ସେଦିନ ତେଣୁ କର୍ମରୁ ଅବସର, ଆମୋଦପ୍ରମୋଦ ପ୍ରତ୍ୟାହାର; (ଖ୍ରୀଷ୍ଟାନ୍ ପାଳୁଛନ୍ତି ରବିବାର) (୫) ପିତାମାତାଙ୍କ ପ୍ରତି ନିଃସର୍ତ୍ତ ଆନୁଗତ୍ୟ; (୬) ନରହତ୍ୟା (୭) ବ୍ୟଭିଚାର (୮) ପରସ୍ୱହରଣ ଭଳି କୁକର୍ମରେ କଦାଚ ଲିପ୍ତହେବନାହିଁ; (୯) ମିଥ୍ୟାସାକ୍ଷ୍ୟ ଦେବନାହିଁ, ଆଉ (୧୦) ପରଦ୍ରବ୍ୟ, ପରସ୍ତ୍ରୀ, ପରର ଧନଦଉଲତ କି ଦାସଦାସୀ, ପାଳିତ ପଶୁପକ୍ଷୀ, କାହାରି ଉପରେ ଲୋଭକରିବନାହିଁ ।

ମୌଜେସ୍ ସେତେବେଳକୁ ସ୍ଥବିର; ଇହୁଦୀଙ୍କ ପିତୃଭୂମି କ୍ୟାନାନ୍‌ରେ ପହଞ୍ଚି ପାରିନାହାନ୍ତି; ଦୂରରୁ ପ୍ରଣାମ କରି ଆଖିବୁଜିଛନ୍ତି । ଅତୃପ୍ତ ସେଇ ଆତ୍ମା କି କଥା କହିଚି ଧ୍ୟାନରତ ଯୀଶୁଙ୍କୁ ?

ବହୁକାଳ ଉତ୍ତାରୁ ଇହୁଦୀଙ୍କୁ ଫିଲିସ୍ଟାଇନ୍ ଉପଜାତି କବଳରୁ ମୁକ୍ତକରିଛନ୍ତି ରାଜା ଡେଭିଡ୍ । ସ୍ୱାଧୀନତା ଯେତେବେଳେ ବିପନ୍ନହୋଇଛି, ଇହୁଦୀସତୃଷ୍ଣ ନୟନରେ ଅନାଇଛନ୍ତି ଆକାଶକୁ; ଡେଭିଡ୍‌ଙ୍କ ବଂଶଜାତ କେହି ହୁଏତ ଅବତୀର୍ଣ୍ଣ ହୋଇ ହେବ ଅଗତିର ଗତି । ଆସିଥିଲେ ମଧ୍ୟ ଡେଭିଡ୍‌ପୁତ୍ର ସଲୋମନ୍; କିନ୍ତୁ ବ୍ୟସନରେ ମଜ୍ଜିଯାଇ କରଭାରରେ ଅତିଷ୍ଠକରିଛନ୍ତି ପ୍ରଜାଙ୍କୁ । ଅସୁମାରି ଦାସଦାସୀ, ସାତଶ' ରାଣୀ, ତିନିଶ' ଉପପତ୍ନୀ, ଚାରିଶ' ଘୋଡ଼ା, ବିଶାଳ ହର୍ମ୍ୟ । ସେଇ କରିଥିଲେ ଜେରୁସାଲେମ୍ ଧର୍ମମନ୍ଦିର ନିର୍ମାଣ, ସିଂହଦ୍ୱାର ହୋଇଥିଲା ସୁନାଛାଉଣି, ଚଟାଣ ମାର୍ବଲ, ବଳିଦାନର ବାସନକୁସନ ସୁନା, ନ ହେଲେ ରୁପା, ଗର୍ଭଗୃହରେ ନୌକାଆକାରରେ ସୁନାଛାଉଣି ସିନ୍ଦୁକ (ନୋହାଙ୍କ ସ୍ମୃତିରକ୍ଷା), ତା ଭିତରେ ରହିଚି ମୌଜେସ୍ ଆଣିଥିବା ଦଶଆଜ୍ଞାର

ପବିତ୍ର ଶିଳାଦ୍ୱୟ, ଆଉ ମରୁପର୍ଯ୍ୟଟନର ବିବାକ ସ୍ମୃତିଚିହ୍ନ । ସମ୍ମୁଖରେ ପ୍ରକାଣ୍ଡ ଯଜ୍ଞବେଦୀ । ସାତବର୍ଷ ଲାଗିଛି ସଲୋମନ୍‌ଙ୍କୁ ଦେଉଳର ମୁଣ୍ଡିମାରିବାକୁ । କିନ୍ତୁ ଏକେଶ୍ୱରବାଦ ଆଉ ନିର୍ମଳହୋଇ ରହିନାହିଁ । ସଲୋମନ୍‌ଙ୍କ ବିଦେଶିନୀ ରାଣୀ ନିରାକାର ପରମେଶ୍ୱରଙ୍କୁ ବୁଝି ପାରିନାହାନ୍ତି; ଜେରୁସାଲେମ୍‌କୁ ଆମଦାନିହୋଇଛି ବିଦେଶୀ ଦେବତା, ପୂଜାପାର୍ବଣ, ଆଚାର-ଅନୁଷ୍ଠାନ । ଜିହୋଭାଙ୍କ ଦେଉଳରେ ସୁଦ୍ଧା ସ୍ଥାନପାଇଛନ୍ତି ବିଜାତୀୟ ଠାକୁର । ସନ୍ଦେହ ନାହିଁ, ସାଧାରଣ ନରନାରୀ ପକ୍ଷରେ ସାକାର ଉପାସନା ଢେର୍ ବେଶି ଆବେଗମୟ, ଢେର୍ ବେଶି ବର୍ଣାଢ଼୍ୟ, ଢେର୍ ବେଶି ଇନ୍ଦ୍ରିୟଗ୍ରାହ୍ୟ । ମୌଜେସ୍ ଏକେଶ୍ୱରବାଦ ମାଧ୍ୟମରେ ଇହୁଦୀ-ଧର୍ମଚେତନାର ଯୋଉ ଐକ୍ୟ ସାଧନକରିଥିଲେ, ସଲୋମନ୍‌ଙ୍କ ରାଜତ୍ୱରେ ସେ ଐକ୍ୟ ହୋଇଯାଇଚି ଶିଥିଳ, ଉପଧର୍ମ ହୋଇଛନ୍ତି ପ୍ରବଳ; ଝାଡ଼ଫୁଙ୍କ ତାବିଜକବଚ ଗୁଣିଗାରିଡ଼ି ଜଡ଼ିବୁଟି ଭୂତପ୍ରେତ-ଏଇଗୁଡ଼ାକ ହେଇଛି ଧର୍ମାଚରଣର ବିଶେଷ ଲକ୍ଷଣ ।

ସଲୋମନ୍ ରାଜତ୍ୱକରିଛନ୍ତି ୩୮ବର୍ଷ; ଖ୍ରୀଷ୍ଟପୂର୍ବ ୯୨୬ରେ ତାଙ୍କ ନିଧନ ସଙ୍ଗେ ସଙ୍ଗେ ଏକଛତ୍ର ଇହୁଦୀରାଜ୍ୟ ଭାଙ୍ଗିଯାଇ ବାହାରିଚି ଯୋଡ଼ାଏ ସ୍ୱାଧୀନ ରାଷ୍ଟ୍ର; ଉତ୍ତର ଓ ମଧ୍ୟଭାଗ ମିଶି ଇସ୍‌ରାଏଲ୍ ଆଉ ଦକ୍ଷିଣରେ ଜୁଡା । ଇସ୍‌ରାଏଲ୍‌ର ରାଜଧାନୀ ରହିଛି ସ୍ୟାମେରିଆରେ, ଆଉ ଜୁଡାର ରାଜଧାନୀ ଜେରୁସାଲେମ୍; ମାତ୍ର ଦୁଇରାଜ୍ୟ ଭିତରେ ସମ୍ପର୍କ ଅହି-ନକୁଳ ! ଆତ୍ମକଳହ ଉଭୟ ରାଷ୍ଟ୍ରକୁ କରିଦେଇଛି ତେଣୁ ନିସ୍ତେଜ । ଏପରିକି, ଇସ୍‌ରାଏଲ ବର୍ଜନ କରିଛି ଜିହୋଭାଙ୍କ ପୂଜାଅର୍ଚ୍ଚନା; ଏକ୍ଷଣି ଇସ୍‌ରାଏଲ୍ ପ୍ରକାଶ୍ୟଭାବେ ପୌତ୍ତଳିକ । କୁହାଯାଇଛି, ଦାୟୀ ରାଜା ଆହାବ୍‌ଙ୍କ ଫିନିସିୟନ୍ ରାଣୀ ଜେଜେବ୍ଲ୍ । ଜିହୋଭାଙ୍କ ସିଂହାସନ ତେଣୁ ଦଖଲକରିଛନ୍ତି ବୃଷାରୂଢ଼ କନ୍ଦର୍ପ ଆଉ କାମେଶ୍ୱରୀ ଭୈରବୀ ଯାସେରା । ନରବଳି, ବିଶେଷତଃ ଶିଶୁବଳି, ଉଭୟଙ୍କ ପ୍ରିୟ ନୈବେଦ୍ୟ । ହେଲେସୁଦ୍ଧା, ଉଭୟ ରାଷ୍ଟ୍ର, ଇତିହାସ ଗତିରେ, ରକ୍ଷାକରି ପାରିନାହାନ୍ତି ସ୍ୱାଧୀନତା; ବରଂ ଯୋଉ ରାଜଶକ୍ତି ପ୍ରବଳ ହୋଇଛି, ବେଳକୁ ବେଳ ପଦାଘାତ କରିଛି ପାଲେଷ୍ଟାଇନ୍ ଛାତିରେ । ମିଶର, ଅ୍ୟାସେରିଆ, ବ୍ୟାବିଲନ୍, ପାରସ୍ୟ, ଗ୍ରୀସ୍, ରୋମ୍—କେହିହେଲେ ଛାଡ଼ିନାହାଁନ୍ତି । ମାତ୍ର, ଦୂରଦୂରାନ୍ତରୁ ଜେରୁସାଲେମ୍‌କୁ ତୀର୍ଥକରିବାକୁ ଆସି ଅଗଣିତ ଇହୁଦୀ ଜିହୋଭାଙ୍କ ବେଦୀ ସମୀପରେ ଗୁହାରି କରିଛନ୍ତି : ତମେ ତ କଥାଦେଇଥିଲ, ଆମେ ତୁମ ନିର୍ବାଚିତ ପରିଜନ ! ଏତେ କଷଣ କାହିଁକି ତେବେ ଆମ କପାଳରେ ? ଇହୁଦୀଙ୍କ ମନୋବାଞ୍ଛା ଆଜିସୁଦ୍ଧା ପୂର୍ଣ୍ଣହୋଇନାହିଁ । ତେବେ, ଏବେ ଯେମିତି, ରାଷ୍ଟ୍ରୀୟ ଏକତା ଏତେ ପ୍ରାଧାନ୍ୟ ପାଇନାହିଁ ସେତେବେଳେ,

ଆଧ୍ୟାତ୍ମିକ ବନ୍ଧନ ଜାତିଐକ୍ୟର ମୂଳଦୁଆ; ଭାବରେ ପ୍ରମାଣିତହୋଇଚି ଭଙ୍ଗୁର, ଯେପରି ଘଟିଚି ୧୯୭୧ ମସିହାର ପାକିସ୍ତାନ କ୍ଷେତ୍ରରେ ।

ଇହୁଦୀଭୂମି ଜୟକରି ବ୍ୟାବିଲନ୍ ବହୁଇହୁଦୀଙ୍କୁ ନେଇଯାଇଛି ସାଙ୍ଗରେ; ମନ୍ଦିର ଅଭାବରେ ମିଳିତ ହୋଇଛନ୍ତି ସେଠି ସଭାଗୃହରେ । ପାରସ୍ୟ ଯେତେବେଳେ ବ୍ୟାବିଲନ୍‌କୁ ପରାସ୍ତକରି ପଶ୍ଚିମ-ଏସିଆରେ ସ୍ଥାପନକଲା ସାମ୍ରାଜ୍ୟ, ଭାରତର ପଶ୍ଚିମପ୍ରାନ୍ତରୁ ମିଶର ଯାଏଁ, ସମ୍ରାଟ୍ ସାଇରସ୍ ଅନୁମତି ଦେଇଚନ୍ତି ପ୍ରବାସୀ ଇହୁଦୀଙ୍କୁ ସ୍ୱଦେଶକୁ ଫେରିଯିବାକୁ । ଫେରାଇଦେଇଛନ୍ତି ଜେରୁସାଲେମ୍ ମନ୍ଦିରରୁ ଲୁଣ୍ଠିତ ଧନରତ୍ନ । ଖାଲି ଇହୁଦୀଙ୍କ ସାଙ୍ଗରେ ନୁହେଁ, ତାବତ୍ ପରାଜିତ ଜାତି ସହିତ ସାଇରସ୍ କରିଥିଲେ ଏକାଭଳି ଶିଷ୍ଟ ବ୍ୟବହାର । ଖ୍ରୀଷ୍ଟପୂର୍ବ ୫୩୯, ବସନ୍ତଋତୁରେ, ଇହୁଦୀ ଛାଡ଼ିଛନ୍ତି ବ୍ୟାବିଲନ୍; ପ୍ରତିଷ୍ଠା ଯିଏ ପାଇଯାଇଥିଲେ,ରହିଗଲେ ବିଦେଶରେ, ଅର୍ଦ୍ଧଶତାବ୍ଦୀର ପ୍ରବାସଜୀବନ ତ ସାମାନ୍ୟ ବ୍ୟବଧାନ ନୁହେଁ । ଫେରିଆସିଥିଲେ ମୋଟ ୪୨,୩୬୦ ଜଣ । ତାଙ୍କ ଭିତରେ ଗାୟକ ଥିଲେ ପୁଣି ଦୁଇଶ'; ଆଠଶ'ମାଇଲ୍ ଗୀତଶୁଣିଶୁଣି ଚାଲିଛନ୍ତି ସ୍ୱଦେଶାଭିମୁଖୀ ଅଭିଯାତ୍ରୀ; ଅଧିକାଂଶ ଜନ୍ମିଛନ୍ତି କିନ୍ତୁ ବ୍ୟାବିଲନ୍‌ରେ । ଦେଢ଼ହଜାର ବର୍ଷ ପୂର୍ବେ କୁଳପତି ଆବ୍ରାହାମ୍, ଯୋଉ ରାସ୍ତାଧରି କ୍ୟାନାନ୍ ଆସିଥିଲେ, ଇଏ ବି ଧରିଛନ୍ତି ସେଇ ଏକାବାଟ; ଏମିତି ଉଗ୍ର ଇହୁଦୀଙ୍କ ଜାତିସ୍ମୃତି ! କିନ୍ତୁ ମନ୍ଦିର ନୁହେଁ, ସେମାନେ ଅଭ୍ୟସ୍ତ ସିନ୍ୟାଗଗ୍‌ରେ । ଜୁଡାବାସୀ ଏ ଇହୁଦୀ, ଯାଯାବର ଅବସ୍ଥାନ ସତ୍ତ୍ୱେ ଜାତିଗତ ବୈଶିଷ୍ଟ୍ୟ ବଜାୟରଖିଥିଲେ ବୋଲି, ଆଖ୍ୟାପାଇଲେ 'ଜ୍ୟୁ' । ମାତ୍ର ଜୁଡା (ଗ୍ରୀକ୍‌ଭାଷାରେ ଜୁଡିୟା)ର ଆୟତନ ସଙ୍କୁଚିତ ହୋଇହୋଇ ଠେକିଚି ଆସି ହଜାରେ ବର୍ଗମାଇଲ୍‌ରେ; ଉତ୍ତରକୁ କିଛିଅଂଶ ସ୍ୟାମାରିଟୋନ୍ ଆଉ ଦକ୍ଷିଣକୁ କିଛିଅଂଶ ଏଡୋମାଇଟ୍ କରିସାରିଛନ୍ତି ଆତ୍ମସାତ୍ । ପ୍ୟାଲେଷ୍ଟାଇନ୍‌ର ଅଣ-ଇହୁଦୀ ଉପଜାତି ଏମାନେ । ଦେଶ ଛୋଟହୋଇଯାଇଛି, ଗୋଟାଏ ପାଖ ପୁଣି ମରୁଭୂମି; ବଣଖଜୁରି ଆଉ କଣ୍ଟାଗଛ ଛଡ଼ା ଆଉକିଛି ଜନ୍ମେନା, ଜୁଡା ଜୟକଲାବେଳେ ବ୍ୟାବିଲନ୍ ପୁଣି ଗାଁଗଣ୍ଡା ସବୁ ପୋଡ଼ିଦେଇଛି; ସେଇ ଭଗ୍ନସ୍ତୂପ ଏକ୍ଷଣି ପ୍ରତ୍ୟାଗତ ଇହୁଦୀଙ୍କ ଆଶ୍ରୟ; ସ୍ୱର୍ଣ୍ଣପ୍ରସୂ ସୁଖ୍ୟାତି ସତ୍ତ୍ୱେ, ଚାଷ କି ବାସ, କୋଉଟାହେଲେ ଏକ୍ଷଣି ସହଜ ନୁହେଁ । ଦୈନ୍ୟ ଉପରେ ତେଣୁ ଦୁର୍ଭିକ୍ଷ ।

ଦୁର୍ଗତି ଉତ୍ସାହକୁ କ୍ଷୀଣକରିଦେବା କଥା, ମାତ୍ର ଇହୁଦୀଜାତିର ମନୋବଳ କିମ୍ବଦନ୍ତୀ; କେତେ ପ୍ରତିକୂଳତା ପାରହୋଇ ଆସିଛନ୍ତି, ଇତିହାସହିଁ ସାକ୍ଷୀ । ପ୍ରଥମକାମ ହୋଇଛି ଜେରୁସାଲେମ୍ ଧର୍ମମନ୍ଦିରର ପୁନଃନିର୍ମାଣ; କାହିଁକିନା, ଜିହୋଭାଙ୍କ ଦେଉଳ

ଇହୁଦୀକୃଷ୍ଟିର ପ୍ରାଣକେନ୍ଦ୍ର । ପାରସ୍ୟସମ୍ରାଟ୍ ବାଧା ଦେଇନାହାନ୍ତି, ବାଧା ଦେଇଛନ୍ତି ପ୍ରତିବେଶୀ ସ୍ୟାମେରିଟାନ୍; କହିଛନ୍ତି, ଡେଭିଡ୍ ନାହାନ୍ତି କି ସଲୋମନ୍ ନାହାନ୍ତି, ଜେରୁସାଲେମ୍‌ରେ ଆଉ କାହିଁକି ? ବରଂ ସ୍ୟାମେରିଆରେ ଅଛି ପ୍ରାଚୀନ ଯୋଉ ପୀଠ, ତୋଳାଯାଉ ସେଇଠି ଦେଉଳ । ଜୁଡିୟାନ୍ ବା ମାନନ୍ତେ କାହିଁକି ? ଅନ୍ତର୍ବିରୋଧ ମନ୍ଦିରନିର୍ମାଣକୁ ବିଳମ୍ବିତ କରିଚି ସତରବର୍ଷ, କିନ୍ତୁ ପାରସ୍ୟର ନୂଆସମ୍ରାଟ୍ ଦାରାୟୁସ୍ ଜାରିକରିଛନ୍ତି ଫର୍ମାନ୍; ମନ୍ଦିରପ୍ରତିଷ୍ଠା ତେଣୁ ସମାପ୍ତହୋଇଚି ଖ୍ରୀଷ୍ଟପୂର୍ବ ୫୧୬ରେ । ମାତ୍ର ଡେଭିଡ୍‌ଙ୍କ ବଂଶରେ କେହି ଜୀବିତନାହିଁ, ଇହୁଦୀଙ୍କର ତେଣୁ ରାଜା ନାହିଁ । ଦେଉଳର ବଡ଼ପଣ୍ଡାହିଁ ଜିହୋଭାଙ୍କ ପ୍ରତିନିଧି, ସେହିଁ କରିଛନ୍ତି ରାଜ୍ୟ ପରିଚାଳନା; ଏ ଶାସନତନ୍ତ୍ରକୁ ଗ୍ରୀକ୍‌ରେ କୁହାଯାଇଛି ଥିୟକ୍ର୍ୟାସି (=ଦେବତନ୍ତ୍ର) । ପାରସ୍ୟ ସମ୍ରାଟ୍ ବି ଦେଖିଛନ୍ତି, ଇହୁଦୀ ରାଜନୀତିରେ ଆଗ୍ରହୀ ନୁହେଁ, ଦେବତନ୍ତ୍ର ଉପରେ ତେଣୁ କରିନାହାନ୍ତି ହସ୍ତକ୍ଷେପ; କଟିଯାଇଛି ଏମିତି ପ୍ରାୟ ସତୁରିବର୍ଷ । ପୁରୋହିତଙ୍କ ସଂଖ୍ୟା ଅଳ୍ପ; ସେମାନେ କିନ୍ତୁ ସମ୍ପଦଶାଳୀ ଓ ଅଭିଜାତ । ନିରଙ୍କୁଶ କ୍ଷମତା ତାଙ୍କୁ ଧର୍ମପଥରୁ ଭ୍ରଷ୍ଟକରୁଛି ଦେଖି, ପାରସ୍ୟସମ୍ରାଟ୍ ଜଣେ ଇହୁଦୀ-କର୍ମଚାରୀଙ୍କୁ ଜୁଡାର ଗଭର୍ଣ୍ଣର୍‌କରି ପଠାଇଛନ୍ତି; ବାରବର୍ଷ ତାଙ୍କ ଶାସନକାଳ ଭିତରେ ଘଟିଛି ଦୁଇଟି ବଡ଼ ଘଟଣା; ଜେରୁସାଲେମ୍ ନଗର ଚାରିପଟରେ ପ୍ରାଚୀରନିର୍ମାଣ ଆଉ ଚାରିଦିଗରେ ଚାରିଟି ନଗରଦ୍ୱାର ସ୍ଥାପନ; ଆଉ ଆଚାର୍ଯ୍ୟ ଏଜ୍‌ରାଙ୍କ ପ୍ରତ୍ୟାଗମନ ବ୍ୟାବିଲନ୍‌ରୁ ଜୁଡା । ଦାରାୟୁସ୍ ଏଜ୍‌ରାଙ୍କୁ ଦାୟିତ୍ୱଦେଇଥିଲେ ପୁରୁଣା *ବାଇବେଲ୍‌*ର ଆଦ୍ୟୋପାନ୍ତ ସଂସ୍କାର, କାହିଁକିନା, ପୁରୋହିତତନ୍ତ୍ର ଧର୍ମକୁ କରିଦେଇଚି ସେତେବେଳକୁ ବିଧିବଦ୍ଧ ବାଣିଜ୍ୟ ।

ଏଜ୍‌ରା ନିଜେ ପୁରୋହିତବଂଶର ସନ୍ତାନ, ଶିଷ୍ୟ ଯଜମାନ ବି ପ୍ରଚୁର; ସମସ୍ତଙ୍କୁ ଘେନି ବ୍ୟାବିଲନ୍‌ରୁ ଆସିବାବେଳେ ସାଙ୍ଗରେ ବୋହିଆଣିଲେ ଇହୁଦୀ ଧର୍ମଶାସ୍ତ୍ରଗୁଡ଼ିକର ନାନାବିଧ ଟୀକା-ଭାଷ୍ୟ । ଇହୁଦୀଙ୍କ ଯାଯାବର ଅବସ୍ଥାନ ମୂଳ ଧର୍ମଗ୍ରନ୍ଥ ଅପେକ୍ଷା ଟୀକାଭାଷ୍ୟକୁହିଁ ସମ୍ବଳକରିଚି ବିଦେଶରେ । *ବାଇବେଲ୍‌*ର ପୁରୁଣା ବିଧାନ ଓ ନିଷେଧଗୁଡ଼ିକୁ ମାର୍ଜିତକରି ସମ୍ପାଦନାକରନ୍ତି ଏଜ୍‌ରା; ଆଉ ସଂଶୋଧିତ ସଂସ୍କରଣକୁ ଉପାଧ୍ୟାୟଲଗାଇ ନକଲକରି, ଲୋକଙ୍କ ଭିତରେ ପ୍ରଚାର । ନକଲନବିସ୍ ସେଇ ଉପାଧ୍ୟାୟଙ୍କୁ କୁହାଯାଏ 'ସ୍କ୍ରାଇବ୍' । ଏଜ୍‌ରା ବୁଝିଥିଲେ, ଛିନ୍ନଛତ୍ର ଇହୁଦୀ ଭୁଲିଯାଇଚି ହିବ୍ରୁଭାଷା; ପରମେଶ୍ୱରଙ୍କ ଆଦେଶ କି ରକମ, ମର୍ମ ଅବା କଣ, ଆପାମର ଜନସାଧାରଣ ନ ବୁଝିବାଯାଏଁ, ବାରଣ ନ ମାନି ପାପକରୁଛ ବୋଲି ହୁରି ଛାଡ଼ିବା ଅରଣ୍ୟରୋଦନ ମାତ୍ର । ତେଣୁ ଜେରୁସାଲେମ୍ ମନ୍ଦିର ପ୍ରାଙ୍ଗଣରେ ଗଭର୍ଣ୍ଣର୍‌ଙ୍କ

ଉପସ୍ଥିତିରେ ବିରାଟ ଜନସଭା ଡାକି ମୂଳଶାସ୍ତ୍ର ଓ ପରବର୍ତ୍ତୀ ଟୀକା-ଟିପ୍ପଣୀ ପଢ଼ିଶୁଣାଇଛନ୍ତି ଏଜ୍‌ରା ଏବଂ ହିବ୍ରୁ ପରିବର୍ତ୍ତେ ବ୍ୟାଖ୍ୟାକରିଛନ୍ତି ଆରାମାଇକ୍ କଥ୍ୟଭାଷାରେ । ତହିଁଉତାରୁ ଇତର-ଭଦ୍ର ସମାଗତ ଜନତା ସ୍ୱୀକାରକରିଛନ୍ତି, ନୂଆ ପୁରୁଣା ସକଳ ବିଧାନ ପାଳନକରିବେ ନିଃସର୍ତ୍ତ । ସ୍ୟାବାଥ୍‌ଦିନ ଘର ଘର ବୁଲି ଉପାଧ୍ୟାୟ ଧର୍ମଶିକ୍ଷା କରିଚ୍ଛନ୍ତି ବିତରଣ; ସିନ୍ୟାଗଗ୍‌ରେ ମଧ୍ୟ ଚର୍ଚ୍ଚା କରାଯାଇଛି । ମାତ୍ର ଆଚାର୍ଯ୍ୟ ଏଜ୍‌ରା ଧର୍ମସଂରକ୍ଷଣକଳ୍ପେ ଆଉଯୋଉ କାମଟି କରିଛନ୍ତି, ଏବେକା ପରିଭାଷାରେ, ତା ମୌଳବାଦ । ବ୍ୟାବିଲନ୍‌ରୁ ଜୁଡା ଫେରିଆସି ବହୁଇହୁଦୀ ପୁରୁଷ ଅଣ-ଇହୁଦୀ ଝିଅଙ୍କୁ ବାହାହୋଇପଡ଼ିଥିଲେ; ଖାଣ୍ଟି ଇହୁଦୀ ଗୃହଧର୍ମରୁ ବିଚ୍ୟୁତହୋଇଚ୍ଛନ୍ତି ସେଥିପାଇଁ; ସ୍ଖଳନ ରୋଧକରିବାକୁ ବିବାହବିଚ୍ଛେଦର ଫର୍‌ମାନ୍ ଜାରିକରିଦେଲେ ଏଜ୍‌ରା । ଧର୍ମ ରକ୍ଷା ହୋଇଥିଲା କି ନାହିଁ, କହିହେବନାହିଁ, ଜାତି ରକ୍ଷାହୋଇଚି ନିଶ୍ଚୟ । ଜେରୁସାଲେମ୍ ବାହାରେ, ମିଶର ମେସୋପଟାମିଆ ବ୍ୟାବିଲନ୍ ସିରିଆ। ପ୍ରଭୃତି ଜାଗାରେ ଗଢ଼ିଉଠିଛି ସେତେବେଳକୁ ଅନେକ ଇହୁଦୀ-ଉପନିବେଶ; ନୂତନ ଏଇ ବିଧାନ ସେଠି ବି ଯାଇ ବିସ୍ତାର ଲାଭକରିଛି ପୁରୋହିତ କର୍ତ୍ତୃକ, ଏବଂ ସେଇ ସୂତ୍ରରେ, ପୁରୋହିତତନ୍ତ୍ର ମଧ୍ୟ ବିଶ୍ୱାସଭାଜନ ଓ ପ୍ରଭାବଶାଳୀ ହୋଇଉଠିଛି ଜନସମାଜରେ । ପାରସ୍ୟର ନାମମାତ୍ର ପ୍ରଜାହୋଇ କୂପମଣ୍ଡୂକ ଇହୁଦୀ ବରଂ ଭଲରେ ଥିଲେ, ମାତ୍ର ଖ୍ରୀଷ୍ଟପୂର୍ବ ୪୯୦ରେ ଗ୍ରୀସ୍ ପରାଜିତ କରିଛି ଦାରାୟୁସ୍‌ଙ୍କୁ ମ୍ୟାରାଥନ୍ ଯୁଦ୍ଧକ୍ଷେତ୍ରରେ, ଏବଂ ତା ପଛକୁ ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାର୍‌ଙ୍କ ଆବିର୍ଭାବ । ପୂର୍ବଦିଗକୁ ଯିବାକୁହେଲେ ଗ୍ରୀସ୍‌ର ପ୍ରଥମ ଲକ୍ଷ୍ୟ ମିଶର, ମାତ୍ର ମଝିରେ ପଡ଼ିଲା ପାଲେସ୍ଟାଇନ୍ । ଭୂମଧ୍ୟସାଗରର ପଶ୍ଚିମ ଉପକୂଳରେ ଫିନିସିୟନ୍ ବାଧାଦେଇଛନ୍ତି, ବାଧାଦେଇଛନ୍ତି ମଧ୍ୟାଞ୍ଚଳରେ ସ୍ୟାମେରିଟାନ୍; ତାସ୍‌ରେ ତିଆରି ମିନାର୍ ଭଳି ପ୍ରତିରୋଧ ହୋଇଚି ଧୂଳିସାତ୍ । ଗ୍ରୀକ୍‌ନାମ ଗ୍ରହଣକରି ଜୁଡା ହୋଇଛି ଜୁଡିୟା । ଇହୁଦୀଙ୍କୁ ପରାସ୍ତ କରିଚନ୍ତି ସିନା, ପ୍ରଜାଙ୍କ ଜୀବନଚର୍ଯ୍ୟାର ବିଶିଷ୍ଟ ରୂପଟିକୁ ସ୍ପର୍ଶ କରିନାହାନ୍ତି ଗ୍ରୀକ୍‌ବୀର । କାଳକ୍ରମେ ଗ୍ରୀସ୍ ବି ବସାଇଚି ସାମ୍ରାଜ୍ୟ; ମାତ୍ର ସେ ପେଡେକ୍ଲିଜ୍, ସକ୍ରେଟିଜ୍, ପ୍ଲାଟୋଙ୍କ ଗ୍ରୀସ୍ ନୁହେଁ; ସେଠି ଯୋଉ ନବ୍ୟସଂସ୍କୃତି ମୁଣ୍ଡଟେକିଛି, ପାର୍ଥକ୍ୟ ବୁଝାଇବାକୁ, ବିଦ୍ୱାନ୍ ତା ନାଁ ଦେଇଛନ୍ତି 'ହେଲେନିକ୍ସ' । ମାଥ୍ୟୁ ଆର୍‌ନଲ୍ଡ୍ ଇଂଲଣ୍ଡର ଅବକ୍ଷୟ ବୁଝାଇବାକୁ ଯୋଉ ବହି ଲେଖିଛନ୍ତି, *କଲଚର୍ ଆଣ୍ଡ୍ ଆନାର୍କି*, ହେଲେନିକ୍ସ ସେଠି 'ସୁଇଟ୍‌ନେସ୍ ଆଣ୍ଡ୍ ଲାଇଟ୍'; ତା ପ୍ରତିପକ୍ଷ ହେବ୍ରାଇଜ୍ମ (= ହିବ୍ରୁସଂସ୍କୃତି) ତେଣୁ 'ଆନାର୍କି', ଏବଂ ସେ ଅରାଜକତାର ପ୍ରତୀକ 'ଫିଲିଷ୍ଟାଇନ୍', ଅର୍ଥାତ୍

ପାଲେଷ୍ଟାଇନ୍‌ବାସୀ ଇହୁଦୀ; ଜାତି-ଉପଜାତି ଦଳ-ଉପଦଳରେ ବିଭାଜିତ ବିଶୃଙ୍ଖଳ ଜନତା ! ଆରିଷ୍ଟୋଟଲ୍‌ଙ୍କ ପ୍ରିୟଶିଷ୍ୟ ମ୍ୟାସିଡୋନିଆର ଏ ରାଜକୁମାରଙ୍କ ଗୋଟେହାତରେ ଥିଲା କୃପାଣ ଆଉ ଆରହାତରେ ପୋଥି; କିନ୍ତୁ ଗ୍ରୀକ୍ ଜ୍ଞାନମଣ୍ଡଳର ହୀରକ-କଠିନ ସଂଯମ ଚପଳହେବାକୁ ଆରମ୍ଭକରିଛି ସେତେବେଳକୁ; ତରଳୀକୃତ ସେଇ ହେଲେନିଜ୍ମ ହୋଇଚି ରାଜ୍ୟବିସ୍ତାରର ଅଙ୍ଗୀଭୂତ । ଖ୍ରୀଷ୍ଟପୂର୍ବ ୩୨୩ରେ ବ୍ୟାବିଲନ୍‌ରେ ଜ୍ୱରାକ୍ରାନ୍ତ ଆଲେକ୍‌ଜାଣ୍ଡାର ତ୍ୟାଗକରିଛନ୍ତି ଶେଷନିଃଶ୍ୱାସ; ମାତ୍ର ୩୩ବର୍ଷ ବୟସରେ । ତହିଁ ଉତ୍ତାରୁ, ସେନାପତିଙ୍କ ଭିତରେ ଭାଗହୋଇଯାଇଛି ସାମ୍ରାଜ୍ୟ; ମିଶର ଓ ପାଲେଷ୍ଟାଇନ୍ ପଡ଼ିଛି ଟଲେମିଙ୍କ ଭାଗରେ । ଆଉ, ଇହୁଦୀ ରହିଛନ୍ତି ତାଙ୍କ ଶାସନାଧୀନ ଦୀର୍ଘ ୧୨୫ ବର୍ଷକାଳ; ମାତ୍ର ଇହୁଦୀଙ୍କ ଦିନଗତ ଜୀବନଯାତ୍ରାରେ ସିଏ ମଧ୍ୟ ହସ୍ତକ୍ଷେପ କରିନାହାନ୍ତି କଦାପି । ସମ୍ଭବତଃ ସେଇ କାରଣରୁ କୂର୍ମବୃତ୍ତି ଅବଲମ୍ବନକରୁଥିବା ଇହୁଦୀଙ୍କ ଭିତରେ ହେଲେନିଜ୍ମ ଆପଣା କାମ କରିଯାଇଛି ଅଲକ୍ଷ୍ୟରେ । ଅର୍ଥାତ୍, ସମାଜର ଉପରସ୍ତରରେ ତିଆରିହୋଇଛି ଏକ ବୁର୍ଜୋୟାଶ୍ରେଣୀ, ଧନସମ୍ପଦ ଓ ଶିକ୍ଷାଦୀକ୍ଷାରେ ଯିଏ ସର୍ବୋଚ୍ଚ ଏବଂ ଜୀବନଶୈଳୀର ଦୃଶ୍ୟତଃ ଗ୍ରୀକ୍‌ସଂସ୍କୃତି ପ୍ରଭାବରେ ଉନ୍ନାସିକ । ତାଙ୍କ ଭିତରେ ରହିଛି, ରହିବା ସଙ୍ଗତମଧ୍ୟ, ଇହୁଦୀ ଯାଜକ ସମ୍ପ୍ରଦାୟ । ଇହୁଦୀଶାସ୍ତ୍ରର ବଚନ ଏବେ ଆଉ ଆପ୍ତବାକ୍ୟ ମନେହୁଏନା, ଏବଂ ଏ ପ୍ରକ୍ରିୟାରେ ସହାୟତା କରିଛି ମିଶରସ୍ଥିତ ଇହୁଦୀ-ଉପନିବେଶ, ଆଲେକ୍‌ଜାଣ୍ଡ୍ରିଆ । ନିର୍ବାସନଦଣ୍ଡ ପାଇ ଏ ଇହୁଦୀ ଜୁଡ଼ାରୁ ବ୍ୟାବିଲନ୍ ଯାଇନାହାନ୍ତି, ଯାଇଚନ୍ତି ମିଶର; ଆଉ ଫେରିନାହାନ୍ତି । ଦୁଇଜଣଯାକ ଟଲେମି ଆଲେକ୍‌ଜାଣ୍ଡ୍ରିଆକୁ କରିଦେଇଥିଲେ ବୃହତ୍ ଏକ ସଂସ୍କୃତିକେନ୍ଦ୍ର, ଯା ଗ୍ରନ୍ଥାଗାରରେ ରକ୍ଷିତଥିଲା ଅନ୍ୟୂନ ହଜାରେ ହାତଲେଖା ପୋଥି; ସେଠିକା ଇହୁଦୀଙ୍କ ମାତୃଭାଷା ମଧ୍ୟ ହୋଇଯାଇଛି ଗ୍ରୀକ୍ । ଧର୍ମର ଐତିହ୍ୟ ତାଙ୍କୁ ବୁଝାଇବା ସକାଶେ ଦ୍ୱିତୀୟ ଟଲେମି ଧର୍ମାଚାର୍ଯ୍ୟଙ୍କୁ ପାଲେଷ୍ଟାଇନ୍‌ରୁ ଡାକିଆଣି, *ଓଲ୍ଡ ଟେଷ୍ଟାମ୍ୟାଣ୍ଟ*କୁ ଆମୂଳଚୂଳ ତର୍ଜମା କରାଇନେଇଚନ୍ତି ଗ୍ରୀକ୍‌କୁ । ଫଳତଃ, ନିଜ ଧର୍ମଶାସ୍ତ୍ରକୁ ଗ୍ରୀକ୍-ଦର୍ଶନ ଆଲୋକରେ ଦେଖିବାକୁ ଶିଖିଚନ୍ତି ଇହୁଦୀ । ଏବଂ ସେଇ ସୂତ୍ରରେ, ଜୁଡିୟାସ୍ଥିତ ଇହୁଦୀ ମଧ୍ୟ ଭୂୟୋଦର୍ଶନକୁ ଆଚାରଅନୁଷ୍ଠାନ ଉପରେ ବସାଇବାକୁ କରିଚନ୍ତି ଉପକ୍ରମ । ମାତ୍ର ସମାଜର ମଧ୍ୟବର୍ତ୍ତୀଅଂଶ ଓ ନିମ୍ନବର୍ଗ ହୋଇନାହାନ୍ତି ଅଭିଭୂତ, ସେଇମାନେ ତ ଯେକୌଣସି ସମାଜର ଅସଲ ଧାରକ । ସନାତନପନ୍ଥୀ ଏଇ ସମାଜର ଅଧିକାଂଶ ଲୋକଙ୍କୁ ତେଣୁ ହେଲେନିଜ୍ମ ଲାଗିଚି ସତେ ଯେମିତି ଅସ୍ପୃଶ୍ୟ; କାହିଁକିନା, ହେଲେନିଜ୍ମ ପ୍ରଭାବ ବା କୁପ୍ରଭାବରୁ କାମତନ୍ତ୍ରଛୁଆଁ

ପୌତ୍ତଳିକତା ଦେଖାଦେଇଛି ଅଭିଜାତ ଏଲିଟ୍ ଭିତରେ କ୍ୱଚିତ୍ କଦାଚିତ୍ । ହେଲେନିଜ୍ମର ଚେର ତେଣୁ ସମାଜର ଅନ୍ତଃସ୍ଥଳକୁ ଭେଦିପାରିନାହିଁ ।

ମାତ୍ର, ଖ୍ରୀଷ୍ଟପୂର୍ବ ୧୯୮ରେ ଟଲେମିଙ୍କ ହାତରୁ ପାଲେଷ୍ଟାଇନ୍ ଚାଲିଯାଇଛି ସେଲୁସିଡ୍‌ଙ୍କ ଆୟତ୍ତକୁ । ପାଲେଷ୍ଟାଇନ୍‌କୁ ସିରିଆ ସାଙ୍ଗରେ ମିଶାଇଦେଲେ ବି ରୋମ୍ ଡରରେ ମିଶର ଭିତରକୁ ପଶିପାରିନାହାନ୍ତି ସେଲୁସିଡ୍ । ସିରିଆ ଅଧୀନରେ ଇହୁଦୀ ତଥାପି ରହିଛନ୍ତି ପ୍ରାୟ ପଚାଶବର୍ଷ ଏବଂ ନିର୍ବିରୋଧରେ; ହେଲେସୁଦ୍ଧା, ସନାତନପନ୍ଥୀ ଇହୁଦୀ ଓ ହେଲେନିଜ୍ମ-ପକ୍ଷପାତୀ ଇହୁଦୀଙ୍କ ଭିତରେ ରଫାହୋଇପାରିନାହିଁ; ଆଉ ଶାସକଶ୍ରେଣୀ ହେଲେନିଜ୍ମ-ପ୍ରବଣ ହେବା ହେତୁ ସାଧାରଣ ପ୍ରଜା ସହିତ ବ୍ୟବଧାନ ହୋଇଛି ମଧ୍ୟ ପ୍ରଶସ୍ତ । ଅର୍ଥାତ୍, ଇହୁଦୀଙ୍କ ଭିତରେ ଦେବତନ୍ତ୍ର ରହିଛି ଅକ୍ଷୁଣ୍ଣ; ମାତ୍ର ସେଲୁସିଡ୍ ରାଜା ଚତୁର୍ଥ ଆଣ୍ଟିୟକସ୍ ଖ୍ରୀଷ୍ଟପୂର୍ବ ୧୯୫ ରେ ଘୋଷଣାକରିଛନ୍ତି ନିଜକୁ 'ମୂର୍ତ୍ତିମନ୍ତ ଈଶ୍ୱର' ଏବଂ ପାଲେଷ୍ଟାଇନ୍‌ରେ ଥିଲା ଯେତେ ମଠ ମନ୍ଦିର ଧର୍ମସ୍ଥାନ, ତମାମ ସମ୍ପତ୍ତିକୁ କାଢ଼ିନେଇ କରିଚ଼ନ୍ତି ରାଜଭଣ୍ଡାରର ଅନ୍ତର୍ଭୁକ୍ତ, ଜେରୁସାଲେମ୍‌ର ଦେଉଳ ବି ଆକ୍ରାନ୍ତହୋଇଛି ଦୁଇଥର, ଦେଉଳର ଗଚ୍ଛିତ ଧନରତ୍ନ ଚାଲିଯାଇଛି ଦାମାସ୍କସ୍ । ସେତିକିରେ କ୍ଷାନ୍ତ ନହୋଇ ଜିହୋଭାଙ୍କ ପୂଜାବେଦୀ ଉପରେ ରଜା ଦେଇଛନ୍ତି ଶୂକରବଳି, ଆଉ ଜିହୋଭାଙ୍କ ଆସନରେ ବସାଇଦେଇଛନ୍ତି ଗ୍ରୀକ୍ ଦେବାଦିଦେବ ଜିଉସ୍‌ଙ୍କ ପ୍ରତିମା । ଅର୍ଥାତ୍, ନିରାକାର ଆରାଧନା ତ ଶେଷକରିଦେଇଛନ୍ତି, ତା' ସାଙ୍ଗକୁ ଶୂକର ବଳିଦେଇ ଇହୁଦୀଙ୍କ ଧର୍ମଚେତନାକୁ ଲାଞ୍ଛିତକରିଛନ୍ତି ବିଦ୍ୱେଷରେ । ସଂଘାତ ଥିଲା ତେଣୁ ଅନିବାର୍ଯ୍ୟ । ସେ ସଂଘାତକୁ ଦମନକରିବା ସକାଶେ, ଜିହୋଭାଙ୍କୁ ବଳି ନିବେଦନ, ସୁନ୍ନତ, ସ୍ୟାବାଥ୍, ଏପରିକି ଇହୁଦୀଶାସ୍ତ୍ରକୁ ଘରେ ରଖିବାକୁ ସୁଦ୍ଧା ରଜା କରିଦେଲେ ପ୍ରାଣଦଣ୍ଡଯୋଗ୍ୟ ଅପରାଧ । ଇହୁଦୀ ଧର୍ମାଚାର ସମ୍ପର୍କିତ ଗ୍ରନ୍ଥାଦି ବାଜ୍ୟାପ୍ତକରି ପୋଡ଼ିଦିଆଗଲା ଜାଗାବଜାଗା । ଫଳ ହେଲା, ଇହୁଦୀ ତ ଗ୍ରୀକ୍ ହେଲେନାହିଁ, ବରଂ ହେଲେନିଜ୍ମ ଗ୍ରହଣକରିଥିଲେ ଯୋଉ ବୁର୍ଜୋୟା, ସିଏ ସୁଦ୍ଧା ସର୍ବସାଧାରଣଙ୍କ ପୁରୋଭାଗରେ ଛିଡ଼ାହୋଇ ସଂଗଠିତକଲେ ପ୍ରତିରୋଧ । ଇହୁଦୀ ଇତିପୂର୍ବରୁ ବହୁବାର ବିଦେଶୀ ଆଧିପତ୍ୟ ବରଦାସ୍ତ କରିଛନ୍ତି, ବିଦେଶୀ ଶାସକର ଖାମଖେୟାଲ ଅପରିଚିତ କୋଉ ଉପସର୍ଗ ନୁହେଁ ତାଙ୍କ ପାଇଁ; ଟ୍ୟାକ୍ସ ଉପରେ ଟ୍ୟାକ୍ସ, ବେଠିବେଗାରି, ଝିଅବୋହୂଙ୍କ ଉପରେ ବଳାତ୍କାର, ଦେଶରୁ ଦେଶାନ୍ତର ନିର୍ବାସନ ବିବାକ ହୋଇଯାଇଛି ଦିହସୁହା । ମାତ୍ର ପିତୃପିତାମହଙ୍କ ଧର୍ମକୁ ଏମିତି ମର୍ମାନ୍ତିକ ନିଗ୍ରହ କେହି କେବେ କରିନାହିଁ, ଯେମିତି

କରିଚି ଚତୁର୍ଥ ଆଣ୍ଟିୟକସ୍ । ତେଣୁ ଝିମିଟିଖେଳରୁ ସୃଷ୍ଟିହୋଇଛି ମହାଭାରତ । ଜେରୁସାଲେମ୍‌ରୁ କୋଡ଼ିଏମାଇଲ୍ ଉତ୍ତର-ପଶ୍ଚିମକୁ ଗୋଟାଏ ପଥୁରିଆ ଜଙ୍ଗଲାକୀର୍ଣ୍ଣ ଗାଁ; ସେ ଗାଁର ବୃଦ୍ଧ ପୁରୋହିତ, ମ୍ୟାଟାଥାଇୟସ୍, ସିରିଆର ରାଜକର୍ମଚାରୀଙ୍କ ଜୋର୍‌ଜୁଲମ୍‌ର ପ୍ରତିବାଦ କରିଥିଲେ; ସିପେଇ ଭ୍ରୂକ୍ଷେପ କଲେନାହିଁ, ବରଂ ଜଣେ ଗ୍ରାମବାସୀକୁ ପ୍ରାଣଭୟ ଦେଖାଇ ଶୂକର ବଳିଦେବାକୁ ବାଧକଲେ । ଉତ୍‌କ୍ଷିପ୍ତ ମ୍ୟାଟାଥାଇୟସ୍ ତା' ହାତରୁ ଖଣ୍ଡା କାଢ଼ିନେଇ, ଆଗେ ଇହୁଦୀ ଘାତକକୁ, ତା ପଛକୁ ସିରିଆନ୍ ରାଜପୁରୁଷକୁ ହାଣି ଗଡ଼ଗଡ଼ କରିଦେଲେ; ଅପବିତ୍ର ଯଜ୍ଞବେଦୀକୁ ବି ଭାଙ୍ଗି ଚୂର୍‌ମାର୍ କରିଦେଲେ । ଆଉ, ସମବେତ ଗ୍ରାମବାସୀଙ୍କୁ ଆହ୍ୱାନକରି କହିଲେ, ମୌଜେସ୍‌ଙ୍କ ଅନୁଶାସନ ଉପରେ ଯଦି ଆସ୍ଥାଥାଏ, ପିତୃପୁରୁଷଙ୍କ ଧର୍ମାଚାର ପ୍ରତି ଯଦି ଶ୍ରଦ୍ଧାଥାଏ, ତେବେ ବାହାରିଆସ, ଆଉ ଆଗେଇଚାଲ ମୋ ସାଙ୍ଗରେ, ଜୟଯାତ୍ରାରେ ଚାଲିଲି ମୁଁ ! ଦେଖୁଦେଖୁଁ ଏ ନିଆଁ ଗ୍ରାମରୁ ଗ୍ରାମାନ୍ତର ନଗରରୁ ନଗରାନ୍ତର ଦାବାନଳ ଭଳି ଚରିଯାଇଛି । ଜୁଡିୟାର ଉତ୍ତରଦିଗ ପାର୍ବତ୍ୟାଞ୍ଚଳ, ଗୁହାକନ୍ଦରରେ ଆତ୍ମଗୋପନକରି ଧର୍ମଯୁଦ୍ଧ ଚଳାଇଯିବାକୁ ସଙ୍କଳ୍ପ କରିଚନ୍ତି ମ୍ୟାଟାଥାଇୟସ୍ ଉଦ୍ଧତ ରାଜଶକ୍ତି ବିରୋଧରେ । କ୍ରମେ ଅନ୍ୟାନ୍ୟ ଜନପଦରୁ ଲୋକ ଆସିଚନ୍ତି, ଅସ୍ତ୍ରଶସ୍ତ୍ର ବି ଅଳ୍ପସ୍ୱଳ୍ପ ଯୋଗାଡ଼ହୋଇଚି ଏବଂ ଜୁଡିୟାର ପ୍ରାୟ ସର୍ବତ୍ର ଗଢ଼ିଉଠିଛି ସଶସ୍ତ୍ର ପ୍ରତିରୋଧ । ମାତ୍ର ମ୍ୟାଟାଥାଇୟସ୍‌ଙ୍କ କାଳହୋଇଯାଇଚି ବର୍ଷକ ଭିତରେ, ନେତୃତ୍ୱ ନେଇଛି ବଡ଼ପୁଅ ଜୁଡାସ୍, ଡାକନାମ ମ୍ୟାକ୍‌ବିୟସ୍ । ଯୁଦ୍ଧକୁ ସେଥିପାଇଁ କୁହାଗଲା ମ୍ୟାକ୍‌ବିୟନ୍ ୱର୍ । କ୍ରମଶଃ ଅଗ୍ରସରହୋଇ ଜେରୁସାଲେମ୍ ଧର୍ମମନ୍ଦିରକୁ ଉଦ୍ଧାରକରିଛି ସେଇ ବାହିନୀ ସେଲୁସିଡ୍ ରାଜଶକ୍ତି କବଳରୁ, ଜିଉସ୍‌ଙ୍କ ବିଗ୍ରହକୁ କାଢ଼ିଦେଇ ଗର୍ଭଗୃହରେ ପ୍ରତିଷ୍ଠାକରିଛି ଜିହୋଭାଙ୍କୁ, ଆଉ ଯଜ୍ଞବେଦୀ ସଂସ୍କାରକରି ପୁନଃପ୍ରତିଷ୍ଠା କରିଛି ଇହୁଦୀଙ୍କ ଧର୍ମକର୍ମ । ଅନ୍ୟ ଶବ୍ଦରେ, ଇହୁଦୀ ରହିଯାଇଛନ୍ତି ଶାଶ୍ୱତ ଇହୁଦୀ; ହେଲେନିକ୍ସ କରିପାରିନାହିଁ ରକ୍ତବୀଜକୁ ନିସ୍ତେଜ ।

ପରବର୍ତ୍ତୀ ରଜା ସବୁଯାକ ବିଧିନିଷେଧ ବାତିଲ୍‌କରିଦେଇ ଇହୁଦୀଙ୍କୁ ଦେଇଛନ୍ତି ସମ୍ପୂର୍ଣ୍ଣ ସ୍ୱାଧୀନତା, ମାତ୍ର ଧର୍ମଯୁଦ୍ଧର ଜାଗାନେଇଛି ଗୃହଯୁଦ୍ଧ, କାହିଁକିନା, ମ୍ୟାକ୍‌ବିୟସ୍‌ଙ୍କ ରାଜ୍ୟଲୋଭ ହୋଇଛି ଆଗ୍ରାସୀ; ନାଁ ଦେଇଛନ୍ତି ଅବଶ୍ୟ ସ୍ୱାଧୀନତା ସଂଗ୍ରାମ; ମାତ୍ର ଅଧିକାଂଶ ଇହୁଦୀ ଚାହିଁନାହାନ୍ତି ରାଷ୍ଟ୍ରସ୍ୱାଧୀନତା, ଧର୍ମକର୍ମ ନିର୍ବାଧହେବାପରେ ଉତ୍ସାହ ହୋଇଯାଇଛି ନିଷ୍ପ୍ରଭ । ପୁରୋହିତ ବି ହେଲେନୀୟ ହୋଇଯାଇଛନ୍ତି ଯଥେଷ୍ଟ; ସେଲୁସିଡ୍‌ରାଜତ୍ୱ ସିରିଆରେ ଅପ୍ରତିହତରହିବା ତାଙ୍କ ସ୍ୱାର୍ଥାନୁକୂଳ, ତା'ହେଲେ ତ

ଦେବତନ୍ତ୍ର ହେବ ପୁରୁଷାନୁକ୍ରମିକ ! ମ୍ୟାକ୍‌ବିୟସ୍‌ଙ୍କ ଯୁଦ୍ଧକୁ ଦେଲେ ଅଭିଶାପ, ଆଉ ମ୍ୟାକ୍‌ବିୟସ୍ ବି ଗ୍ରାହ୍ୟକଲେନାହିଁ ପୁରୋହିତଙ୍କୁ; ଅଚିରେ କିନ୍ତୁ ନିହତହେଲେ ରଣକ୍ଷେତ୍ରରେ । କନିଷ୍ଠଭାଇ ଯୁଦ୍ଧକୁ ରଖିଛି ଅବ୍ୟାହତ; ପ୍ରାୟ କୋ଼ଡ଼ିଏବର୍ଷ ବିକ୍ଷିପ୍ତଭାବେ ଯୁଦ୍ଧକରି ଜୟୀ ବି ହୋଇଛି; ମାତ୍ର ସର୍ବକନିଷ୍ଠ ସାଇମନ୍ ଛଡ଼ା ବାକିଯାକ ପ୍ରାଣଦେଇଚନ୍ତି ଯୁଦ୍ଧକ୍ଷେତ୍ରରେ । ଜେରୁସାଲେମ୍ ଧର୍ମମନ୍ଦିରର ପ୍ରଧାନ ପୁରୋହିତ ମଧ ଗତହୋଇଛନ୍ତି ଇତିମଧରେ । ସାଇମନ୍ ହୋଇଛନ୍ତି ଏକାଧାରରେ ଜୁଡିଆର ରାଜା ଆଉ ଦେଉଳର ବଡ଼ପଣ୍ଡା । ଇହୁଦୀଙ୍କ ସମାଜକୁ ଫେରିଆସିଛି ରାଜତନ୍ତ୍ର । ପ୍ରକୃତ ଇହୁଦୀ-ସ୍ୱରାଜ କିନ୍ତୁ ପ୍ରତିଷ୍ଠାକରିଥିଲେ ସାଇମନ୍‌ଙ୍କ ପୁଅ ଜନ୍ ହାର୍‌କେନସ୍; ସିରିଆ ସମ୍ରାଟ୍ ସେତେବେଳକୁ ହୀନବଳ । ଇହୁଦୀ କିନ୍ତୁ ହାର୍‌କେନସ୍‌ଙ୍କୁ ସମର୍ଥନ କିମ୍ୱା ସାହାଯ୍ୟ କରିନାହାନ୍ତି; ଭଡ଼ାଟିଆ ବିଦେଶୀସୈନ୍ୟଙ୍କୁ ସାଙ୍ଗରେ ଧରି ଦିଗ୍‌ବିଜୟରେ ବାହାରିଛନ୍ତି ହାର୍‌କେନସ୍ ଏବଂ ଦେଖୁଦେଖୁଁ ଉତ୍ତରରେ ଗାଲିଲି, ମଧ୍ୟାଞ୍ଚଳରେ ସ୍ୟାମେରିଆ ଆଉ ଦକ୍ଷିଣରେ ଇଡୁମିଆ ହୋଇଯାଇଛି ଜୁଡିଆର ଅଙ୍ଗରାଜ୍ୟ, ସଲୋମନ୍‌ଙ୍କ ରାଜ୍ୟର ପରିଧି ସହିତ ଜନ୍‌ଙ୍କ ରାଜ୍ୟବିସ୍ତାର ହୋଇଥିଲା ପ୍ରାୟ ସମମାତ୍ରା । ମାତ୍ର ସେତିକିରେ ସନ୍ତୁଷ୍ଟ ନ ରହି, ପାଲେଷ୍ଟାଇନ୍‌ର ଅଣ-ଇହୁଦୀ ପ୍ରଜାଙ୍କୁ ଜୋର୍‌ଜବରଦସ୍ତିକରି ଇହୁଦୀକରିବାକୁ ଚାହିଁଚନ୍ତି ଜନ୍; ସୁନ୍ନତ ସ୍ୟାବାଥ୍ ଇତ୍ୟାଦିକୁ କରିଚନ୍ତି ବାଧ୍ୟତାମୂଳକ, ତା'ସାଙ୍ଗକୁ ନିରାକାର ଆରାଧନା । ଏ ଭାବରେ ଯିଏ ଇହୁଦୀ ହେଲେ, ସିଏ ହେଲେ ଘୋରତର ଇହୁଦୀ-ବିଦ୍ୱେଷୀ; ପୁଣି ଜୁଡିଆବାସୀ ଯିଏ ଜନ୍ମସୂତ୍ରରେ ଇହୁଦୀ, ତାଙ୍କ ଦୃଷ୍ଟିରେ ନବୀନ-ଇହୁଦୀ ହୋଇଗଲେ ଏକେବାରେ ମ୍ଳେଚ୍ଛ; ଜନ୍ମ-ଇହୁଦୀ ଏମାନଙ୍କୁ ଜ୍ୟୁ ନକହି, ଡାକିଲେ ଗାଲିଲିୟନ୍, ସ୍ୟାମେରିଟାନ୍, ଇଡୋମାଇଟ୍ ଇତ୍ୟାଦି । ବୁନିଆଦି ନାହିଁ ଯାର, ସିଏ ପାଇଛି ଅବଜ୍ଞା ଘୃଣା କିମ୍ୱା ବିଦ୍ୱେଷ, ଇହୁଦୀ ହେଲେସୁଦ୍ଧା । ଜନ୍ ହାର୍‌କେନସ୍‌ଙ୍କ ଅମଳରୁ ଜ୍ୟୁ ହୋଇଯାଇଛନ୍ତି ଦୁଇଦଳ । ପ୍ରଥମଦଳର ଦଳପତି ମନ୍ଦିରର ପୁରୋହିତ ଓ ତାଙ୍କ ସମର୍ଥକ ଧନାଢ୍ୟ ଅଭିଜାତ; କିଏ ଜମିଦାର, କିଏ ମହାଜନ, କିଏ ବଣିକ । ସେ-ଦଳକୁ ନାଁ ମିଳିଛି 'ସାଦୁକୀ' । ଦ୍ୱିତୀୟ ପକ୍ଷର ନାଁ ଫ୍ୟାରିସି, ସେଥିରେ ଅଛନ୍ତି ସାଧାରଣ କୃଷକ, ପଶୁପାଳକ, ଧୀବର, ଆଉ ପୁରୋହିତ ସଂପ୍ରଦାୟରୁ ଯିଏ ଉଗ୍ର ଐତିହ୍ୟବାଦୀ (=ମୌଳବାଦୀ) । ଜନ୍ ହାର୍‌କେନସ୍ ରାଜ୍ୟପରିଚାଳନାରେ, ସୁବିଧା ମୁତାବକ, ଏମାନଙ୍କୁ ପରସ୍ପର ପଛରେ ଲଗାଇଦେଇ ମଜାଦେଖିଛନ୍ତି । ଇହୁଦୀସମାଜକୁ ଐକ୍ୟ ଆସିନାହିଁ । ଏଇ ଅବସ୍ଥା ଚାଲିଛି ପ୍ରାୟ ସତୁରିବର୍ଷ; ଆଉ ସେଇ କାଳଖଣ୍ଡରେ,

ରୋମ୍ ହୋଇଉଠିଚି ମହାଶକ୍ତି, ଗ୍ରୀସ୍ ପରିବର୍ତ୍ତେ । ଏବଂ ପ୍ରତୀଚ୍ୟରେ ଦୃଢ଼ ହେବାଉତ୍ତାରୁ ପ୍ରାଚ୍ୟ ଉପରେ ପଡିଛି, ରୋମ୍-ର ଲୋଲୁପଦୃଷ୍ଟି । ରୋମାନ୍ ସେନାପତି ପମ୍ପି, ସେଲୁସିଡ୍ ସମ୍ରାଟ୍‌ଙ୍କୁ ହଟାଇଦେଇ ସିରିଆକୁ କରିଦେଇଛନ୍ତି ରୋମାନ୍ ଆଉଟ୍-ପୋଷ୍ଟ୍ । କ୍ରମଶଃ ପାଲେଷ୍ଟାଇନ୍ ମଧ ଆସିଚି ପମ୍ପିଙ୍କ ଦଖଲକୁ । ଇଡୁମିଆର ରାଜା ସେତେବେଳକୁ ଆଣ୍ଟିପେଟର୍; ଜନ୍ ହାର୍‌କେନସ୍ ତାଙ୍କ ବାପକୁ ବଳପୂର୍ବକ ଇହୁଦୀକରି ବସାଇଥିଲେ ସିଂହାସନରେ । ପାଲେଷ୍ଟାଇନ୍ ଦଖଲ କଲାବେଳେ ଆଣ୍ଟିପେଟର୍ ହୋଇଥିଲେ ପମ୍ପିଙ୍କ ସହାୟ, ପରିଶେଷରେ, ଖ୍ରୀଷ୍ଟପୂର୍ବ ୬୩ ସାଲ୍‌ରେ ଜେରୁସାଲେମ୍ ଅବରୋଧକରି ଜୁଡିଆକୁ ବି ଗ୍ରାସକରିଛନ୍ତି ପମ୍ପି । ଜିହୋଭାଙ୍କ ଗର୍ଭଗୃହ ଭିତରକୁ ମଧ ପଶିଥିଲେ, ମାତ୍ର ବିଗ୍ରହନାହିଁ ଦେଖି, ଅପ୍ରସ୍ତୁତହୋଇ ବାହୁଡ଼ି ଯାଇଚ଼ନ୍ତି । ବିଧର୍ମୀର ମନ୍ଦିରପ୍ରବେଶ ଦେବାଳୟକୁ କରିଛି ଅପବିତ୍ର, ଏବଂ ସେଥିପାଇଁ, ଇହୁଦୀ ସର୍ବସାଧାରଣ ଆଣ୍ଟିପେଟର୍ ଉପରେ ଖଡ୍ଗହସ୍ତ, କାହିଁକିନା, ସେଇ ଆଣିଥିଲେ ପମ୍ପିଙ୍କୁ ଗର୍ଭଗୃହ ଅଭ୍ୟନ୍ତରକୁ । ବାରହଜାର ଇହୁଦୀଙ୍କୁ ଯମାଳୟକୁ ପ୍ରେରଣକରି ପ୍ରତିଶୋଧ ନେଇଚ଼ନ୍ତି ପମ୍ପି । ପରିଣତ ହୋଇଚି ଜୁଡିଆ ରୋମ୍‌ର ଏକ କରଦରାଜ୍ୟ; ଆଉ ଉତ୍ତରଦିଗରେ ଗ୍ୟାଲିଲି ଆଉ ମଝିରେ ସ୍ୟାମେରିଆ, ଜୁଡାରୁ ଅଲଗାହୋଇ ହୋଇଚ଼ନ୍ତି ରୋମ୍‌ର ପ୍ରତ୍ୟକ୍ଷ ଅଙ୍ଗରାଜ୍ୟ । ଏ ଭାବରେ ଇହୁଦୀ ସ୍ୱାଧୀନତା ହରାଇବା ବେଳକୁ ରୋମ୍ ଥିଲା ରିପବ୍ଲିକ୍; ଏବଂ ତାର କର୍ତ୍ତା ଥିଲେ ତିନିଜଣ ସେନାଧକ୍ଷ : ଜୁଲିଅସ୍ ସିଜାର୍, ପମ୍ପି ଆଉ କ୍ରାସସ୍ । ଅନ୍ତର୍କଳହ କାରଣରୁ ସିଜାର୍ ଯେତେବେଳେ ଏକାଧିପତି ହେଲେ, ପୂର୍ବଆନୁଗତ୍ୟର ପୁରସ୍କାରସ୍ୱରୂପ ଆଣ୍ଟିପେଟାର୍ ପାଇଥିଲେ ପାଲେଷ୍ଟାଇନ୍‌ର ରାଜପଦ; ମାତ୍ର ପୁତ୍ର ହେରଦ୍‌କୁ ସିଏ ନିଯୁକ୍ତ କରିଥିଲେ ଗ୍ୟାଲିଲି ଆଉ ସ୍ୟାମେରିଆର ଗଭର୍ଣ୍ଣର । ରାଜପଦ ପାଇଲେସୁଦ୍ଧା, ଇହୁଦୀଙ୍କ ଦୃଷ୍ଟିରେ ଆଣ୍ଟିପେଟାର୍ ରହିଗଲେ ବିଶ୍ୱାସଘାତକ; ଏବଂ ସେଥିପାଇଁ ନିଜ ଇହୁଦୀ ସେନାପତି ହାତରେ ହୋଇଚ଼ନ୍ତି ଅକସ୍ମାତ୍ ନିହତ । ସେନାପତି ମୃତ୍ୟୁଦଣ୍ଡ ପାଇଲେସୁଦ୍ଧା, ଇହୁଦୀଜାତି ଦେଇଛି ତାଙ୍କୁ ସହିଦ୍‌ର ମାନ୍ୟତା । ଜୁଲିଅସ୍ ସିଜାର୍ ବି ନିହତହେଲେ ସେନେଟ୍ ପ୍ରକୋଷ୍ଠ ଚତ୍ୱରରେ ଏବଂ ରୋମ୍‌ରେ ଲାଗିଯାଇଛି ତେଣୁ ଗୃହଯୁଦ୍ଧ, ଯା ସ୍ଥାୟୀହୋଇଚି ଅନ୍ତତଃ କୋଡ଼ିଏବର୍ଷ । ଫଳରେ, ପାଲେଷ୍ଟାଇନ୍‌ର ମଧ ମାଲିକ ବଦଳହୋଇଛି ଅନ୍ୟୂନ ଚାରିଥର । ଆଣ୍ଟିପେଟର୍‌ଙ୍କ ବଡ଼ପୁଅ ଇହୁଦୀଙ୍କ ହାତରେ ବନ୍ଦୀହୋଇ କରିଚ଼ି ଆତ୍ମହତ୍ୟା, ସାନ ହେରଦ୍ ସିଧା ପଳାଇଯାଇଚି ରୋମ୍ । ଅନତିପୂର୍ବେ କ୍ଲିଓପାଟ୍ରାଙ୍କ ପ୍ରେମରେ ଉନ୍ମତ୍ତ ମାର୍କ ଆଣ୍ଟନୀ ଯେତେବେଳେ ପଡ଼ିରହିଛନ୍ତି ମିଶରରେ, ହେରଦ୍ ବରାବର ପଠାଇଛନ୍ତି ବହୁମୂଲ୍ୟ

ଉପଢୌକନ । ଆ୍ୟାଣ୍ଟନୀ ହିଁ ହେରଦ୍‌ଙ୍କୁ ନବୀନ ପ୍ରଶାସକ ଅକ୍ଟାଭିଅସ୍ ସିଜାରଙ୍କ ସାଙ୍ଗରେ କରିଥିଲେ ମିଳିତ ଏବଂ ଆଣ୍ଟନୀ ଓ ଅକ୍ଟାଭିଅସ୍‌ଙ୍କ ମିଳିତ ପ୍ରରୋଚନା ରୋମାନ୍ ସେନେଟ୍‌କୁ ବାଧକରିଛି ହେରଦ୍‌ଙ୍କୁ ଇହୁଦୀଙ୍କ ରାଜା ପଦରେ ନିଯୁକ୍ତକରିବାକୁ, ଏବଂ ସେ ନିଷ୍ପତ୍ତି ଜାଣିବା ମାତ୍ରକେ ହେରଦ୍, ଦେବରାଜ ଜୁପିଟରଙ୍କ ଦେଉଳକୁ ଯାଇ ଯଥାବିଧି ବଳିଦାନପୂର୍ବକ ସମ୍ପନ୍ନକରିଚନ୍ତି ରାଜାଭିଷେକ । ବିଦେଶରେ ବିଧର୍ମୀ ଦେବତାର ତୋଷଣ ଏଣେ ଜେରୁସାଲେମ୍‌ର ଇହୁଦୀଙ୍କୁ କରିଛି ଉତ୍‌କ୍ଷିପ୍ତ । ବଂଶବିଚାରରେ ହେରଦ୍ ଅଧା-ଇଡୁମାଇଟ୍ ଅଧା-ଆରବିୟାନ୍, ଇହୁଦୀ ହୋଇଛନ୍ତି ମାତ୍ର ତିନିପୁରୁଷ ଆଗରୁ । ତିନିବର୍ଷଯାଏଁ ଲଢ଼ିଗଲେ ଇହୁଦୀ ଆଖିବୁଜି; ହେରଦ୍ ବି ରୋମ୍‌ରୁ ସୈନ୍ୟ ଅଣାଇ ବୁହାଇଦେଲେ ରକ୍ତନଦୀ; ଏମିତି ନାରକୀୟ କାଣ୍ଡ କରିବସିଚନ୍ତି ରୋମାନ୍ ସୈନ୍ୟ ଯେ ହେରଦ୍ ଭଳି ଦୁରାତ୍ମାକୁ କହିବାକୁ ପଡ଼ିଚି 'ଜନମାନବହୀନ ମରୁଭୂମିରେ ରାଜତ୍ୱକରିବି ନା କଣ ?' ଇହୁଦୀଙ୍କ ମେରୁଦଣ୍ଡ ଭାଙ୍ଗିଯାଇଛି ଶେଷକୁ, ମୌଖିକ ପ୍ରତିବାଦପାଇ ସୁଦ୍ଧା ହୋଇପଡ଼ିଛନ୍ତି ଅକ୍ଷମ । ରଣରେ ଭଙ୍ଗଦେଇନାହିଁ କେବଳ ଗ୍ୟାଲିଲି । ହେରଦ୍‌ଙ୍କ ଗୁପ୍ତଚର, କାହାକୁ ଧରିପାରିଲେ, ଗ୍ୟାଲିଲି ହ୍ରଦରେ ନେଇ ବୁଡ଼ାଇମାରିଛନ୍ତି । ହେରଦ୍ ମଧ୍ୟ ସତର୍କହୋଇ ଚଳନ୍ତି; ଜାଣନ୍ତି, ତାଙ୍କ ରାଜଶକ୍ତିର ପୋଷକ ଏକମାତ୍ର ରୋମ୍ । ବିଦେଶୀଙ୍କ ଆଖିରେ ଆତ୍ମଗରିମା ବଢ଼ାଇବାକୁ ନାନାଦି ଆଡ଼ମ୍ବରପୂର୍ଣ୍ଣ ପ୍ରକଳ୍ପରେ ହାତଲଗାଇଛନ୍ତି; ଇହୁଦୀପ୍ରଜା କିନ୍ତୁ ଦେଇଛନ୍ତି ତାଙ୍କୁ ଉପନାମ : ଦ ଏଡୋମାଇଟ୍ ସ୍ଲେଭ୍ । ମର୍ମଘାତୀ ଏଇ ସଙ୍କଟ ମୁହୂର୍ତ୍ତରେ ଦେଶବାସୀ ଯେତେବେଳେ ଦୁର୍ଭିକ୍ଷ ଓ କରଭାରରେ ଅବନତ, ଫ୍ୟାରିସୀ ଧର୍ମାଚାର୍ଯ୍ୟ ଲୋକଙ୍କୁ ଶୁଣେଇଛନ୍ତି ଆଶାର ବାଣୀ : ଏତେ ପାପ ଏ ମହୀ ଆଉ ସହିବନାହିଁ, ଅବଶ୍ୟ ଅବତୀର୍ଣ୍ଣ ହେବେ ମସିହା । ଏଠି ଯେମିତି କଳ୍ପନାକରିଛୁଁ କଳିଯୁଗରେ କଳ୍କିଅବତାର ! ମସିହା ବାହାରିବ ଡେଭିଡ୍ ରାଜାଙ୍କ ବଂଶରୁ, ପିନ୍ଧିଥିବ ରାଜସଜ୍ଜା, ମୁଣ୍ଡରେ ରାଜମୁକୁଟ ଆଉ ହାତରେ ଅଭୟ-କୃପାଣ । ସେଇ ପ୍ରତିଷ୍ଠା କରିବେ ଧର୍ମରାଜ୍ୟ । ତହିଁଉତ୍ତାରୁ ଖାଲି ଘିଅ-ମହୁ, ଇହଲୋକରେ ନ ହେଲେ, ପରଲୋକରେ ତ ନିଶ୍ଚୟ ! ହେରଦ୍ ମରିଛନ୍ତି ଯୋଉବର୍ଷ, ଗ୍ୟାଲିଲି ପ୍ରଦେଶର ନ୍ୟାଜାରେଥ୍ ଜନପଦରେ ଭୂମିଷ୍ଠହୋଇଛନ୍ତି ଯୀଶୁ ଚାରିବର୍ଷ ଉତ୍ତାରୁ ।

ସନ୍ନ୍ୟାସୀ ଏଲିଜାଙ୍କ କଥା କହିବାକୁ ଯାଇ ଇହୁଦୀଙ୍କ ଜାତିଇତିହାସ ବିବୃତହେଲା ସଂକ୍ଷେପରେ, କାହିଁକିନା, ଇତିହାସ-ପୁରୁଷ ଯୀଶୁଙ୍କୁ ଉପଲବ୍ଧି କରିବାପାଇଁ ପୂର୍ବାପର ସଙ୍ଗତି ଅପରିହାର୍ଯ୍ୟ । ଏଲିଜା ଖ୍ରୀଷ୍ଟପୂର୍ବ ନବମଶତକର ଲୋକ; ସଲୋମନ୍‌ଙ୍କ

ପରବର୍ତ୍ତୀ ଏକ ରଜା, ଆହାବ୍, ବିଦେଶିନୀ ରାଣୀ ଜିଜେବେଲ୍‌ଙ୍କ ପ୍ରରୋଚନାରେ ପରମେଶ୍ୱର ଜିହୋଭାଙ୍କୁ ଛାଡ଼ି ଯେତେବେଳେ ବାଆଲ୍ ନାମକ ବିଗ୍ରହଦେବତାଙ୍କୁ କରିଛନ୍ତି ଆରାଧ । ଆହାବ୍‌ଙ୍କ ରାଜତ୍ୱକାଳ ବାଇଶବର୍ଷ, ଇସ୍ରାଏଲ୍‌ର ରାଜଧାନୀ ସେତେବେଳେ ସ୍ୟାମେରିଆରେ; ଜୁଡାର ରାଜଧାନୀ କିନ୍ତୁ ଜେରୁସାଲେମ୍ । ନିରନ୍ତର କଳହ ଲାଗିରହିଛି ଦୁଇରାଜ୍ୟ ମଧ୍ୟରେ; ଏବଂ ଇସ୍ରାଏଲ୍‌ର ରାଜା ଆହବ୍, ଆଲିଙ୍ଗନକରିଛନ୍ତି ପୌତ୍ତଳିକତା; ଫଳତଃ, ଯୋଉ ଦଶଟି ଉପଜାତିକୁ ଘେନି ଇସ୍ରାଏଲ୍ ରାଜ୍ୟ ସଂଗଠିତ, ତାଙ୍କ ଭିତରେ ବି ଲାଗିଯାଇଛି ଅନ୍ତର୍ବିବାଦ । ଫିନିସୀୟ ଦେବତା ବାଆଲ୍‌ଙ୍କ ମୂର୍ତ୍ତି ପ୍ରତିଷ୍ଠାକରାଯାଇଛି ସ୍ୟାମେରିଆରେ, ଆହାବ୍ ତେଣୁ ପଡ଼ିଛନ୍ତି ଜିହୋଭାଙ୍କ କୋପଦୃଷ୍ଟିରେ ଏବଂ ସନ୍ନ୍ୟାସୀ ଏଲିଜା ଆସି ଆହାବ୍‌ଙ୍କୁ କହିଚନ୍ତି, ବିଜାତୀୟ ପୌତ୍ତଳିକତା ପରିତ୍ୟାଗ ନ କଲାଯାଏଁ ଇସ୍ରାଏଲ୍ ଭୂଇଁରେ କାକର ପଡ଼ିବନାହିଁ କି ମେଘ ବର୍ଷିବନାହିଁ । ରାଜା କାଳେ ସନ୍ନ୍ୟାସୀଙ୍କୁ ନିଗ୍ରହକରିବେ, ଈଶ୍ୱର ସେଥିପାଇଁ ଏଲିଜାଙ୍କୁ କହିଲେ, ପୂର୍ବଦିଗକୁ ଚାଲିଯାଇ ଜୋର୍ଦନ୍ ଉପକଣ୍ଠରେ ଅଛି ଯୋଉ-ପାହାଡ଼ୀଝରଣା, ଆତ୍ମଗୋପନ କର ସେଇଠି । ଡାମରାକାଉ ଖାଦ୍ୟ ଆଣିଦେବ, ଝରଣାରେ ରହିଛି ପାଣି । ମାତ୍ର, କ୍ରମାଗତ ଅପାଳକ ପଡ଼ିବାରୁ ଝରଣା ବି ଯାଇଚି ଶୁଖି । ଈଶ୍ୱର ତେଣୁ ଏଲିଜାଙ୍କୁ ପଠାଇଦେଲେ ଜିଦନ୍; ଜଣେ ବିଧବା ଘରେ ଆଶ୍ରୟନେଇଛନ୍ତି ସେଠି ସନ୍ନ୍ୟାସୀ । କିଛିଦିନ ଉତ୍ତାରୁ ବିଧବାର ବାଳକପୁତ୍ର ମରିଚି ଅପଘାତରେ ଏବଂ ବିଧବାର ଅନୁଯୋଗ ସହିନପାରି ଏଲିଜା ଦେଇଛନ୍ତି ତାକୁ ପୁନର୍ଜୀବନ; ବିଧବା ଜାଣିପାରିଛି, ଏ ସନ୍ନ୍ୟାସୀ ନକଲି ବାବାଜି ନୁହେଁ, ଈଶ୍ୱରଙ୍କ ସାକ୍ଷାତ୍ ପ୍ରତିନିଧି ଏବଂ ତା ମୁଖନିଃସୃତ ପ୍ରତ୍ୟେକ ଶବ୍ଦହିଁ ଦୈବବାଣୀ । ତାକୁ କହୁଛୁଁ ବାକ୍‌ସିଦ୍ଧ । ଏମିତି କଟିଗଲା ତିନିବର୍ଷ । ତିନିବର୍ଷ ଶେଷକୁ ଦୈବବାଣୀ ଶୁଣିଲେ ଏଲିଜା : ଏଥର ଯାଇ ଦେଖାଦିଅ ଆହାବ୍‌କୁ । ସ୍ୟାମେରିଆରେ ପଡ଼ିଛି ସେତେବେଳକୁ ଘୋର ଦୁର୍ଭିକ୍ଷ, ଆଉ ରାଣୀ ଜେଜେବେଲ୍ ଶହେସରିକି ଇହୁଦୀସନ୍ନ୍ୟାସୀଙ୍କ ମୁଣ୍ଡ କାଟିସାରିଛନ୍ତି ପିତୁଳାପୂଜା ଅସ୍ୱୀକାର କରିଥିଲେ ବୋଲି । ଆହାବ୍ ଆସିବାମାତ୍ରକେ ଏଲିଜା କହିଲେ, ଦେଶ ଓ ଜାତିର ଏ ଦୁର୍ଦ୍ଦଶାପାଇଁ ତୁମେ ହିଁ ଏକା ଦାୟୀ; ଇହୁଦୀଜାତିକୁ ପ୍ରଦତ୍ତ ଈଶ୍ୱରଙ୍କ ସମସ୍ତ ଅନୁଜ୍ଞା ତୁମେ ଲଂଘନକରିଛ । ଏକ୍ଷଣି କାର୍‌ମେଲ୍ ପାହାଡ଼ ଉପରେ ଇସ୍ରାଏଲ୍‌ର ପ୍ରଜାକୁଳକୁ ସମବେତ କର, ବାଆଲ୍ ଠାକୁରକୁ ପୂଜାକରୁଛନ୍ତି ଜେଜେବେଲ୍‌ର ଯୋଉ ଆଠଶ' ପୂଜାରୀ, ତାଙ୍କୁ ବି ଡାକ । ଲୋକ ଏକାଠିହେଲାପରେ ଏଲିଜା ବାଆଲ୍‌ଙ୍କ ପୂଜକଙ୍କୁ ଆହ୍ୱାନକଲେ ଏକ ପରୀକ୍ଷାକୁ । ସଂଖ୍ୟାରେ ସେମାନେ

ଚାରିଶ' ଆଉ ଏଲିଜା ଏକେଲା; ଉଭୟପକ୍ଷ ବଳିଦାନକଲେ ଗୋଟିଏଲେଖାଁ ବୃଷଭ ଏବଂ ବଳିଦତ୍ତ ପଶୁକୁ ରଖାଗଲା ଦୁଇଟି ଅଲଗା କାଠଭାଡ଼ି ଉପରେ । ତା'ପରେ, ଆପଣା ଦେବତାଙ୍କୁ ନୈବେଦ୍ୟ ଗ୍ରହଣକରିବାକୁ ପ୍ରାର୍ଥନାକଲେ ଉଭୟପକ୍ଷ; ପ୍ରଥମେ ବାଆଲ୍-ଠାକୁରଙ୍କ ପୂଜାରୀଙ୍କ ପାଳିପଡ଼ିଲା, ମାତ୍ର ସକାଳୁ ସଞ୍ଜଯାଏଁ ଡାକି ଡାକି ହାଲିଆହେଲେ ବି ଦେବତା ଶୁଣିଲେନାହିଁ, ଏଲିଜା ଏଥର ଜିହୋଭାଙ୍କ ଭଗ୍ନବେଦୀକୁ ସଜଡ଼ାସଜଡ଼ିକରି, ବାରଖଣ୍ଡ ପଥରରେ ଯଜ୍ଞବେଦୀ ପ୍ରସ୍ତୁତକଲେ, ଜ୍ୟାକବ୍‌ଙ୍କ ଯୋଉ ବାରଜଣ ପୁଅଙ୍କ ବଂଶଧର ଇହୁଦୀଜାତିର ବାର ଉପଜାତି, ପଥରଗୁଡ଼ାକ ସେମାନଙ୍କ ପ୍ରତୀକ । ତତ୍‌କ୍ଷଣାତ୍ ଦୈବବାଣୀ ଶୁଣାଗଲା, ତମେ ସଭିଏଁ ପ୍ରସିଦ୍ଧହେବ ଇସ୍‌ରାଏଲ୍ ନାମରେ । ନୈବେଦ୍ୟର ଉପଚାର ସମ୍ପନ୍ନକରିସାରି ଏଲିଜା ସମ୍ବୋଧନକଲେ ପରମେଶ୍ୱରଙ୍କୁ : ଆବ୍ରାହାମ୍ ଆଇଜାକ୍ ଆଉ ଇସ୍‌ରାଏଲ୍‌ର ପରମପିତା ହେ ପରମେଶ୍ୱର ! ଆଜି ଏମାନଙ୍କୁ ଜଣାଇଦିଅ, ତମେହିଁ ଇସ୍‌ରାଏଲ୍‌ର ଏକମାତ୍ର ଓ ଅଦ୍ୱିତୀୟ ପ୍ରଭୁ, ଆଉ ମୁଁ ଅଧମ କେବଳ ତମ କିଙ୍କର; ଆଉ ମୁଁ ଯା କରିଛି ବା କରୁଛି, ସବୁ ତୁମ ଆଦେଶର ଅନୁରୂପ । ଏଲିଜା ଏତିକି କହିସାରିବା ମାତ୍ରକେ ଯଜ୍ଞକୁଣ୍ଡରେ ଜଳିଉଠିଛି ହୁତାଶନ ଏବଂ ବଳିଦତ୍ତ ପଶୁ ଦଗ୍ଧହୋଇଛି ଯଥାବିଧି । ଦେଖୁ ଦେଖୁଁ ସମବେତ ଜନତା ସାଷ୍ଟାଙ୍ଗ ଦଣ୍ଡବତ, ଶିରଃ କରିଛନ୍ତି ଭୂମିଲଗ୍ନ ଏବଂ ସମସ୍ୱରରେ ଆବୃତ୍ତିକରିଛନ୍ତି, ତମେ ହିଁ ଆମର ଏକମାତ୍ର ଏକାନ୍ତ ଆରାଧ, ଏକମାତ୍ର ଈଶ୍ୱର । ତହିଁ ଉତ୍ତାରୁ ଅବଶ୍ୟ ବାଆଲ୍‌ଦେବତାଙ୍କ ପୂଜାରୀମାନଙ୍କ ମୁଣ୍ଡପାତ କରିଛନ୍ତି ଏଲିଜା । ଅବିଶ୍ରାନ୍ତ ବାରିପାତ ଶୁଷ୍କ ଧରଣୀକୁ କରିଛି ରସସିକ୍ତ; ମାତ୍ର ରାଣୀ ଜେଜେବେଲ୍ ବାଆଲ୍-ପୂଜକଙ୍କ ନିଧନର ପ୍ରତିଶୋଧନେବାକୁ ହୋଇପଡ଼ିଛି ତତ୍ପର । ଆତ୍ମରକ୍ଷାର୍ଥେ ଏଲିଜା ପଳାଇଯାଇଛନ୍ତି ଜୁଡା, ବଣରେ ପଶି କଣ୍ଟାଗଛତଳେ ଈଶ୍ୱରଙ୍କୁ ନିବେଦନକରିଛନ୍ତି : 'ଢେର୍ ହୋଇଛି, ଏଥର ନେଇଯାଅ ଜୀବନ ।' ଭୂତଳେ ଶାୟିତା ଏଲିଜାଙ୍କୁ କିନ୍ତୁ ସ୍ପର୍ଶକରିଛି ଦେବଦୂତ । ଉଠିପଡ଼ି ଏଲିଜା ଦେଖୁଛନ୍ତି ତାଙ୍କପାଇଁ ଆସିଛି ପିଠା ଆଉ କଳସରେ ପାଣି । — ଦେବଦୂତ କହିଛି, 'ପେଟ୍‌ପୂରା ଖାଇନିଅ, କାହିଁକିନା, ଏ ଯାତ୍ରା ହେବ ଦୀର୍ଘତମ'; ଏବଂ ଚାଳିଶଦିନ ଚାଳିଶରାତି ଅଗ୍ନିରଥରେ ଉଡ଼ିଯାଇ ଏଲିଜା ସଶରୀରରେ ଅବତୀର୍ଣ୍ଣ ହୋଇଛନ୍ତି ଈଶ୍ୱରଙ୍କ ନିବାସ ହୋରେବ୍ ଗିରିଚୂଡ଼ାରେ । ଈଶ୍ୱରଙ୍କ ବାସସ୍ଥାନ କୋଉଠି, ଆଦାମ୍ କି ଆବ୍ରାହାମ୍, କେହିଜଣେ ଟେର୍ ପାଇନାହାନ୍ତି; ଏଲିଜା ବି ଜାଣି ନଥିଲେ ଦେବଦୂତ ତାଙ୍କୁ ହୋରେବ୍ ପର୍ବତଶିଖରରେ ଓହ୍ଲେଇଦେବା ପର୍ଯ୍ୟନ୍ତ । *ଓଲ୍ଡ ଟେଷ୍ଟାମ୍ୟାଣ୍ଟ* ଉପରେ ଏ ଏକ

ଗ୍ରୀକ୍-ପ୍ରଲେପ, କାହିଁକିନା, ଗ୍ରୀକ୍‌ମାନଙ୍କ ଦେବଦେବୀ ପରମପିତା ଜେଉସ୍‌ଙ୍କ ସମେତ ଅଧିଷ୍ଠିତ ଅଲିମ୍ପସ୍ ପର୍ବତଚୂଡ଼ାରେ ।

ହେରଦ୍‌ଙ୍କ ମୃତ୍ୟୁପରେ ଅଗଷ୍ଟସ୍ ସିଜାର୍ ପାଲେଷ୍ଟାଇନ୍‌ର ରାଜପଦ ଲୋପକରିଦେଇ ଜୁଡିଆ ସ୍ୟାମେରିଆ ଇଡୁମିଆ ଇତ୍ୟାଦି ପ୍ରଦେଶକୁ ସିରିଆସ୍ଥିତ ରୋମାନ୍ ବଡ଼ଲାଟ୍‌ଙ୍କ ଶାସନାଧୀନ କରିଦେଲେ; ତାଙ୍କ ତଳକୁ ରହିଲେ ପ୍ରତି ପ୍ରଦେଶପାଇଁ ପ୍ରୋକିଓରେଟର୍; ଜେରୁସାଲେମ୍ ଆସନ୍ତି କେବଳ ପାସ୍‌ଓଭର୍ ପରବ ବେଳକୁ । ସ୍ପଷ୍ଟତଃ, ଯୀଶୁଙ୍କୁ ଯେମିତି ଡେଭିଡ୍‌ରାଜାଙ୍କ ବଂଶଧର ବୋଲି ପ୍ରଚାରକରାଯାଇଛି, ତା' ଏକ ଭାକ୍ତିକ ମିଥ୍ୟା ।

ହେରଦ୍ ମୃତ୍ୟୁଶଯ୍ୟାରେହିଁ ଉଇଲ୍‌କରି ତିନିପୁଅଙ୍କ ଭିତରେ ପାଲେଷ୍ଟାଇନ୍‌କୁ ଭାଗକରିଦେଇ ଯାଇଛନ୍ତି; ତଦନୁସାରେ ଜ୍ୟେଷ୍ଠ ଜାର୍‌କେଲସ୍ ରାଜା ହେଲେ ଜୁଡିଆର ଆଉ ଜୁଡିଆ ସାଙ୍ଗକୁ ପାଇଲେ ସ୍ୟାମେରିଆ ଓ ଇଡୁମିଆ । ମଧ୍ୟମପୁତ୍ର ଫିଲିପ୍ ପାଇଲେ ଜର୍ଦ୍ଦନନଦୀର ପୂର୍ବକୂଳର ସମଗ୍ର ଉତ୍ତରାଞ୍ଚଳ, ଯାର ରାଜଧାନୀ ପରବର୍ତ୍ତୀ ସମୟରେ ହୋଇଛି ସିଜେରିଆ-ଫିଲିପାଇ । କନିଷ୍ଠ ଆ୍ୟାଣ୍ଟିପସ୍ ପାଇଲେ ଗ୍ୟାଲିଲି ପ୍ରଦେଶ ଏବଂ ତା'ସହିତ ଜର୍ଦ୍ଦନନଦୀର ପୂର୍ବକୂଳର ଦକ୍ଷିଣାଞ୍ଚଳ, ପେରିୟା ପ୍ରଦେଶ । ଅକ୍ଟାଭିଅସ୍, ସମ୍ରାଟ୍ ହେବାପରେ ହୋଇଛନ୍ତି ଅଗଷ୍ଟସ୍ ସିଜାର୍ । ତାଙ୍କୁ ଖୁସିକରିବାପାଇଁ ହେରଦ୍‌ଙ୍କ ମଧ୍ୟମପୁତ୍ର ଫିଲିପ୍ ନିଜ ରାଜଧାନୀର ନାମକରଣ କରିଛନ୍ତି ସିଜେରିଆ-ଫିଲିପାଇ ।



## ।। ଚାରି ।।

ଯୀଶୁ ଥିଲେ ଆପାଦମସ୍ତକ ଜ୍ୟୁ ଏବଂ ଜୁଡାଇଜ୍ମରେ ଓତପ୍ରୋତ ପରିସିକ୍ତ । *ବାଇବେଲ୍*ର ପୂର୍ବଭାଗରେ ଯେତେ ମିଥ୍ (=ଅତିକଥା) ଆଉ ଲେଜଣ୍ଡ୍ (=ରୂପକଥା)ର ଅବତାରଣା, ତିନିଟି ପ୍ରମୁଖ କାରଣବଶତଃ ତା ପ୍ରଣିଧାନଯୋଗ୍ୟ : (୧) କାହିଁକିନା, କାଳପ୍ରବାହରେ ସେଇ ଅତିକଥା / ରୂପକଥା ପରିଣତହୋଇଛି ପାଶ୍ଚାତ୍ୟ ସଂସ୍କୃତିର ଆଧ୍ୟାତ୍ମିକ ଐତିହ୍ୟ, ଏବଂ ଫଳତଃ, ସାହିତ୍ୟ ଓ ଶିଳ୍ପକଳାରେ ସେଗୁଡ଼ିକର ପ୍ରୟୋଗ ବହୁମୁଖୀ; (୨) ବିଶେଷତଃ ମଧ୍ୟଯୁଗରେ, ପ୍ରାଚ୍ୟଜଗତର କଳ୍ପକାହାଣୀକୁ ପ୍ରତୀଚ୍ୟକୁ ବହନକରି ନେବାପାଇଁ ଜ୍ୟୁ ଥିଲେ ଯେହେତୁ ପ୍ରଧାନ ବାହନ, ବହୁ ଜନପ୍ରିୟ ପ୍ରାଚ୍ୟ-ଲୋକଗାଥାର ମୂଳବୀଜ ମିଳୁଛି କେବଳ ଇହୁଦୀ ସଂହିତାରୁ; ଆଉ (୩) ଗାଥା / କଥାସମ୍ଭାର ବହୁଶତବର୍ଷଧରି ସଞ୍ଚିତହୋଇଛି ଯେହେତୁ କ୍ରମାଗତ ଉଦ୍‌ବାସ୍ତୁ ଆଗମନ-ପ୍ରତ୍ୟାଗମନ ସୂତ୍ରରେ, ଏକା କାହାଣୀ କିପରି ବହୁଧା ରୂପାନ୍ତରିତହୁଏ ଯାଯାବର ଅବସ୍ଥାରେ, ସେ ପ୍ରକ୍ରିୟାକୁ ଚିହ୍ନଟକରିବା ଏଇ ମିଥ୍ /ଲେଜେଣ୍ଡ୍ ପ୍ରଭୃତିର ବିଶ୍ଳେଷଣରୁ ନିର୍ଭରଯୋଗ୍ୟ । ଅର୍ଥାତ୍, ଅଧିକାଂଶ ମିଥ୍ (ଦ୍ର.*ଓଲ୍ଡ ଟେଷ୍ଟାମ୍ୟାଣ୍ଟ*) ଇହୁଦୀଜଗତର ନିଜସ୍ୱ ସମ୍ପଦ ନୁହେଁ; ବହୁଶତବର୍ଷଧରି ଯାଯାବର ଜୀବନଚର୍ଯ୍ୟାରେ ଅଭ୍ୟସ୍ତ ଇହୁଦୀ ସେଗୁଡ଼ିକୁ ଆହରଣକରିଚି ପ୍ରତିବେଶୀ ଦୁନିଆରୁ, ଯୋଉ ଦୁନିଆର ଧର୍ମାଚାର ଜୁଡାଇଜ୍ମ ନୁହେଁ । ନିଜ ଜାତିଚରିତ୍ରର କୋଉ ବୈଶିଷ୍ଟ୍ୟ ଅଥବା ଧର୍ମଧାରାର ବିଶେଷ କୋଉ ବିଭାବକୁ ପରିସ୍ଫୁଟ କରିବା ସକାଶେ ଆହୃତ ମିଥ୍‌କୁ ଇହୁଦୀ ଦେଇଛନ୍ତି ନିର୍ଦ୍ଦିଷ୍ଟ ସମସ୍ୟାପଟ ଆଉ ସ୍ଥାନୀୟ ବର୍ଣ୍ଣବିଭା, ଏବଂ ଶୈଶବରେ ଧର୍ମଶିକ୍ଷା ଯେହେତୁ ବାଧ୍ୟତାମୂଳକ, ଇହୁଦୀ ଅଭ୍ୟସ୍ତହୋଇଚନ୍ତି ବହୁବିଧ ବିଧି ଓ ନିଷେଧ ପାଳନକରିବାକୁ, ଏବଂ ସେଥିପାଇଁ, ମିଥ୍ ମଧ୍ୟ ପରିଣତ ହୋଇଚି ଧର୍ମମତର ପ୍ରତୀକ; ଏବଂ ସେଇ ସୂତ୍ରରେ, ସ୍ୱର୍ଗ-ନରକ, ପାପ-ପୁଣ୍ୟ,କର୍ମଫଳ, ପୁରସ୍କାର-ତିରସ୍କାର, ମୃତ୍ୟୁ ଓ ମୃତର ପୁନର୍ଜ୍ଜୀବନ ଅଥବା ସଙ୍କଟକାଳରେ ଅବତାର-ପୁରୁଷର ମର୍ତ୍ତ୍ୟାବତରଣ ଭଳି ଅତିକଥା/ ରୂପକ, ମୌଳିକ କୋଉ ଆଧ୍ୟାତ୍ମିକ ଉପଲବ୍ଧି ନ ହୋଇ ସୁଦ୍ଧା, ଇହୁଦୀ ମାନସଲୋକକୁ

ଅନୁପ୍ରବେଶ କରିଚି ଅପରାପର ପରମ୍ପରାରୁ ଶାସ୍ତ୍ରାନୁସଙ୍ଗ ଛଦ୍ମବେଶରେ । ପରୀ କି ମର୍ତ୍ତ୍ୟକିନା ଏ କଳ୍ପଲୋକରେ ଜାଗା ପାଇବେନାହିଁ, କାହିଁକିନା, ଉର୍ଦ୍ଧ୍ୱଲୋକ ସ୍ୱୟଂ ପରମେଶ୍ୱରଙ୍କ ଖାସ୍‌ଦଖଲ, ସେଠି ତାଙ୍କ ପୋଷ୍ୟମାନେ ରହିପାରନ୍ତି କେବଳ, ଯେପରି ନାନାପ୍ରକାର ଦେବଦୂତ ଓ ଦୈତ୍ୟଦାନବ । ମିଥ୍‌ଗୁଡ଼ାକ ତେଣୁ ଇଂରେଜୀରେ ଯାହାକୁ କହୁଁ, ଷ୍ଟାଣ୍ଡାର୍ଡ଼ ଟାଇପ୍ । କିନ୍ତୁ ମିଥ୍ ସହିତ ଲେଜଣ୍ଡ୍‌ର ପାର୍ଥକ୍ୟ ରହିଚି; ଲେଜଣ୍ଡ୍‌ର ଜଗତଟା ଇହଲୋକ, କାଳମାତ୍ରା ବି ଐତିହାସିକ; ଅର୍ଥାତ୍ ଲେଜଣ୍ଡ୍‌ର ନାୟକ ସର୍ବଦା ମଣିଷ, ବହିର୍ଜାଗତିକ ଦେବତା କି ଦାନବ ନୁହେଁ । ତା'ଛଡ଼ା, ଜୁଡାଇଜ୍ମ ନିରାକାର ଏକେଶ୍ୱରବାଦୀ ଧର୍ମ; ସେଥିରେ ଦ୍ୱିତୀୟ କୋଉ ଦେବଦେବୀଙ୍କ ପାଇଁ ଜାଗା ନ ରହିବା କଥା; ଏବଂ ପ୍ରେକ୍ଷିତ ଯେହେତୁ ସଙ୍କୀର୍ଣ୍ଣ, ଇହୁଦୀଙ୍କ ନିଜସ୍ୱ କୋଉ ମିଥ୍ ମଧ୍ୟ ନ ରହିବା କଥା । ମାତ୍ର, ଅତି ପ୍ରାଚୀନ କାଳରୁ ସାକ୍ଷାତ୍ ପ୍ରେକ୍ଷିତ ବାହାରୁ ମିଥ୍‌ଗୁଡ଼ିକ ଆମଦାନିକରି ଉଦ୍ଦେଶ୍ୟର ଉପଯୋଗୀକରି ଗଢ଼ିବାକୁ କେବେ କାର୍ପଣ୍ୟ କରିନାହାନ୍ତି ଜ୍ୟୁ, ଏବଂ କରିନାହାନ୍ତି ବୋଲି, 'ଜେନିସିସ୍'ରେ ବର୍ଣ୍ଣିତ ଉଦ୍ୟାନ (=ବୈକୁଣ୍ଠ), ମାଟିରୁ (=କାଦୁଅରୁ) ମଣିଷର ଉତ୍ପତ୍ତି ପ୍ରଭୃତି ବିଜାତୀୟ ମିଥ୍, ବାହକ ହୋଇଚି ଅଲୌକିକ ବାର୍ତ୍ତାର । ସେଇ ବାଟରେ ଇତିହାସର ସୀମାବଦ୍ଧତାକୁ ଅତିକ୍ରମକରି ଇହୁଦୀ ଦେଇପାରିଚନ୍ତି ନିଜ ଧର୍ମଚେତନାକୁ କାଳାତୀତ ପ୍ରବହମାନତା । ବ୍ୟକ୍ତିଜୀବନରେ ଲୋକ ନିର୍ମାଣକରିପାରୁଚନ୍ତି ନିଜ ସିନାଇ ପାହାଡ଼, ଅରଣ୍ୟରେ ନିର୍ବାସନ, ଅଭୀଷ୍ଟ ସ୍ୱର୍ଗରାଜ୍ୟ । ଜେରୁସାଲେମ୍ ମନ୍ଦିରଧ୍ୱଂସ ଭଳି ଐତିହାସିକ ଘଟଣାକୁ କରାଯାଇପାରିଚି ଭଗବାନ୍ ଓ ସୃଷ୍ଟ ମାନବ ମଧ୍ୟସ୍ଥ ପାରସ୍ପରିକ ଅସଦ୍‌ଭାବର ମେଟାଫର୍, ଅଭିଘାତର ଦ୍ୟୋତକ । ଲେଜଣ୍ଡ୍ କିନ୍ତୁ ଆଧିଭୌତିକ କଳ୍ପନା ନୁହେଁ; ଐତିହାସିକ ଘଟଣାର ଅଳଙ୍କରଣ କିମ୍ବା ଅତିରଞ୍ଜନ ମାତ୍ର; ଏବଂ ଅଳଙ୍କରଣ ଯେହେତୁ ଉଦ୍ଦେଶ୍ୟମୂଳକ, ସ୍ଥାନ-କାଳ-ପାତ୍ର ତ୍ରୈମାତ୍ରିକତାକୁ ଉପେକ୍ଷା କରିପାରେନା ଲେଜଣ୍ଡ୍ । ଅବଶ୍ୟ ଆଉ ଏକ ଉପକରଣ ହେଲା ଫେବ୍ଲ୍ (=ହିତୋପଦେଶ), ଯୋଉଠି ମାନବେତର ପ୍ରାଣୀ କରନ୍ତି ମାନବୋଚିତ ଆଚରଣ, ଯେପରି, ଇଡେନ୍ ଉଦ୍ୟାନରେ ଇଭ୍-ଅହି ସଂଳାପ । ମୋଟ କଥା, ଆଦିକାଳରୁ ଜ୍ୟୁ ବୁଲୁଚନ୍ତି ଠାଇଁଖୋଜି, ଭାଗ୍ୟ ତାଙ୍କୁ ତଡ଼ିନେଇ ଯାଇଚି ମିଶର, ସିରିଆ, ବ୍ୟାବିଲନ୍; ପୁଣି ତାଙ୍କ ଉପରେ ରାଜତ୍ୱକରିଚି ବେଳକୁ ବେଳ ଗ୍ରୀସ୍, ପାରସ୍ୟ, ରୋମ୍ । ଏପରିକି, ମେସୋପଟାମିଆ, ଭାରତ ଓ ସ୍ପେନ୍‌ରୁ ମଧ୍ୟ ଆସିଚି ମିଥ୍ ଆଉ ଫେବ୍ଲ୍, ଏବଂ ସବୁଯାକ ଅନ୍ତର୍ଭୁକ୍ତହୋଇଚି *ଓଲ୍ଡ୍*

*ଟେଷ୍ଟାମ୍ୟାଣ୍ଟ*ର ଗ୍ରୀକ୍ ଅନୁବାଦରେ । *ନିଉ ଟେଷ୍ଟାମ୍ୟାଣ୍ଟ* ମୂଳରୁ ଲେଖାଯାଇଚି ଗ୍ରୀକ୍‌ରେ; ଅର୍ଥାତ୍ ଗସ୍‌ପେଲ୍-ପ୍ରଣେତା ନିଜେ ଇହୁଦୀ ହେଲେସୁଦ୍ଧା ଗ୍ରୀକ୍‌ଭାଷାରେ ଥିଲେ ପାରଙ୍ଗମ । ନିଜ ରଚ଼ନାକୁ ପୁରାଣର ମର୍ଯ୍ୟାଦାଦେବାକୁ ଏକରକମ ବାଗଢଙ୍ଗର ଉପଯୋଗ ତାଙ୍କପାଇଁ ମଧ୍ୟ ହୋଇଥିବ ସ୍ୱାଭାବିକ, ସମ୍ଭବତଃ ଅପ୍ରତିରୋଧ୍ୟ ।

ପୁରାତନ ଜୁଡାଇଜ୍ମରୁ ଯୀଶୁଙ୍କ ପ୍ରସ୍ଥାନବିନ୍ଦୁକୁ ବୟୋଜ୍ୟେଷ୍ଠ ଗସ୍‌ପେଲ୍-ଲେଖକ ମାର୍କ ଚିହ୍ନିତକରିଚନ୍ତି ଜଳସଂସ୍କାର ମାଧ୍ୟମରେ ବ୍ୟାପିଷ୍ଟ୍ ଜନ୍‌ଙ୍କ ପାଖରୁ ଦୀକ୍ଷାଗ୍ରହଣ,..the beginning of the gospel of Jesus Christ (ମାର୍କ ୧:୧) । ଅର୍ଥାତ୍ ଜୁଡ଼ାଇଜ୍ମ ରହିଲା ପଛରେ, ନୂତନ ଦୃଷ୍ଟିକୋଣର ହେଲା ସୂତ୍ରପାତ । ଅଥଚ ବ୍ୟାପ୍ଟିଷ୍ଟ୍ ଜନ୍, ଇତିହାସ ଦୃଷ୍ଟିରେ, ଥିଲେ ଏପରି ଏକ ବୈରାଗୀ, ନୀତିନିଷ୍ଠା ପ୍ରତିଷ୍ଠାକରିବା ଜୀବନରେ ଯାର ଏକମାତ୍ର ବ୍ରତ । ଜୋର୍ଦନ୍ ନଦୀରେ ଅବଗାହନ ଇତ୍ୟାଦି ତେଣୁ ଆଚାରଶୁଦ୍ଧି ମାତ୍ର, ଉପଚାରରୁ ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ଖୋଜିବା ଅସଙ୍ଗତ । ମାତ୍ର, ଜନ୍‌ଙ୍କ ଆବିର୍ଭାବ ପ୍ରକୃତରେ ମରୁଭୂମିରେ, ଏବଂ ତାଙ୍କ ଭୂମିକା ମଧ୍ୟ କ୍ରାନ୍ତଦର୍ଶୀର । ଆପାମର ଇହୁଦୀଜାତିକୁ ଡାକଦେଇଚନ୍ତି : ଅନ୍ତିମ ବିଚାରର ଦିନ ସମାଗତ, ଏବଂ ସେହିହେତୁ, ପାପୀତାପୀ ପାଇଁ ଏଇ ମୁହୂର୍ତ୍ତହିଁ ଅନୁତାପର ଶେଷ ସୁଯୋଗ; ଏବଂ କେବଳ ସେଇ ଲୋକଙ୍କୁ ଜଳସଂସ୍କାର-ଦୀକ୍ଷା ଦେଇଚନ୍ତି ଯିଏ ବାସ୍ତବିକ୍ ଅନୁତପ୍ତ, ଏବଂ ଏଇ ଦୀକ୍ଷା ମାଧ୍ୟମରେହିଁ ଆସନ୍ନ ଅଗ୍ନିସଂସ୍କାର ସକାଶେ ପ୍ରସ୍ତୁତକରିଚ଼ନ୍ତି ଇହୁଦୀଙ୍କୁ । ତା'ହେଲେ ସହିପାରିବେ ଈଶ୍ୱରଙ୍କ ଅଭିଶାପ, ଅତୀତରେ ଯେମିତି ନିର୍ବାଚିତ ପରିଜନଙ୍କୁ ସାକ୍ଷାତ୍‌ଦେଇଥିଲେ ମରୁପ୍ରାନ୍ତର ଭିତରେ, ଉପସ୍ଥିତ ସଙ୍କଟରେ ଆଉଥରେ ସେମିତି ଦେଖାଦେବେ ଭଗବାନ୍—ଗୂଢ଼ ଏଇ ବିଶ୍ୱାସରେ ମରୁବିଚ଼ରଣର ତିତିକ୍ଷାରେ ଜର୍ଜର ଜନ୍, ସ୍ୱଦେଶୀବାସୀଙ୍କୁ ଦୈବରୋଷର ଅଯୋଗ୍ୟ କରିବା ନିମନ୍ତେ ପ୍ରଚଳନକରିଥିଲେ ବ୍ୟାପ୍ଟିଜ୍ମ । ମାତ୍ର ଯୀଶୁ କି ପାପ କରିଥିଲେ ଯେ ଜର୍ଦନ୍‌ନଈରେ ବୁଡ଼ପକାଇ ପାପକ୍ଷାଳନ କରିବା ହେଲା ଦରକାର ? ଯୀଶୁଙ୍କ ଚେଲାଚାମୁଣ୍ଡାଙ୍କ ଭଳି ଶିଷ୍ୟସଂପ୍ରଦାୟ ମଧ୍ୟ ଜନ୍‌ଙ୍କର ରହିଥିଲା; ଏବଂ ଲୋକସମକ୍ଷରେ ଉଭୟଦଳ ଥିଲେ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ । ଖୁବ୍ ସମ୍ଭବତଃ, ସ୍ୱର୍ଗରାଜ୍ୟ ଆସିଗଲାଣି ବୋଲି ଜନ୍ ଘୋଷଣାକରିଦେବା ଫଳରେ ଯୀଶୁ ତତ୍ପରହୋଇ ଗ୍ରହଣକରିଛନ୍ତି ଜଳସଂସ୍କାର; ଅବଶିଷ୍ଟ ପ୍ରଫେଟ୍‌ଙ୍କ ମୁଣ୍ଡଉପରେ ବସାଇଛନ୍ତି ଜନ୍‌ଙ୍କୁ । ମାତ୍ର, 'ସ୍ୱର୍ଗରାଜ୍ୟ'ର ପ୍ରତ୍ୟୟ ଉଭୟଙ୍କ ସକାଶେ ଏକା ନୁହେଁ । ଜନ୍ ରାଜବନ୍ଦୀ

ହେବାପରେ ଯୀଶୁ ସ୍ୱତନ୍ତ୍ରଭାବେ ଜେନେସରେଟ୍ ହ୍ରଦର ଉତ୍ତର-ପଶ୍ଚିମ ଉପକୂଳରେ ଚଳାଇଛନ୍ତି ଏକା ଏକା ପ୍ରଚାରକାର୍ଯ୍ୟ; ଜନ୍‌ଙ୍କ ଭଳି ଲୋକଙ୍କୁ ସିଏ ଡାକିନାହାନ୍ତି ମରୁଭୂମିକୁ । ଅର୍ଥାତ୍, କୃଚ୍ଛ୍ରସାଧନରତ ସନ୍ନ୍ୟାସୀ ଥିଲେ ନାହିଁ ଯୀଶୁ ମରୁବିହାରୀ ଜନ୍‌ଙ୍କ ଭଳି; ତାଙ୍କ କର୍ମଭୂମି ଲୋକାଳୟ, ଜନପଥ, ଜଳାଶୟର ଉପକୂଳ; ଆଉ ତାଙ୍କ ଶ୍ରୋତାଙ୍କ ଭିତରେ ରହିଛନ୍ତି ନାରୀ ଶିଶୁ ବିଧର୍ମୀ ଅନ୍ତ୍ୟଜ । ଆଉ, ସେମାନଙ୍କୁ ଯା କହିଛନ୍ତି ତା ମଧ କୋଉ ଶାସ୍ତ୍ରବଚନ ନୁହେଁ; ଔପଚାରିକ ଧାର୍ମିକ ଦୃଷ୍ଟିକୋଣ ନୁହେଁ ମଧ । ଲୋକକଥା (=ଫୋକ୍‌ଲୋର୍) ବ୍ୟବହାରକରିଛନ୍ତି ସତ, ମାତ୍ର ପାରମ୍ପରିକ ଧର୍ମାନୁଷଙ୍ଗ ବ୍ୟାଖ୍ୟାକରିବା ତାଙ୍କ ଉଦ୍ଦେଶ୍ୟ ନୁହେଁ । ତାଙ୍କ ଆନ୍ଦୋଳନର ସଂଗଠନ ସେଥିପାଇଁ ଚର୍ଚ୍ଚ ନୁହେଁ । ଚର୍ଚ୍ଚ ବାହାରିଛି ବହୁକାଳ ଉତ୍ତାରୁ । କିଙ୍ଗ୍‌ଡମ୍ ଅବ୍ ହେଭନ୍ (=ସ୍ୱର୍ଗରାଜ୍ୟ) ଯୀଶୁଙ୍କ ପାଇଁ ତେଣୁ ପରାବାସ୍ତବ ନୁହେଁ; ଏପରି ଏକ ରାଜ୍ୟ ଯାର ସର୍ବନିୟନ୍ତା ସ୍ୱୟଂ ପରମେଶ୍ୱର, ବିଜାତୀୟ କୋଉ ରୋମାନ୍ ନୃପତି ନୁହେଁ କି ପରାନ୍ନଭୋଜୀ ପୁରୋହିତତନ୍ତ୍ର ନୁହେଁ । ନିଜକୁ ତ୍ରାଣକର୍ତ୍ତା (=ମସିହା) ଘୋଷଣାକରିବା ପ୍ରଶ୍ନ ତେଣୁ ଉଠୁନାହିଁ । ପରାଧୀନ ଜାତିର ସମ୍ପଦ ଏକମାତ୍ର ସ୍ମୃତି; ଯୋଉ ସ୍ମୃତିରେ ମୌଜେସ୍ ଓ ଏଲିଜା ଦେଦୀପ୍ୟମାନ ଏବଂ ଯୀଶୁ ଯୋଉ ସମସ୍ୟାପଟର ସମ୍ମୁଖୀନ, ସେ ପ୍ରେକ୍ଷିତରେ ସିଏଦୁହେଁ ନିଶ୍ଚୟ ବଳଦାୟକ ଅନୁପ୍ରେରଣା । ସେ ପ୍ରେରଣା ସ୍ୱପ୍ନତାଡ଼ିତ ମରୁଚର ସନ୍ନ୍ୟାସୀ ଜନ୍ ନୁହେଁ, ଯଦିଓ ଉଭୟଙ୍କ ଈଶ୍ୱର ସେଇ ଏକାଲୋକ ଯିଏ ସୃଷ୍ଟିର ଆଦ୍ୟପର୍ବରେ ଇହୁଦୀଙ୍କୁ ନିର୍ବାଚିତ କରିଛନ୍ତି ଆପଣା ପରିଜନ, ଆଉ ଚୁକ୍ତି ମଧ କରିଛନ୍ତି ସଙ୍କଟରେ ହେବେ ସହାୟ । 'ପରମେଶ୍ୱର' ଯୀଶୁଙ୍କ ପାଇଁ ଜୀବନ୍ତ ସତ୍ତା, ଇତିହାସ-ପ୍ରସୂତ ନୈତିକତା; ବିମୂର୍ତ୍ତ ଆ୍ୟାବ୍‌ଷ୍ଟ୍ରାକ୍‌ସନ୍ ନୁହେଁ । ଜଗତରେ ମଣିଷ ବଞ୍ଚିରହିବ କି କାରଣରୁ? କାରଣ ଯଦି କିଛି ନ ଥାଏ, ଯୋଉ ଭାବରେ ଯାପନକରୁଛୁଁ ଜୀବନ, ସେଥିରେ କଣ ଆମେ ସନ୍ତୁଷ୍ଟ ? ଶେଷକୁ ଖାଲି ମରିଯିବାପାଇଁ କଣ ବଞ୍ଚିରହିଛୁଁ ? ଉଦ୍ଦେଶ୍ୟ ଯଦି ନାହିଁ, ପୃଥିବୀ ତେବେ ନିରର୍ଥକ । ଉଦ୍ଦେଶ୍ୟ ଯଦି ଖାଲି ଆହାର-ନିଦ୍ରା-ମୈଥୁନ, ଅସ୍ତିତ୍ୱ ତେବେ ଭାରି ଅଳପ । ମଣିଷ ନିଜେ ତେଣୁ ଏକ ଦିବ୍ୟ-ପ୍ରକଳ୍ପ, ଏବଂ ଏକଥା ଉପଲବ୍ଧି କରିବାମାତ୍ରକେ, ବାଛିବାକୁ ପଡ଼ିବ ଅବସ୍ଥାନ, ଅର୍ଥାତ୍ ବାଛିବା ଛଡ଼ା ଅନ୍ୟ ଭବିତବ୍ୟ ଥାଇପାରେନା ମଣିଷର, କୁଆଡ଼କୁ ସିଏ ଯିବ, କି ବାଟରେ ଅତିକ୍ରମକରିବ ନିରର୍ଥକତା, ସୀମାବଦ୍ଧତା, ଉଦ୍ଦେଶ୍ୟହୀନ ଅସ୍ତିତ୍ୱର ପ୍ରାଣାନ୍ତକ ଯନ୍ତ୍ରଣା ? ବାଟ ବାଛିବାକୁ ସହାୟହେଇଛି ଯୀଶୁଙ୍କ ଅନ୍ତର୍ଗତ

ଇତିହାସଚେତନା । ଏବଂ ସେଇ ବାଟରେ ଯାଇ ଗନ୍ତବ୍ୟରେ ଉପନୀତହେବାହିଁ ପରମ ଶାନ୍ତି (=ସାଲ୍‌ଭେସନ୍); ଏବଂ ସେ ଯାତ୍ରା ଯେହେତୁ ବିବେକର ଅଭିଯାନ, ବିଚ୍ୟୁତି ବା ସ୍ଖଳନ, ଆକସ୍ମିକ ବା ଅନିଚ୍ଛାକୃତ ହେଲେସୁଦ୍ଧା, ମଣିଷକୁ କରିବ ସତତ ବିଷଣ୍ଣ; ତାକୁ ଧୋଇଦେଇ ପାରେନା ଜଳଧାରା, ପୋଡ଼ିଦେଇ ପାରେନା ଅଗ୍ନିକଣା । ସେ ବିଷାଦ ଅଭିଯାତ୍ରୀର ନିତ୍ୟସଙ୍ଗୀ, ଏବଂ ପରିଶୁଦ୍ଧିର ଆବଶ୍ୟକ ସର୍ତ୍ତ । ମାତ୍ର, ସଂଘବଦ୍ଧ ପ୍ରଚେଷ୍ଟା ବ୍ୟତିରେକେ ବ୍ୟକ୍ତିଗତ ସାଧନା କେବଳ ନିଃସଙ୍ଗଯାତ୍ରା, ଯା କ୍ଳାନ୍ତିକର; ଏବଂ ଶେଷବିଚାରରେ ନିର୍ବିକଳ୍ପ ଗ୍ଲାନି ଓ ଔଦାସ୍ୟ ।

ଯୀଶୁ ସେଥିପାଇଁ ସ୍ୟାବାଥ୍ ମାନିନାହାନ୍ତି; ଉପବାସ ପରିବର୍ତ୍ତେ ଶନିବାରଦିନ କରିଛନ୍ତି ଶିଷ୍ୟଙ୍କ ସହିତ ଭୂରିଭୋଜନ; ପଚାରିଲେ କହିଛନ୍ତି, ବିଧିନିଷେଧ/ବ୍ରତ ପାଳିବାପାଇଁ ସଂସାରରେ ଜନ୍ମହୋଇନାହିଁ ମଣିଷ, ନିଜ ଆଚରଣକୁ ସଂଯତକରିବାକୁ ମଣିଷ ତିଆରିକରିଛି ବିଧିବିଧାନ ! ସବୁରକମ ଆଚାରଶୁଦ୍ଧି ଉପରେ ରହିବ ମଣିଷ, ମଣିଷ ଉପରେ ଆଚାର ନୁହେଁ । ମୌଜେସ୍ ପ୍ରବର୍ତ୍ତିତ ସମସ୍ତ ଅନୁଜ୍ଞା ଅକ୍ଷରେ ଅକ୍ଷରେ ପାଳନକରିଥିବା ଏକ ଧନୀଯୁବା ପରାମର୍ଶ ଚାହିଁଚି; ତାକୁ କହିଛନ୍ତି, ଧନସମ୍ପତ୍ତି ବିକିଦେଇ ଗରିବଦୁଃଖୀଙ୍କ ଭିତରେ ବାଣ୍ଟିଦିଅ, ତହିଁଉତ୍ତାରୁ ଆସ, କହିବି । ସମ୍ପଦଶାଳୀ ଲୋକ ପକ୍ଷରେ ଭଗବାନ୍‌ଙ୍କ ରାଜ୍ୟରେ ପ୍ରବେଶକରିବା ଦୁରୂହ । ଦୁଇଭାଇ ଜନ୍ ଓ୍ ଜେମ୍‌ସ୍ ଚାହିଁଛନ୍ତି, ସ୍ୱର୍ଗରାଜ୍ୟ ପ୍ରତିଷ୍ଠିତ ହେଲେ, ହେବେ ଯୀଶୁଙ୍କ ଡାହାଣ ଓ ବାଁ ହାତ ! ତାଙ୍କୁ କହିଛନ୍ତି, ଦେଖୁଛ ତ, ରାଜା କେମିତି ପ୍ରଜାଉପରେ କରୁଚି ଅକଥ୍ୟ ଅତ୍ୟାଚାର; କର୍ତ୍ତାବ୍ୟକ୍ତି କେମିତି ନିରୁପାୟକୁ କରୁଛି ନିତ୍ୟଉତ୍ପୀଡ଼ନ; କର୍ତ୍ତା ବନିଯିବାକୁ ଆସିନାହଁ ମୋ କତିକି ! ମୁଁ ମଧ୍ୟ ଆସିନାହିଁ ସେବା ଆଦାୟ କରିବାକୁ, ସଭିଙ୍କ ସେବାକରିବା ଆମ ଜୀବନର ବ୍ରତ । ଗସ୍‌ପେଲ୍ କହୁଛି, ଜେରୁସାଲେମ୍ ଧର୍ମମନ୍ଦିର ଚତ୍ୱରରେ ବସି ସମବେତ ତୀର୍ଥଯାତ୍ରୀଙ୍କୁ ଯୀଶୁ ଦେଇଚନ୍ତି ଯୋଉ ଉଦ୍‌ବୋଧନ, ତା ଏହିପରି : ଗୁରୁ କାହାକୁ କରିବନାହିଁ କି ନିଜେ ବି ହେବନାହିଁ କାହାରି ଗୁରୁ : ଏକମାତ୍ର ଗୁରୁ ସର୍ବନିୟନ୍ତା ଭଗବାନ୍; ଆଉ ସମସ୍ତେ ତାଙ୍କ ସନ୍ତାନ, ସନ୍ତାନଙ୍କ ଭିତରେ ପୁଣି ଗୁରୁ-ଶିଷ୍ୟ ଭେଦ ଆସିବ କୁଆଡୁ ? ପଣ୍ଟିୟୁସ୍ ପିଲାତୁସ୍‌ଙ୍କ ଇଜଲାସରେ ଯୀଶୁଙ୍କ ବିରୋଧରେ ଯୋଉ ଅଭିଯୋଗ ଉଠିଚି, ତା ହେଲା : (୧) ଜେରୁସାଲେମ୍ ଧର୍ମମନ୍ଦିରକୁ ଭାଙ୍ଗି ଚୂରମାର୍‌କରି ତା ଉପରେ ଏପରି ଏକ ମନ୍ଦିର ନିଜେ ତିଆରି କରିବେ, ଯା ମଣିଷ କରିପାରେନା - ଏପରି ଏକ ପ୍ରକାଶ୍ୟ ଘୋଷଣା, (୨)

ପ୍ରଜାମାନଙ୍କୁ ଖଜଣା ନ ଦେବାକୁ ପ୍ରରୋଚନା, (୩) ନିଜକୁ ଇହୁଦୀମାନଙ୍କ ରାଜା ବୋଲି ପ୍ରଚାର.। ପ୍ୟାଲେଷ୍ଟାଇନ୍‌ର ରୋମାନ୍ ପ୍ରକିଓରେଟର୍‌ଙ୍କ ସମ୍ମୁଖରେ ଏଇ ତିନିଟି ଥିଲା ସରକାର ତରଫରୁ ଅଭିଯୋଗ । ଗସ୍‌ପେଲ୍ କହୁଛି, ଫ୍ୟାରିସି ଯୀଶୁଙ୍କୁ ପଚାରିଲେ, ରୋମ୍‌ର ସମ୍ରାଟ୍‌ଙ୍କୁ ରାଜସ୍ୱ ଦେବା ଉଚିତ କି ନୁହେଁ, ଖଜଣା ଦେବା କି ନାହିଁ । ଯୀଶୁ କୁଆଡ଼େ ସିଧା ଉତ୍ତର ନଦେଇ କହିଲେ, ଗୋଟିଏ ମୁଦ୍ରା ଆଣ । ମୁଦ୍ରା ଅଣାଯିବାରୁ, ଗୋଟାଏ ପଟ ଦେଖାଇ ପଚାରିଲେ, ଏ କା ମୂର୍ତ୍ତି ? ଖୋଦାଇହୋଇଛି ଫେର୍ ଏ କା ନାଁ ? ଫ୍ୟାରିସି କହିଲେ, ଏ ତ ମହାମାନ୍ୟ ସିଜାର୍‌ଙ୍କ ପ୍ରତିଛବି, ନାଁ ବି ତାଙ୍କରି । ସେକଥା ଶୁଣି ଯୀଶୁ କୁଆଡ଼େ କହିଲେ, ସିଜାର୍‌ଙ୍କ ପ୍ରାପ୍ୟ ସିଜାର୍‌ଙ୍କୁ ଦିଅ, ମାତ୍ର ଭଗବାନ୍‌ଙ୍କର ଯା ପ୍ରାପ୍ୟ, ଦେବାକୁ ଭୁଲିଯାଅନା । ଯୋଉ ଲୋକ ନାଁରେ ସରକାରୀ ନଥିରେ ଖବର ଅଛି ଯେ ସିଏ ଖଜଣା ପଇଠକରିବାକୁ ପ୍ରଜାଙ୍କୁ ବାରଣକରୁଛି, ସିଏ କୁଆଡ଼େ କହିବ ସିଜାର୍‌ଙ୍କ ପ୍ରାପ୍ୟ ସିଜାର୍‌ଙ୍କୁ ଦେଇଦିଅ ! ସନ୍ଦେହ ନାହିଁ, ଗସ୍‌ପେଲ୍‌ପ୍ରଣେତା ମଧ୍ୟ ରୋମ୍‌କୁ ଖୁସୀକରିବା ସକାଶେ ଉଦ୍‌ଭାବନ କରିଛନ୍ତି ଏ ଆଖ୍ୟାନ, କାହିଁକିନା, ସମଗ୍ର ଗସ୍‌ପେଲ୍ ରଚିତହୋଇଛି ତଥାକଥିତ ରେଜରେକ୍ସନ୍(=ମୃତଶରୀରରୁ ଯୀଶୁଙ୍କ ପୁନର୍ଭବ) ପରବର୍ତ୍ତୀକାଳରେ, ଚର୍ଚ୍ଚ ପରିଭାଷାରେ ଯା ପୋସ୍ଟ-ଇସ୍ଟର୍ ।

ବାସ୍ତବ ପରିସ୍ଥିତି ହେଲା, କ୍ରମାଗତ ଇଜିପ୍ଟ ଆସିରିଆ ବ୍ୟାବିଲନ୍ ପାରସ୍ୟ ଓ ସିରିଆ ଇତ୍ୟାଦି ସାମ୍ରାଜ୍ୟର ନିଘନ ପ୍ରତିବେଶୀ ହେବାହେତୁ କ୍ଷୁଦ୍ର ଏଇ ଇହୁଦୀ ରାଜ୍ୟ ଥିଲା ସବୁବେଳେ ଉତ୍ତ୍ୟକ୍ତ । ଫଳତଃ, ଯୋଉ ଦଶ-ବାରଟି ଜାତି-ଉପଜାତିରେ ଇହୁଦୀ ସମାଜ ବିଭାଜିତ, ପ୍ରାଧାନ୍ୟ ବଜାୟରଖିବାକୁ ତାଙ୍କ ଭିତରେ ଲାଗିରହିଛି ନିରନ୍ତର ଅନ୍ତର୍ବିବାଦ; ସେଥିପାଇଁ ଶେଷକୁ, ରାଜନୀତିକ ସ୍ୱତନ୍ତ୍ରତା ହରାଇ ବ୍ୟାବିଲନ୍‌କୁ ହୋଇଯାଇଛନ୍ତି ନିର୍ବାସିତ (ଖ୍ରୀଷ୍ଟପୂର୍ବ ୫୮୬-୫୩୮) ଏବଂ ସେଦିନଠୁଁ କୋଉନା କୋଉ ବିଦେଶୀଶକ୍ତି ପାଖରେ ରହିଛନ୍ତି ନତଶିର ପ୍ରଜା । ମଝିରେ କେବଳ ତିନିବର୍ଷ (ଖ୍ରୀଷ୍ଟପୂର୍ବ ୧୬୮-୧୬୫) ମ୍ୟାକବୀୟ ଯାଜକବଂଶ ଇହୁଦୀଙ୍କୁ କରିଥିଲେ ସ୍ୱାଧୀନ । ଆଉ, ସଲୋମନ୍ ନିର୍ମାଣକରିଥିବା ଧର୍ମମନ୍ଦିରକୁ ହେରଦ୍ ବୃହଦାକାରରେ ପୁନର୍ଗଠିତ କରିଥିଲେସୁଦ୍ଧା, ତାଙ୍କ ଭାବଗତ ଆନୁଗତ୍ୟ ଥିଲା କିନ୍ତୁ ହେଲେନୀୟ । ଦେଉଳକୁ ଅନବଦ୍ୟ ଆକୃତିଦେବାକୁ ଲାଗିଛି ଖ୍ରୀ.ପୂ. ୨୦ରୁ୬୪; ଆଉ ଖ୍ରୀ.ପୂ. ୭୦ରେ ତାକୁ ଭାଙ୍ଗି ଚୂର୍‌ମାର୍ କରିଦେଇଛନ୍ତି ଟାଇଟୁସ୍, ଯିଏ ନ'ବର୍ଷ ଉତାରୁ ହୋଇଛନ୍ତି ରୋମ୍‌ର

ସମ୍ରାଟ୍ । ଜୁଡିଆର ପ୍ରକିଉରେଟର୍ ପୋଣ୍ଟିଅସ୍ ପାଇଲେଟ୍ (ପନ୍ତିୟୁସ୍ ପିଲାତୁସ୍) ରାଜତ୍ୱକରିଛନ୍ତି ଜେରୁସାଲେମ୍ ଉପରେ; ଯୀଶୁ କ୍ରୁଶବିଦ୍ଧହେବା ଉତାରୁ ଆହୁରି ଛତିଶବର୍ଷ । ଯୀଶୁଙ୍କ ନିଜ ଅଞ୍ଚଳ ଗ୍ୟାଲିଲି, ଯେହେତୁ ବିଦେଶୀ ଉପନିବେଶ, ଜୁଡିଆର ଇହୁଦୀ ଗ୍ୟାଲିଲିକୁ ଦେଖିଛନ୍ତି କୃପାକଟାକ୍ଷରେ । ଏବଂ ଗ୍ୟାଲିଲିର ଭାଷା ଯେହେତୁ ଆରାମାଇକ୍, ହିବ୍ରୁ ପରମ୍ପରାର ଧର୍ମକର୍ମ ମଧ ସେଠି ଅର୍ବାଚୀନ, ମାତ୍ର ରୋମ୍‌ପ୍ରତି ପ୍ରତିରୋଧ ଆସିଛି ସବାଆଗେ ସେଇଠୁ, ସମ୍ଭବତଃ ହେଲେନିଜ୍ମ ସେଠି ଦାନାବାନ୍ଧିଥିଲା ବୋଲି । ଅନ୍ୟ ଶବ୍ଦରେ, ରୋମାନ୍ ପ୍ରଭୁତ୍ୱ ପ୍ରତି ସବୁଯାକ ଇହୁଦୀ ସମ୍ପ୍ରଦାୟର ମନୋଭାବ ଏକାରକମ ଥିଲାନାହିଁ । ଯାଜକଶ୍ରେଣୀ ଅନୁମୋଦନ କରିଛନ୍ତି ରୋମାନ୍ ଆଧିପତ୍ୟ; ଅବଶିଷ୍ଟ ଲୋକ, କିଏ ପ୍ରକାଶ୍ୟ ବିରୋଧକରିଛି ତ କିଏ ଗୋପନ-ପ୍ରତିରୋଧ । ରାଜନୀତିକ ଏଇ ଦୃଶ୍ୟପଟରେ ଧର୍ମଭିତ୍ତିରେ ଐକ୍ୟପ୍ରତିଷ୍ଠା ସହଜକଥା ନୁହେଁ । ଧର୍ମରେ ମଧ ଦେଖାଯାଇଛି ବ୍ୟାପକ ବିଭାଜନ । ଯେପରି, ଗସ୍‌ପେଲ୍ କହୁଛି, ଫ୍ୟାରିସୀ କାହିଁକି ବିରୋଧକରିଛନ୍ତି ଯୀଶୁଙ୍କୁ ପାରୁପର୍ଯ୍ୟନ୍ତ । କାହିଁକିନା, ଫ୍ୟାରିସୀ ହେଲେ ଆପୋଷହୀନ ଐତିହ୍ୟବାଦୀ; ପାଲେଷ୍ଟାଇନ୍‌ର ଅପରାପର ଇହୁଦୀଗୋଷ୍ଠୀ, ତାଙ୍କ ବିବେଚନାରେ, ବର୍ଣ୍ଣସଙ୍କର, ତେଣୁ ମିଶ୍ରଜାତି । ସେମିତି, ପାପମୋଚନ କରିପାରନ୍ତି ଏକମାତ୍ର ଈଶ୍ୱର; ଯୀଶୁ କିଏ ଯେ ଲୋକଙ୍କୁ କରିବ କଳୁଷମୁକ୍ତ, ସିଏ ପୁଣି ଈଶ୍ୱରନିର୍ଦ୍ଦିଷ୍ଟ ସ୍ୟାବାଥ୍ ମଧ ମାନେନା ! କି ଅଧିକାରରେ କହୁଛି ସିଏ ଅବତାର, ମସିହା ? ଭିନ୍ନ ଭିନ୍ନ ପରିସ୍ଥିତିରେ ଏକାଉତ୍ତର ଦେଇଛନ୍ତି ଯୀଶୁ : ଯା ଘରେ ଶହେ ମେଣ୍ଢା ଅଛନ୍ତି, ସେଥିରୁ ଗୋଟାଏ ଯଦି ବାଟହୁଡ଼ି ହଜିଯାଏ, ଗୃହସ୍ଥ କଣ ଖରାତରାରେ ଖୋଜିବାକୁ ବାହାରିପଡ଼େନା ? ତାହାରି ଖିଅଧରି 'ପ୍ରଡିଗାଲ୍ ସନ୍' (=ବାଳୁଙ୍ଗା ପୁଅ) ଆଖ୍ୟାନର ଅବତାରଣା । ଅଧିକାରଭେଦ ବିଷୟରେ ଯୀଶୁ ଓଲଟା ପ୍ରଶ୍ନକରିଛନ୍ତି, 'ବ୍ୟାପ୍ଟିଷ୍ଟ୍ ଜନ୍ କା ପାଖରୁ ଅଧିକାର ପାଇଥିଲେ ଜଳସଂସ୍କାର ବାଟଦେଇ ପାପକ୍ଷାଳନ କରିବାକୁ ? ଦୀକ୍ଷାଦେବା ଅଧିକାର ସିଏ ଭଗବାନ୍‌ଙ୍କ ପାଖରୁ ପାଇଥିଲେ ନା ମଣିଷ ପାଖରୁ ? ଆଗେ ମୋ ପ୍ରଶ୍ନର ଉତ୍ତର ଦିଅ; ତେବେଯାଇ ଦେବି ତୁମ ପ୍ରଶ୍ନର ଉତ୍ତର ।' ଫ୍ୟାରିସୀ ବୁଦ୍ଧିମାନ୍ ଲୋକ; କହିଛନ୍ତି 'କୂଟକପଟ ପ୍ରଶ୍ନପଚାରି ଲାଭନାହିଁ, ଆମ କଥାର ଜବାବ ଦିଅ ।' ଯୀଶୁଙ୍କ ଉତ୍ତର: ତା' ହେଲେ, ଜାଣି ରଖ, ଅଯୋଗ୍ୟ ଲୋକ ହାତରୁ ଦାୟିତ୍ୱ କାଢ଼ିନେଇ ନିଜ ରାଜ୍ୟଭାର ଦେବେ ଈଶ୍ୱର ଯୋଗ୍ୟଲୋକ ହାତରେ, ତା' ହେଲେ ଯାଇ ଦାୟିତ୍ୱର ହୋଇପାରେ ସଦ୍‌ବ୍ୟବହାର ।

'ଫ୍ୟାରିସୀ 'ଶବ୍ଦର ଅର୍ଥ 'ସ୍ୱତନ୍ତ୍ର ପାର୍ଟି' ଏବଂ ଏମାନଙ୍କ ଅଭ୍ୟୁଦୟ ମ୍ୟାକ୍‌ବିୟନ୍ ରାଜତ୍ୱକାଳରେ । ତାଙ୍କ ବୈଶିଷ୍ଟ୍ୟର ହେତୁ 'ତୋରାହ୍' ବା ଇହୁଦୀ ଧର୍ମାନୁଶାସନ ପ୍ରତି ଐକାନ୍ତିକ ନିଷ୍ଠା, ଭକ୍ଷ୍ୟ-ଅଭକ୍ଷ୍ୟ ବିଚାର, ସମଳ-ନିର୍ମଳ ଭେଦ, ଉପାସନା-ଉପବାସ ଅକ୍ଷରେ ଅକ୍ଷରେ ପାଳନ, ଇସ୍‌ଲାମ୍‌ରେ ଯେମିତି ସରିୟତ୍ । କୋଉ ଏକ ଭବିଷ୍ୟତ୍-ପୃଥିବୀକୁ ମଧ୍ୟ ପ୍ରତ୍ୟାଶାକରିଛନ୍ତି ଫ୍ୟାରିସୀ ଯା ଏକମାତ୍ର ଈଶ୍ୱରାଜ୍ଞାରେ ପରିଚାଳିତ; ବିଶ୍ୱାସକରିଛନ୍ତି ମୃତବ୍ୟକ୍ତି ପାଇବ ପୁନର୍ଜୀବନ; ଆଉ ଡେଭିଡ୍-ବଂଶୋଦ୍‌ଭବ ମସିହା ବି ଆସିବ ଯିଏ ଜେରୁସାଲେମ୍‌କୁ ଦିନେ ମୁକ୍ତକରିବ ବିଧର୍ମୀ କବଳରୁ । ସେଥିପାଇଁ, ଯୀଶୁଙ୍କ ସହିତ ତାଙ୍କ ସମ୍ପର୍କକୁ ଅବିମିଶ୍ର ବୈରତା କହିବା ଯଥାର୍ଥନୁହେଁ । ବ୍ୟକ୍ତିବିଶେଷ ବିରୋଧକରିଛନ୍ତି ନିଶ୍ଚୟ, ମାତ୍ର ସାମୂହିକ ବିଦ୍ୱେଷ ଅନୁମାନ ମାତ୍ର । ତେବେ, ଏକଥା ଅବଶ୍ୟ ସତ ଯେ ପାରମ୍ପରିକ ଧର୍ମମତକୁ ମନୁଷ୍ୟକୃତ ବିଧିବିଧାନ ବୋଲି ପ୍ରତ୍ୟାଖ୍ୟାନକରିଛନ୍ତି ଯୀଶୁ ବେଳେବେଳେ; ଗ୍ରାହ୍ୟ କରିନାହାନ୍ତି ଈଶ୍ୱରଙ୍କ ମୁଖନିଃସୃତ ଅନୁଜ୍ଞା ବୋଲି । ରାଜସ୍ୱ-ସଂଗ୍ରହକାରୀ ଓ ପାପୀତାପୀଙ୍କ ପ୍ରତି ଅବାରିତ ତାଙ୍କ ଅନୁକମ୍ପା କ୍ରୁଦ୍ଧକରିଥିବ ଫ୍ୟାରିସୀଙ୍କୁ; କିନ୍ତୁ ଯୀଶୁଙ୍କୁ ଶୂଳିରେ ଚଢ଼ାଇବାକୁ ଚକ୍ରାନ୍ତକରିଥିଲେ ଖାଲି ସେଇ କାରଣରୁ, ଏକଥା କହିବା ମଧ୍ୟ ଚକ୍ରାନ୍ତ; କାହିଁକିନା, ସଂଖ୍ୟାରେ ଥିଲେ ଫ୍ୟାରିସୀ ନଗଣ୍ୟ, ସମାଜରେ ତାଙ୍କ ପ୍ରଭାବ ଥିଲା ମଧ୍ୟ ସଂଖ୍ୟାନୁପାତିକ ।

ଆଉଗୋଟେ ସମ୍ପ୍ରଦାୟ 'ସାଦୁକୀ'; ଜେରୁସାଲେମ୍‌ର ଯାଜକଶ୍ରେଣୀ । ଫ୍ୟାରିସୀଙ୍କ ତୁଳନାରେ ଜନସାଧାରଣଙ୍କ ଉପରେ ଏମାନଙ୍କ ପ୍ରଭାବ ଆହୁରି ବେଶି ନଗଣ୍ୟ । ତା'ଛଡ଼ା, ଜେନିସିସ୍ ଏକ୍ସଡସ୍ ଇତ୍ୟାଦି ପ୍ରାଚୀନ ଐତିହ୍ୟ ବାହାରେ ଡେଭିଡ୍‌ରାଜାର କୋଉ ବଂଶଧର ମସିହାହୋଇ ଆସିବ, କି ମଲାମଣିଷ ପୁଣି କବରଭିତରୁ ଜୀଇଉଠିବ, ଏଭଳି ମାଳିକା ପ୍ରତି ଥିଲା ତାଙ୍କର ଘୃଣା ଆଉ ଅବଜ୍ଞା; ଏବଂ ସେଇ କାରଣରୁ, ଫ୍ୟାରିସୀଙ୍କ ସାଙ୍ଗରେ ସାଦୁକି ମେଣ୍ଟବାନ୍ଧିଥିବା ଅବାନ୍ତର ଅନୁମାନ । ତଥାପି, ସାନ୍‌ହେଡ୍ରିନ୍ (=ଇହୁଦୀଙ୍କ ଶୀର୍ଷତମ ଧର୍ମଅଦାଲତ)ରେ ସାଦୁକୀ ଥିଲେ ପ୍ରଧାନ, ରୋମାନ୍ ରାଜପୁରୁଷଙ୍କ ସହିତ ଖାତିର୍ ବି ଥିଲା ସମ୍ଭବତଃ ସର୍ବାଧିକ । ମାତ୍ର, ସତୁରି ଖ୍ରୀଷ୍ଟାବ୍ଦରେ ଜେରୁସାଲେମ୍-ମନ୍ଦିର ଧ୍ୱଂସହେବା ବେଳକୁ, ରୋମାନ୍ ସେନାନୀ ସହିତ ଯୁଦ୍ଧକରି ସାଦୁକୀ ହୋଇଯାଇଚ୍ଛନ୍ତି ପ୍ରାୟ ନିଶ୍ଚିହ୍ନ ।

ଗସ୍‌ପେଲ୍ ଆଉ ଏକ ସମ୍ପ୍ରଦାୟକୁ ଉଲ୍ଲେଖ କରିଛି ପୁନଃପୁନଃ : ସ୍କ୍ରାଇବ୍। ଏମାନେ ହିଁ ନକଲକରି ପ୍ରଚାରକରିଥିଲେ ଜୁଦାଇଜ୍ମର ଧର୍ମଶାସ୍ତ୍ର ଏବଂ ଖ୍ରୀଷ୍ଟପୂର୍ବ ପଞ୍ଚମଶତାବ୍ଦୀରୁ ଶିକ୍ଷକ ଓ ବ୍ୟାଖ୍ୟାକାର ଭାବରେ ପ୍ରତିପତ୍ତି ଅର୍ଜନକରିଥିଲେ ସମାଜରେ; ମାତ୍ର କେହିକେହି ସ୍କ୍ରାଇବ୍ ହୋଇଥିଲେ ସାଦୁକୀ, ଆଉକେହି ଜିୟଲଟ୍। ସ୍କ୍ରାଇବ୍‌ଙ୍କୁ ଡାକୁଥିଲେ ରାବାଇ (ଧର୍ମଜ୍ଞ), ସିନ୍ୟାଗଗ୍‌ରେ ତାଙ୍କର ଉଚ୍ଚାସନ। କିନ୍ତୁ ସ୍କ୍ରାଇବ୍ ଏକ ପେସାଦାର ଗୋଷ୍ଠୀ; ପେସାରେ ଯିଏ ଯଥେଷ୍ଟ ଶିକ୍ଷିତ, ସିଏ କେବଳ ହୋଇପାରିବ ରାବାଇ, ତ ସିଏ ଫ୍ୟାରିସୀ/ସାଦୁକୀ/ଜିୟଲଟ୍ ଯୋଉ ଗୋଷ୍ଠୀର ଲୋକ ହେଉ। ଯିଶୁ ନିଜେ କିନ୍ତୁ ସ୍କ୍ରାଇବ୍ ନ ଥିଲେ କି ସେକାମ ପ୍ରତି କେବେ ଅନୁଭବ କରିନାହାନ୍ତି ଆକର୍ଷଣ।

ସାଦୁକୀ ନିଜେ ମୁକାବିଲା କରିଛନ୍ତି ଯୀଶୁଙ୍କୁ, ବସ୍ତୁତଃ କୌତୁକ ଛଳରେ ବିଦ୍ରୁପ। ମୃତମଣିଷ ବଞ୍ଚିଉଠିବା ଗୁଜବକୁ ଉପଲକ୍ଷ୍ୟକରି ପଚାରିଚ୍ଛନ୍ତି, ଦେଖ ଯୀଶୁ, ମହାମାନବ ମୌଜେସ୍ କହିଯାଇଛନ୍ତି, ଯଦି କିଏ ନିଃସନ୍ତାନ ଅବସ୍ଥାରେ ମରିଯାଏ, ମୃତବ୍ୟକ୍ତିର ବିଧବା ତା' ଭାଇକୁ ବିବାହ କରିପାରେ; ଏବଂ ମୃତବ୍ୟକ୍ତିର ବଂଶରକ୍ଷା ସକାଶେ ତାହାହିଁ ବୈଧ ବ୍ୟବସ୍ଥା। ଧର, କେହିଜଣେ ମରିଯିବା ଉତ୍ତାରୁ, ବାକି ଛ'ଭାଇ ପଛକୁପଛ ତା ବିଧବାକୁ ବାହାହେଇଚନ୍ତି; ମାତ୍ର ବିଧବା ଯେହେତୁ ବନ୍ଧ୍ୟା, ବିବାକ ମରିଚ୍ଛନ୍ତି ଆଣ୍ଠୁକୁଡ଼ାହୋଇ। ସ୍ତ୍ରୀଲୋକଟିର ବି କାଳପୂରିଚି ଯଥାରୀତି। ଏକ୍ଷଣି କୁହ, ପ୍ରଳୟ ଶେଷରେ ଯେତେବେଳେ ବଞ୍ଚିଉଠିବେ ସାତଜଣଯାକ, ସେ ନାରୀ ହେବ କାହା ଘରଣୀ ? ଯୀଶୁ ଜବାବଦେଇଚନ୍ତି: ବିବାହକରନ୍ତି କି ବିବାହଦିଅନ୍ତି କେବଳ ଇହଲୋକରେ; ଅମୃତଲୋକ ମର୍ତ୍ତ୍ୟନିୟମରେ ଚଳେନା। ତମେ ନିଶ୍ଚୟ ଜାଣ, ପରମେଶ୍ୱର ମୌଜେସ୍‌ଙ୍କୁ ପ୍ରତ୍ୟାଦେଶଦେଇ କହିଥିଲେ, ମୁଁ ଆବ୍ରାହାମ୍‌ର ଈଶ୍ୱର, ତା ପୁଅ ଆଇଜାକ୍‌ର ଈଶ୍ୱର, ତା' ପୁଅ ଜ୍ୟାକବ୍‌ର ଈଶ୍ୱର। ସିଏ ତେଣୁ ଜୀବନ୍ତମଣିଷଙ୍କ ଈଶ୍ୱର, ମୃତର ନୁହେଁ। ଅମୃତଲୋକରେ ଈଶ୍ୱରଙ୍କଠିଁ ଲୀନହୋଇ ଜୀବିତରହନ୍ତି ସମସ୍ତେ।

ପରବର୍ତ୍ତୀ ପ୍ରଶ୍ନ : ଶାସ୍ତ୍ରବିଧାନ ତ ଦେଖୁଛୁଁ କାଣ୍ଡିକାଣ୍ଡି; ତା ଭିତରୁ କୋଉଟା ତୁମ ମତରେ ସର୍ବଶ୍ରେଷ୍ଠ ? ଯୀଶୁ କହିଲେ, ଦୁଇଟି ଅନୁଶାସନ ମୋ ମତରେ ଅବଶ୍ୟକର୍ତ୍ତବ୍ୟ; (ଏକ) ପରମେଶ୍ୱରଙ୍କୁ ଅଦ୍ୱିତୀୟ ସ୍ଥାନରେ ଅଚଳା ଭକ୍ତି, (ଦୁଇ) ନିଜ ପ୍ରତିବେଶୀକୁ ନିଜଠାରୁ ଭିନ୍ନ ମନେକରିବନାହିଁ, ଏକାରକମ ଶ୍ରଦ୍ଧା ଦେଖାଇବ

ପରିସ୍ଥିତି ନିର୍ବିଶେଷରେ । ଫେର୍ ପ୍ରଶ୍ନ ଆସିଚି, କିନ୍ତୁ ପ୍ରତିବେଶୀ କହିଲେ ତୁମେ ବୁଝ କାହାକୁ ? ଯୀଶୁ ସିଧା ଉତ୍ତର ନ ଦେଇ, ଶୁଣାଇଚନ୍ତି ଆଖ୍ୟାନ: ଜେରୁସାଲେମ୍‌ରୁ ଜେରିକୋ ଯାଉଥିଲା ଜଣେ ଇହୁଦୀ, ବାଟରେ ପଡ଼ିଚି ଚୋରଙ୍କ ହାବୁଡ଼ରେ । ଟଙ୍କାପଇସା ଛଡ଼ାଇନେଇ ବେଦମ ପିଟିଚନ୍ତି ବାଟୋଇକୁ; ଆଉ ଦରମରାକରି ରାସ୍ତାକଡ଼ରେ ପକାଇଦେଇ ଚାଲିଯାଇଚନ୍ତି । ଦୈବାତ୍ ଜଣେ ଇହୁଦୀ-ଯାଜକ ସେ ବାଟରେ ଯାଉଥିଲେ, ମାତ୍ର ଝାମେଲାରେ ପଶିବ କିଏ ଭାବି, ଲୋକଟିକୁ ଅସହାୟ ଦେଖିଲେସୁଦ୍ଧା, ବାଟକାଟି ଚାଲିଗଲେ । ତାଙ୍କ ପଛକୁ ଆସିଲେ ଜଣେ ପୁରୋହିତ, ସିଏ ମଧ୍ୟ ଭ୍ରୂକ୍ଷେପ ନ କରି ନିଜ କାମରେ ଗଲେ ବାହାରି । ଶେଷକୁ ଆସିଲେ ଜଣେ ସ୍ୟାମେରିଟାନ୍ (=ସ୍ୟାମେରିଆର ଲୋକ) । ମୁମୂର୍ଷୁ ଲୋକଟିକୁ ଦେଖିବାମାତ୍ରେ ପାଖକୁ ଯାଇ କ୍ଷତଗୁଡ଼ାକୁ ପୋଛିପାଛି ମଲମଲଗାଇ ପଟି ବାନ୍ଧିଦେଲେ; ନିଜ ଗଧଉପରେ ଶୁଆଇ ନେଇଗଲେ ଅଦୂରବର୍ତ୍ତୀ ଏକ ସରାଇ ଘରକୁ । ସାରାରାତି ଉଜାଗରରହି ଶୁଶ୍ରୂଷା କରିଚନ୍ତି, ଆଉ ସକାଳେ ବିଦାହେବା ବେଳେ ସରାଇ-ମାଲିକ ହାତରେ ଟଙ୍କାଦେଇ କହିଯାଇଚନ୍ତି ସେବା-ଶୁଶ୍ରୂଷାରେ ଯେମିତି ତ୍ରୁଟି ନ ହୁଏ । ଯଦି ଅଧିକ ଖର୍ଚ୍ଚ ହୁଏ, ଫେରିବା ବେଳକୁ ଭରଣା କରିଦେବେ ।

ଏଥର ପାଲଟା ପ୍ରଶ୍ନକଲେ ଯୀଶୁ : କିଏ ତେବେ ତିନିଜଣଙ୍କ ଭିତରୁ ଅସଲ ପ୍ରତିବେଶୀ ? ସାଦୁକୀ କହିଲେ : ସ୍ୟାମେରିଟାନ୍ । ଗସ୍‌ପେଲ୍‌ର ଏଇ 'ଗୁଡ୍ ସ୍ୟାମେରିଟାନ୍' ଏକ୍ଷଣି ଇଂରେଜୀଭାଷାର ଏକ ପ୍ରବାଦବାକ୍ୟ; କିନ୍ତୁ ସ୍ୟାମେରିଟାନ୍‌କୁ ସଦୟହୃଦୟ ପ୍ରତିପନ୍ନକରି ଜୋର୍‌ଦେଇଚନ୍ତି ଯୀଶୁ ଜାତିଗତ ଭେଦାଭେଦ ଉର୍ଦ୍ଧ୍ୱରେ ଇହୁଦୀଙ୍କ ଐକ୍ୟ ଓ ଏକାତ୍ମତା ଉପରେ । କାହିଁକିନା, ସ୍ୟାମେରିଟାନ୍ ଥିଲେ ଜୁଡିୟା ଲୋକଙ୍କ ଆଖିରେ ମ୍ଳେଚ୍ଛ !

ତୃତୀୟ ଦଳର ନାଁ ଜିୟଲଟ୍, ଧର୍ମ ଓ ରାଜନୀତିରେ ବିଦ୍ରୋହୀ । ଏ ଦଳର ଅଭିବୃଦ୍ଧି ସାରା ପାଲେଷ୍ଟାଇନ୍ ସକାଶେ ହୋଇଚି ଭୟାନକ, କାହିଁକିନା, ବିଶ୍ୱାସ କରିନାହାନ୍ତି ଅହିଂସ ସଂଗ୍ରାମରେ, ଦଳରେ ପ୍ରଚୁର ଫ୍ୟାରିସୀ ଥିବାସତ୍ତ୍ୱେ । ଆଦର୍ଶ କିନ୍ତୁ ଥିୟକ୍ର୍ୟାସୀ (=ଦେବତନ୍ତ୍ର) । ଆନ୍ଦୋଳନର ଉପଲକ୍ଷ୍ୟ ଥିଲା, ସିରିଆରେ ଅବସ୍ଥିତ ରୋମାନ୍ ଗଭର୍ଣ୍ଣର୍ କୁଇରିନିଅସ୍‌ଙ୍କ ଜନସୁମାରି ଆଦେଶ; କେତେଲୋକ ଖଜଣା ଫାଙ୍କୁଛନ୍ତି, ଚିହ୍ନଟକରିବା ଅଭିଯାନ । ଆଦ୍ୟାବସ୍ଥାରେ ହିଂସାତ୍ମକ ହେଲେସୁଦ୍ଧା ପ୍ରତିରୋଧର ଧରଣ ଥିଲା ବ୍ୟକ୍ତିଗତ ଆଉ ବିକ୍ଷିପ୍ତ; ମାତ୍ର କାଳକ୍ରମେ ପରିଣତ

ହୋଇଚି ସଶସ୍ତ୍ର ସଂଗ୍ରାମ, ଆଉ ପ୍ରରୋଚିତକରିଚି ଇହୁଦୀ-ରୋମାନ୍ ଯୁଦ୍ଧକୁ ଛ'ଷଠିରୁ ସତୁରି ଖ୍ରୀଷ୍ଟାବ୍ଦ । ଗ୍ୟାଲିଲି ପ୍ରଦେଶର ଗାମାଲା ଅଞ୍ଚଳରୁ ଆସିଥିଲେ ତାଙ୍କ ପ୍ରତିଷ୍ଠାତା-ପୁରୁଷ ଜୁଡାସ୍, ପେସାରେ ସ୍କାଇବ୍ । ଯୀଶୁଙ୍କ ଜୀବଦ୍ଦଶାରେ ଏ ଆନ୍ଦୋଳନର ଶୈଶବ କଟିନାହିଁ; ତଥାପି ଏମାନେ ଲୁଚିଛପି ରୋମାନ୍ ସୈନ୍ୟଙ୍କୁ କରିଚ୍ନ୍ତି ଅତର୍କିତ ଆକ୍ରମଣ । ପ୍ରଶାସନ କାର୍ଯ୍ୟତଃ କଠୋର ହୋଇଚି; ଯାନିଯାତ୍ରାବେଳେ ସାରା ଜେରୁସାଲେମ୍ ଛାଇଯାଇଚି ସୈନ୍ୟସାମନ୍ତରେ ଏବଂ ବିଶୃଙ୍ଖଳାଦମନ କାମରେ ସୈନ୍ୟ ହୋଇଚ୍ନ୍ତି ନିର୍ବିଚାର ଓ ନିର୍ମମ, କାହିଁକିନା, ଉତ୍ସବ ପାଳିବାକୁ ଦେଶସାରା ଇହୁଦୀ ଆସି ଭିଡ଼କରୁଥିଲେ ଜେରୁସାଲେମ୍‌ରେ; ରାଜଦ୍ରୋହ (=ଟ୍ରିଜନ୍)ର ସମ୍ଭାବନା ଥିଲା ପ୍ରବଳ । କିଭଳି ଘଟଣା ହେଇଚି ଯୀଶୁଙ୍କ ପ୍ରାଣନାଶର କାରଣ, ଏଥିରୁ ହିଁ ବୁଝାପଡ଼ିବ । ଜିୟଲଟ୍‌ଙ୍କ ଲକ୍ଷ୍ୟ ତ୍ରିବିଧ : ପାଲେଷ୍ଟାଇନ୍ ଭୂଖଣ୍ଡରେ ଦେବତନ୍ତ୍ର ପ୍ରତିଷ୍ଠା; ପ୍ରତିଶ୍ରୁତ ମସିହା ଦ୍ୱାରା ଇହୁଦୀଙ୍କ ପ୍ରତିପାଳନ; ବିଧର୍ମୀକୁ ଧ୍ୱଂସ ଆଉ ବିଜାତୀୟ ପ୍ରଭୁତ୍ୱର ଅବ୍‌ସାନ । ଅଷ୍ଟାଦଶ ଶତକରେ ପ୍ରଥମେ ଆବିଷ୍କୃତହେଲା, ଯୀଶୁଙ୍କ ସଂସ୍ରବ ଥିଲା ଜିୟଲଟ୍‌ଙ୍କ ସାଙ୍ଗରେ ଘନିଷ୍ଠ; ସେ ଅନୁମାନ ଏବେ ବଳପାଇଛି, କାହିଁକିନା, କ୍ରୁଶବିଦ୍ଧକରି ପ୍ରାଣହରଣ ଇହୁଦୀ ଦଣ୍ଡବିଧିର ଅନ୍ତର୍ଗତନୁହେଁ, ସେଭଳି ଦଣ୍ଡଦେବା ଅଧିକାର ବି ଥିଲା ଏକମାତ୍ର ରୋମାନ୍ ପ୍ରକିଉରେଟରଙ୍କର; ରାଜଦ୍ରୋହୀଙ୍କୁ କେବଳ କ୍ରୁଶଉପରେ ଚଢ଼ାନ୍ତି, ଅନ୍ୟ ଅପରାଧୀଙ୍କୁ ଶିରଚ୍ଛେଦ, ପ୍ରାଣଦଣ୍ଡର ତାହାହିଁ ଥିଲା ଚିରାଚରିତ ବିଧାନ ।

ଶେଷ ଦଳଟି ଅବଶ୍ୟ ଏସିନ୍ । ଏସିନ୍‌ଙ୍କ ଭୌଗୋଳିକ ଦୂରତ୍ୱ ବାକି ତିନିଦଳଠୁଁ ବିସ୍ତର; ଜୋର୍ଦନ୍ ସୀମାରେ ଡେଡ୍ ସି' (=ମୃତ ସାଗର) କୂଳରେ ଉତ୍ତର -ପଶ୍ଚିମକୁ ଏସିନ୍‌ଙ୍କ ଘାଟି, କୁମ୍‌ରାନ୍ ସମ୍ପ୍ରଦାୟ ପରି ବିଚ୍ଛିନ୍ନତାବାଦୀ ଅବଶ୍ୟ । ୧୯୪୭ରେ ପ୍ରତ୍ନଖନନ ଆବିଷ୍କାରକରିଛି ଚମକପ୍ରଦ ଉପାଦାନ (=ଡେଡ୍ ସି ସ୍କ୍ରୋଲଜ୍); ଆଭାସ ମିଳୁଚି, ଏସିନ୍ ସମ୍ପ୍ରଦାୟର ଭାବାଦର୍ଶ ଏପରି ଥିଲା ଯେ, ଉଭୟ ବ୍ୟାପିଷ୍ଟ ଜନ୍ ଓ ଯୀଶୁଙ୍କ ଧର୍ମଧାରଣା ସହିତ ତାର ସାଯୁଜ୍ୟ ଦିଶୁଚି ଅନ୍ତରଙ୍ଗ । ଫ୍ୟାରିସିଙ୍କ ଭଳି ଖ୍ରୀଷ୍ଟପୂର୍ବ ଦ୍ୱିତୀୟଶତକରେ ଜେରୁସାଲେମ୍‌ର ପୁରୋହିତଶ୍ରେଣୀ ସହିତ କଳହ କାରଣରୁ ପ୍ରଚଳିତ ଧର୍ମଧାରାରୁ ଅଲଗାହୋଇଯାଇ ପୂଜାର୍ଚ୍ଚନା ଓ ଜୀବନଚର୍ଯ୍ୟାରେ ଏସିନ୍ ଗୁରୁତ୍ୱଦେଇଛନ୍ତି ଆବହମାନ କଠୋରତାକୁ, ଯୋଉ କଠୋରତା ହେଲେନିକ୍ ଆକ୍ରମଣରେ ନଗରାଞ୍ଚଳରେ ହୋଇଯାଇଚି ଶିଥିଳ । କୁମ୍‌ରାନ୍ ଜନଗୋଷ୍ଠୀର ଚାରିତ୍ରିକ

ବୈଶଷ୍ଟ୍ୟ ବୋଲି ବିବେଚିତହୋଇଛି କୋଳାହଳମୁଖର ଜଗତରୁ ଦୂରରେରହି ଈଶ୍ୱରଙ୍କୁ ନିଭୃତଆରାଧନା, ଏବଂ ଅପରାପର ଇହୁଦୀଙ୍କୁ 'ଅନ୍ଧକାରର ସନ୍ତାନ' ଜ୍ଞାନରେ ଅବଜ୍ଞା । ସାଂଗଠନିକ ଶୃଙ୍ଖଳା ପ୍ରତି ମଧ୍ୟ ଅନୁଦାର ମନୋଭାବ । ଏବଂ, ବିଶ୍ୱରହସ୍ୟ ସମ୍ପର୍କରେ ଅଲୌକିକ ପ୍ରତ୍ୟାଶା ଯେ, ଇତିହାସଗତିରେ ହସ୍ତକ୍ଷେପକରିବେ ପରମେଶ୍ୱର ଯଥାକାଳେ; ଯେ, ସେ ହସ୍ତକ୍ଷେପ ହେବ ନାଟକୀୟ; ଯେ, ତା ପରିଣାମ ପ୍ରଳୟପରି ଭୟଙ୍କର । ମାତ୍ର, କୁମ୍‌ରାନ୍/ଏସିନ୍-ଙ୍କ ଥିୟଲଜି (=ବ୍ରହ୍ମବିଦ୍ୟା) ସହିତ ଗସ୍‌ପେଲ୍-ବର୍ଣ୍ଣିତ ଯୀଶୁବଚନର ପରମ୍ପରା ସମାନ୍ତରାଳ ହେଲେସୁଦ୍ଧା, ଜନ୍ ଦ ବ୍ୟାପ୍ଟିସ୍ଟଙ୍କ ସହିତ ପ୍ରଭେଦ ଉଲ୍ଲେଖଯୋଗ୍ୟ; ଯେପରି, ପାପକ୍ଷାଳନର ଶେଷ ସୁଯୋଗ ବୋଲି ଏସିନ୍‌ଙ୍କ ବିଚାରରେ କିଛିହେଲେ ଥାଇପାରେନା; ପୁଣି, ଥରେମାତ୍ର ଅବଗାହନ କଳଙ୍କମୋଚନ ସକାଶେ ଯଥେଷ୍ଟ ମନେକରନ୍ତିନାହିଁ ଏସିନ୍ । କାଳଚେତନା ଓ ଈଶ୍ୱରଙ୍କ ଅକସ୍ମାତ୍ ଆବିର୍ଭାବର ଭୂଗୋଳ ମଧ୍ୟ, ଜନ୍‌ଙ୍କ ଚିନ୍ତାରେ, ବିସ୍ତର ରହସ୍ୟମୟ; ଏସିନ୍‌ଙ୍କ ଅବବୋଧ ଏ ବିଷୟରେ ଅନିର୍ଦ୍ଦିଷ୍ଟ, କାହିଁକିନା, ଈଶ୍ୱର କୋଉଜାଗାରେ ଆତ୍ମପ୍ରକାଶ କରିବେ କି କୋଉ କାଳବେଳରେ, ଈଶ୍ୱରଙ୍କ ପ୍ରତିମା ହେବାସତ୍ତ୍ୱେ, ମଣିଷ ସେଇ ଦୈବଇଚ୍ଛାକୁ ଭେଦକରିପାରେନା । ମଣିଷ କେବଳ ମହାପ୍ଲାବନକୁ ସମ୍ମୁଖୀନହେବା ନିମନ୍ତେ ନିଜକୁ ପ୍ରସ୍ତୁତକରିପାରେ । ସେହିପରି, ଗସ୍‌ପେଲ୍-ବର୍ଣ୍ଣିତ ଧର୍ମପ୍ରଚାର ସହିତ ମୌଳିକ କିଛି ବିରୋଧ; ଯେପରି, ଯୀଶୁଙ୍କ 'ସାଲ୍‌ଭେସନ୍' (=ମୋକ୍ଷପ୍ରାପ୍ତି) ପ୍ରତ୍ୟୟରେ ନ୍ୟାୟ-ଅନ୍ୟାୟ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ଭଳି ବିବେକପ୍ରଣୋଦିତ ପାର୍ଥକ୍ୟର ଅନୁପସ୍ଥିତି, ଅଥବା ପାପୀତାପୀ (=ସମାଜ ଯାହାଙ୍କୁ ବିବେଚନାକରେ ଅଶୁଚି; ଯେପରି, ଉତ୍କୋଚଗ୍ରହୀତା ଟ୍ୟାକ୍ସସଂଗ୍ରାହକ କିମ୍ୱା ବାରବନିତା) ପ୍ରତି ସହୃଦୟତା, ନିର୍ବିଶେଷ ଅନୁକମ୍ପା ।

ଗସ୍‌ପେଲ୍, ଯୀଶୁଙ୍କୁ ଜଗତ୍‌ତ୍ରାତା ରୂପରେ ଚିତ୍ରଣକରି ଗ୍ଲୋବାଲାଇଜ୍ କରିଛି; ମାତ୍ର ରୋମାନ୍ ପ୍ରଶାସକ ହେରଦ୍-ପୁତ୍ରକୁ ଯୀଶୁ ଗାଳିଦେଇଛନ୍ତି 'କୋକିଶିଆଳ' (=ଫକ୍ସ), (ଲ୍ୟୁକ୍ ୧୩:୩୨); ଆଉ ପଣ୍ଟିଅସ୍ ପାଇଲେଟ୍ ଯୀଶୁଙ୍କୁ ହାଜତରେ ରଖିଚନ୍ତି ବାରାବାସ ସାଙ୍ଗରେ, ଯିଏ ଖାଲି ଜିଅଲଟ୍ ବିଦ୍ରୋହୀ ନୁହେଁ, ରୋମାନ୍ ସୈନ୍ୟକୁ ହତ୍ୟାକରିଚି ବୋଲି ଧରାହୋଇ ଜେଲ୍‌କୁ ଆସିଚି । ପାସ୍‌ଓଭର୍ ପରବ ଅବ୍ୟବହିତରେ ଜେରୁସାଲେମ୍ ମନ୍ଦିର ଉପରେ ଯୀଶୁଙ୍କ ସଦଳବଳ ଚଢ଼ାଉ ମଧ୍ୟ ଯାଜକତନ୍ତ୍ର ଉପରେ ବଳାତ୍କାର (ଯାଜକଶ୍ରେଣୀ ଥିଲା ରୋମାନ୍ ଆଧିପତ୍ୟର ସମର୍ଥକ), ଆଉ ଗେଥ୍‌ସେମାନେରେ ଯୀଶୁ କୟେଦ୍‌ହେଲାବେଳେ ଅନ୍ତତଃ ଜଣେ ପାର୍ଶ୍ୱଚରର

ସଶସ୍ତ୍ର ପ୍ରତିରୋଧ (ଲ୍ୟୁକ୍ ୬:୧୫; ଆ୍ୟାକ୍ଟସ୍ ୧:୧୩) ବିଚାରକଙ୍କ ଦୃଷ୍ଟିରେ ଯୀଶୁଙ୍କୁ ପ୍ରତିପନ୍ନକରିଛି political messianic pretender ଏବଂ enemy of the state (ଦ୍ର. *ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା;* ମ୍ୟାକ୍ରୋପିଡିଆ, ଭଲ୍ୟୁମ୍ ୧୦, ପୃ:୧୪୮) । ଅସ୍ତ୍ରଧାରୀ ଏଇ ଶିଷ୍ୟଟିର ନାଁ ସାଇମନ୍; ସିଏ ଜଣେ ଜିଅଲଟ୍ ।

ଧର୍ମାଭିଯାତ୍ରା ଆରମ୍ଭରୁ ଆମୃତ୍ୟୁ, କିଏ ଥିଲେ ତାଙ୍କ ଶତ୍ରୁ କି ମିତ୍ର *ଦି କେମ୍ବ୍ରିଜ୍ କମ୍ପାନିଅନ୍ ଟୁ ଜିଜସ୍* ଗ୍ରନ୍ଥରେ, ସେ ବିଷୟରେ କୁହାଯାଇଚି : ଶତ୍ରୁ ଆଉ ମିତ୍ରହିଁ ସଂଜ୍ଞାବଦ୍ଧ କରିପାରନ୍ତି ଆମ ସାମାଜିକ ସ୍ଥିତିକୁ, ଅର୍ଥାତ୍ ଲୋକଟି ପ୍ରକୃତରେ କିଏ ଆଉ କଣ ହେବାକୁ ଚାହେଁ, ଜଣାପଡ଼େ ଯେତେବେଳେ ସିଏ ଅନ୍ୟକାହାରି ଆଚରଣ, ଚିନ୍ତା କି ଅନୁଭବକୁ ଅନୁମୋଦନ ଅଥବା ଅବଜ୍ଞାକରେ, ଏବଂ ସେଇ ବାଟଦେ, ତିଆରିହୁଏ ସଖ୍ୟ ହେଉ କି ବୈପରୀତ୍ୟ । ସେ ଦୃଷ୍ଟିରୁ, ବ୍ୟାପ୍ଟିଷ୍ଟ୍ ଜନ୍‌ଙ୍କ ପ୍ରଭାବ ଯୀଶୁଙ୍କ ଉପରେ ପ୍ରବଳ, କାହିଁକିନା, ଶୁଚି କହିଲେ ନିର୍ଦ୍ଦିଷ୍ଟ କି ଜିନିଷ, କୋଉନାକୋଉ ରୀତିରେ, ଯୀଶୁଙ୍କ କାର୍ଯ୍ୟକଳାପରେ ଜନ୍‌ଙ୍କ ସେଇ ଶୌଚଦୀକ୍ଷା ପ୍ରତିଫଳିତ ହୋଇଚି ଅବିରାମ । ଗସ୍‌ପେଲ୍ କହୁଚି, ଉଭୟଙ୍କ ଭେଟହୋଇଛି ଯୀଶୁ ଯେତେବେଳେ ପରିଣତବୟସ୍କ; ପ୍ରକୃତରେ କିନ୍ତୁ ଯୀଶୁ ଥିଲେ ଆଯୌବନ ତାଙ୍କ ଶିକ୍ଷାନବିସ । ଜନ୍‌ଙ୍କ ସମ୍ବନ୍ଧରେ *ଆ୍ୟାଣ୍ଟିକ୍ୱିଟିଜ୍*ରେ ଜୋସିଫୁସ୍ (=ଜୋସିଫୁସ୍ ଫ୍ଲାବିୟସ୍, ଇହୁଦୀ ସେନାପତି ଓ ଐତିହାସିକ, ଜନ୍ମଗ୍ରହଣକରନ୍ତି ଜେରୁସାଲେମ୍‌ରେ ଆନୁମାନିକ ୩୭ ଖ୍ରୀଷ୍ଟାବ୍ଦରେ ଏବଂ ରୋମ୍‌ରେ ଥାଇ ଲେଖିଛନ୍ତି ଇହୁଦୀଙ୍କ ଧର୍ମ ଓ ଇତିହାସ ସମ୍ବନ୍ଧରେ ପ୍ରାମାଣିକ ବିବରଣ । ଯୀଶୁ ଯଦି ୩୩ ଖ୍ରୀଷ୍ଟାବ୍ଦଯାଏଁ ବଞ୍ଚିଥିଲେ, ତାଙ୍କ ତିରୋଧାନର ମାତ୍ର ଚାରିବର୍ଷଉତାରୁ ଯୋସିଫୁସ୍ ହୋଇଛନ୍ତି ଭୂମିଷ୍ଠ; *ଆ୍ୟାଣ୍ଟିକ୍ୱିଟିଜ୍* ତେଣୁ ଗସ୍‌ପେଲ୍ ଅପେକ୍ଷା ଢେର୍ ପୁରାତନ) ଯା ଲିପିବଦ୍ଧକରିଛନ୍ତି, ତଦନୁସାରେ, ବିଧବୀ ଭ୍ରାତୃବଧୂ ହେରୋଦିଆକୁ ରାଜା ଆ୍ୟାଣ୍ଟିପସ୍ ଉନ୍ମତ୍ତହୋଇ ବାହାହୋଇପଡ଼ିଥିଲେ ବୋଲି, ଜନ୍ ପ୍ରକାଶ୍ୟରେ ନିନ୍ଦାକରିଥିଲେ ରାଜାଙ୍କୁ । ବିନା କାରଣରେ ନିଜ ବିବାହିତା ପତ୍ନୀ ତଥା ଆରେତାସ୍‌ଙ୍କ ଝିଅଙ୍କୁ ଛାଡ଼ପତ୍ର ଦେଇଥିଲେ ବୋଲି ଆରେତାସ୍ କ୍ବାଇଁ ଆ୍ୟାଣ୍ଟିପସ୍‌କୁ ଆକ୍ରମଣକରି ଯୁଦ୍ଧରେ ପରାସ୍ତକରିଚନ୍ତି, ଏବଂ ଅଧିକାଂଶ ଇହୁଦୀ, ସେ ପରାଭବକୁ ମନେକରିଛନ୍ତି ଦୈବଦଣ୍ଡ । ଖ୍ରୀଷ୍ଟପୂର୍ବ ୨୦ ବେଳକୁ ବିବାହବିଚ୍ଛେଦ ଓ ବିଧବା ହେରୋଦିଆ (ବଡ଼ଭାଇ ଫିଲିପ୍‌ଙ୍କ ସ୍ତ୍ରୀ) ସାଙ୍ଗରେ ଆ୍ୟାଣ୍ଟିପସ୍‌ର ପରିଣୟ ସମ୍ପନ୍ନହୋଇଯାଇଛି । ଯୋସିଫୁସ୍ ଲେଖିଛନ୍ତି, ଖ୍ରୀଷ୍ଟପୂର୍ବ ୧୯ ବେଳକୁ ତିବେରିଆସ୍

ନାମକ ସହର ବସାଇଛି ରାଜା ଆ୍ୟାଣ୍ଟିପସ୍, ଯା ଜଘନ୍ୟଭାବେ ଆପତ୍ତିଜନକ, କାହିଁକିନା, ତିବେରିଆରେ ଥିଲା ଅନେକ ସମାଧିସ୍ତୂପ; ସେଗୁଡ଼ିକୁ ଭାଙ୍ଗିଦେଇ ଯୌଡ଼ ପ୍ରାସାଦ ନିର୍ମିତହୋଇଛି, ତା ଭିତରେ ପୁଣି ନାନାଦି ପଶୁମୂର୍ତ୍ତି ସ୍ଥାପନକରି କରାଯାଇଚି ପୂଜାପାର୍ବଣ । କଣପାଇଁ ରାଜା ଆ୍ୟାଣ୍ଟିପସ୍ ସର୍ବମାନ୍ୟ *ତୋରାହ୍*କୁ ନିଗ୍ରହକରି ହେଇଥିଲେ ଇହୁଦୀପ୍ରଜାଙ୍କ ଚକ୍ଷୁଃଶୂଳ ? ଉତ୍ତର ଦେଇଛନ୍ତି ସ୍ୱୟଂ ଯୋସିଫୁସ୍, (ତିବେରିଅସ୍, ହିବ୍ରୁ ନାଁ ଟେଭାରିଆ, ଇସ୍ରାଏଲ୍ ଉତ୍ତରଦିଗକୁ ହ୍ରଦକୂଳବର୍ତ୍ତୀ ଏକ ବିନୋଦନକେନ୍ଦ୍ର) ଯେ, ରୋମ୍ ସମ୍ରାଟ୍ ତିବେରିଉସ୍‌ଙ୍କୁ ପ୍ରୀତକରିବା ସକାଶେ ଗ୍ୟାଲିଲିର ହ୍ରଦତଟରେ ତାଙ୍କରି ନାଁରେ ଏ ନଗର ସ୍ଥାପନକରିଥିଲେ ଆ୍ୟାଣ୍ଟିପସ୍, କାହିଁକିନା, ହେରୋଦିଆ ସହିତ ଅବୈଧ ଏଇ ପରିଣୟକୁ ସମ୍ରାଟ୍ ତା ହେଲେ ମାର୍ଜନାକରିଦେବେ । ସେଇ ଏକାଉଦ୍ଦେଶ୍ୟରେ ପିତୁଳାପୂଜା ପ୍ରବର୍ତ୍ତନ (*ଆ୍ୟାଣ୍ଟିକ୍ୱିଟିଜ୍* ୧୮.୩୬) । ଅବଶ୍ୟମ୍ଭାବୀଭାବେ ସ୍ୱୈରାଚାର କ୍ଷୁବ୍ଧକରିଛି ସନ୍ନ୍ୟାସୀ ଜନ୍‌ଙ୍କୁ ଏବଂ ଅନୁଚରବର୍ଗଙ୍କୁ କ୍ଷିପ୍ତ । ଜନ୍‌ଙ୍କ ସମୀପରେ ଦୀର୍ଘକାଳ ପାଠଗ୍ରହଣ କରିବାକାରଣରୁ ଯୀଶୁ କ୍ରମାଗତ ରହିପାରିଛନ୍ତି ଜୁଡିଆରେ, ଜଳସଂସ୍କାର ଦୀକ୍ଷାଦାନରେ ମଧ ହୋଇପାରିଛନ୍ତି ସିଦ୍ଧହସ୍ତ । ଏ କାମ ଯୀଶୁ ଜୁଡିଆରେ କରୁଥିଲାବେଳେ ଜନ୍ ଏକାକାମରେ ରତ ରହିଛନ୍ତି ସାଲେମ୍ ନିକଟସ୍ଥ ଇନନ୍‌ରେ । ଇନନ୍, ଜୋର୍ଦନନଦୀରୁ ଅଳ୍ପବାଟ, ସ୍ୟାମେରିଆକୁ ଲାଗିଛି ଉତ୍ତରପଟ । ଇସ୍ରାଏଲ୍ ଭୂଖଣ୍ଡକୁ ଦୁହିଁଙ୍କ ମଧରେ ଏମିତି ଭାଗକରିନେବା କିନ୍ତୁ ଉଦ୍ଦେଶ୍ୟପ୍ରଣୋଦିତ । ବୟୋଜ୍ୟେଷ୍ଠ ରାବାଇ ବହନକରିଛନ୍ତି କ୍ଲେଶକର ଦାୟିତ୍ୱ, କାହିଁକିନା, ସ୍ୟାମେରିଟାନ୍‌ଙ୍କୁ ଦଳଭୁକ୍ତକରିବା ଥିଲା ଦୁରୂହକର୍ମ । ଦୋଷମୁକ୍ତକରି ତାଙ୍କୁ ଶୁଚିକରିବା ନିଶ୍ଚୟ ଉଲ୍ଲେଖଯୋଗ୍ୟ ଏକ କୃତିତ୍ୱ । ସ୍ୟାମେରିଟାନ୍‌ଙ୍କୁ ଜ୍ୟୁଙ୍କ ସହିତ ସମଭାବକରିବା ଉଦ୍ୟମ ଗସ୍‌ପେଲ୍‌ରେ ମଧ ବର୍ଣ୍ଣିତହୋଇଛି, ଯେପରି, ଜନ୍ ୪.୪-୪୨ ଏବଂ ଲ୍ୟୁକ୍ ୧୦.୩୦-୩୭ । ଟୋମାସ୍‌ଙ୍କ ଗସ୍‌ପେଲ୍‌ରେ ମଧ, ଯୀଶୁ କହୁଛନ୍ତି, ଜଣେ ସ୍ୟାମେରିଟାନ୍‌କୁ ଦେଖିଲେ କାନ୍ଧରେ ବୋହି ମେଣ୍ଢାଛୁଆଟିଏ ନେଇଯାଉଛି ଜୁଡିଆ (ସମ୍ଭବତଃ ଜେରୁସାଲେମ୍ ଦେଉଳରେ ବଳିଦେବ ବୋଲି) । *ବାଇବେଲ୍* ବ୍ୟବହାରକରିଛି ସାଂଧଭାଷା : ସାଲେମ୍ ନିକଟସ୍ଥ ଇନନ୍-ଠିଁ ବ୍ୟାପ୍ଟିସ୍ଟ ଜନ୍ ଜଳସଂସ୍କାର କାମରେ ବ୍ୟସ୍ତଥିଲେ, because there was much water there । ଯୀଶୁ ଓ ଜନ୍‌ଙ୍କ ଭିତରେ ଏ ସଦ୍‌ଭାବ ଓ ସହଯୋଗ କିନ୍ତୁ ସ୍ଥାୟୀହୋଇନାହିଁ, କାହିଁକିନା, ଅନତିବିଳମ୍ବେ ଜନ୍‌ଙ୍କ ଶିଷ୍ୟଙ୍କ ସାଙ୍ଗରେ ଜଣେ ଜ୍ୟୁର ଘଟିଯାଇଛି

ବାକ୍‌ବିତଣ୍ଡା ଜଳସଂସ୍କାର ଉପଚାରକୁ କେନ୍ଦ୍ରକରି (ଜନ୍ ୩.୨୫)। ସେ ଜ୍ୟୁଜଣକ କିଏ ସ୍ୱୟଂ ଯୀଶୁ ? ଅଭ୍ରାନ୍ତ ପ୍ରମାଣ ମିଳିବନାହିଁ; କିନ୍ତୁ ଜ୍ୟୁଟିର ନାମୋଲ୍ଲେଖ କରିବାକୁ ଗସ୍‌ପେଲ୍ କଣପାଇଁ କୁଣ୍ଠିତ ଯଦି ସିଏ ଯୀଶୁ ନୁହେଁ ? ଏ ମତଭେଦରୁ ଉପୁଜିଛି ଦୁଇଟି ପରିଣାମ; ଆ୍ୟାଣ୍ଟିପସ୍ ସନ୍ନ୍ୟାସୀଙ୍କୁ ପ୍ରାଣଦଣ୍ଡ ଦେବାଯୋଗୁଁ ଯୀଶୁଙ୍କ ଆନ୍ଦୋଳନକୁ ମନେକରାଯାଇଚି ସମ୍ଭାବ୍ୟ ରାଜଦ୍ରୋହ; ଆଉ ନିମଜ୍ଜନଜନିତ ଶୁଦ୍ଧିକ୍ରିୟା ମଧ୍ୟ ହୋଇଯାଇଛି ଗୁରୁ ଓ ଶିଷ୍ୟଙ୍କ ଭିତରେ ବିଚ୍ଛେଦର ହେତୁ। ଏକ୍ଷଣି ଦେଖିବା କଥା, ପାଣି ଗଡ଼ିଗଡ଼ି ଗଲା କେଉଁବାଟ? ଗସ୍‌ପେଲ୍ ପ୍ରଣେତା ଯା କହନ୍ତୁ, ରଜା ଆ୍ୟାଣ୍ଟିପସ୍ କିନ୍ତୁ ବିରୂପ ନୁହେଁ, କାହିଁକିନା, ଜନ୍ ଯା କରୁଥିଲେ, ଯୀଶୁ ତା କରିପାରିନାହାନ୍ତି ଆଉକେବେ। ଡୁବନ ଜରିଆରେ ଯୀଶୁଙ୍କୁ ଦୀକ୍ଷାଦେଇଥିଲେ ଜନ୍, କଥାଟା ତେଣୁ ଅପବାଦ। ଆଉ, ଆ୍ୟାଣ୍ଟିପସ୍ କ୍ରୁଦ୍ଧହୋଇ ଯୀଶୁଙ୍କୁ ଶାସ୍ତିଦେବାକୁ ଉଦ୍ୟତ ହୋଇଚି, ତାର କାରଣ, ଡୁବନ ଛାଡ଼ିଦେଇ ଯୀଶୁ ଧରିଚ୍ଛନ୍ତି ହାତୁଡ଼ିଆ ଡାକ୍ତରୀ; ରଜା ଖବରପାଇଚି କୁଷ୍ଠରୋଗୀ, ଅନ୍ଧ, ପାଗଳ, ଅପସ୍ମାରଗ୍ରସ୍ତଙ୍କୁ ଆରୋଗ୍ୟକରୁଛନ୍ତି ଯେମିତି ଝଡ଼ାଫୁଙ୍କାକରି, ସ୍ତ୍ରୀଲୋକଙ୍କ ରକ୍ତପ୍ରଦର ବି ଭଲ କରିଦେଉଛନ୍ତି ଖାଲି ଛୁଇଁଦେଇ। ଯଦିବା ଅନୁମାନକରୁଁ ଯେ କଦବା କେବେ ଏ ଶୌଚ୍‌କର୍ମ ଯୀଶୁ ହୁଏତ କରାଇଥିବେ ଜନ୍ ଦୃଶ୍ୟପଟରୁ ଅନ୍ତର୍ହିତ ହେବାପରେ, ସନ୍ଦେହ ନାହିଁ, ଜଳସଂସ୍କାର ଆଉ ଆନ୍ଦୋଳନର ବିଧିବଦ୍ଧ କର୍ମସୂଚୀହୋଇ ରହିନାହିଁ ଜନ୍‌ଙ୍କ ଶିରଛେଦ ଉତ୍ତାରୁ। ପୁନରାୟ ଆରମ୍ଭହୋଇଛି ରିଜରେକ୍‌ସନ୍ ପରବର୍ତ୍ତୀ କାଳରେ, ବିଶେଷତଃ ପିଟର୍‌ଙ୍କ ଶିଷ୍ୟବୃନ୍ଦ ଭିତରେ। (ପିଟର୍ ମାନେ ପର୍ବତ; ଯୀଶୁଙ୍କଠୁଁ ଏ ନାଁ ପାଇବା ଆଗରୁ ପିଟର୍ ଥିଲା ସାଇମନ୍, ଏବଂ ଲୋକଟି ଏତେଅନୁଗତ ଯେ ବଧଭୂମିରେ ସୁଦ୍ଧା ଯୀଶୁଙ୍କୁ କରିଛି ଅସ୍ୱୀକାର !) ଅର୍ଥାତ୍, 'ଅବଗାହନ' ଯୀଶୁଙ୍କ ଆନ୍ଦୋଳନର ଅପରିହାର୍ଯ୍ୟ ବିଭାବ ରହିଥିଲା ସନ୍ନ୍ୟାସୀ ଜନ୍ କାରାରୁଦ୍ଧ ହେବାଯାଏଁ, ଏବଂ ପୁନଃପ୍ରଚଳିତ ହୋଇଛି ଯୀଶୁଙ୍କ ମୃତ୍ୟୁର ଅବ୍ୟବହିତରେ; ତେଣୁ ମଧ୍ୟବର୍ତ୍ତୀକାଳରେ ଯୀଶୁ ଯେତେବେଳେ ଏକାକୀ ପରିଚାଳନା କରିଛନ୍ତି ଆନ୍ଦୋଳନ, 'ଅବଗାହନ' ରହିଛି ସଂପୂର୍ଣ୍ଣ ସ୍ଥଗିତ। କାହିଁକି ସ୍ଥଗିତରହିଛି, ଜାଣିବା ଏବେ ଦୁଷ୍କର; ମାତ୍ର ଯୋସିଫୁସ୍, ରାଜା ଆ୍ୟାଣ୍ଟିପସ୍ ଓ ରୋମାନ୍ ପ୍ରକିଉରେଟର୍ ପାଇଲେଟ୍ ସମ୍ବନ୍ଧରେ ଯଥେଷ୍ଟ କଟୂକ୍ତି କରିଥିଲେ ସୁଦ୍ଧା ସନ୍ନ୍ୟାସୀ ଜନ୍‌ଙ୍କ ସାଙ୍ଗରେ ବିଶେଷ କୋଉ ସମ୍ପର୍କରେ ଯୀଶୁଙ୍କୁ ବସାଇନାହାନ୍ତି; ଜନ୍‌ଙ୍କ ପ୍ରସଙ୍ଗ ଅବଶ୍ୟ ଉଲ୍ଲେଖକରିଛନ୍ତି, କାହିଁକିନା,

ଇହୁଦୀ ଜନସାଧାରଣ ଭାବିଥିଲେ, ଆ୍ୟାଣ୍ଟିପସ୍‌ର ଦୈବଦଣ୍ଡର ଏକମାତ୍ର କାରଣ, ସର୍ବତ୍ୟାଗୀ ସନ୍ନ୍ୟାସୀଙ୍କ ପ୍ରାଣହରଣ । ହେଲେସୁଦ୍ଧା, ଯୋସିଫୁସ୍ ଜନ୍ ଓ ଯୀଶୁଙ୍କୁ ଯେମିତି ଦେଖାଇଛନ୍ତି କି ଦେଖାଇନାହାନ୍ତି, ଉଭୟଙ୍କ ସମ୍ବନ୍ଧ ଅନୁମାନ କରିହେବ ଏ ଘଟଣାରୁ । ଜନ୍‌ଙ୍କୁ କହିଛନ୍ତି 'ସତ୍‌ଲୋକ', ଆଉ ଯୀଶୁଙ୍କୁ 'ବିଜ୍ଞଲୋକ' ଯିଏ ଦେଖାଇପାରେ ଚମତ୍କାର (=ମିରାକ୍ଲ) । ପ୍ରଫେଟ୍ (=ଆଗତଭବିଷ୍ୟ ଦ୍ରଷ୍ଟା) ବୋଲି କହିନାହାନ୍ତି କାହାରିକୁ, କାହିଁକିନା, ସେ ପଦବୀଟି ରକ୍ଷିତଥିଲା ପ୍ରତାରକଙ୍କ ଲାଗି, ନିଜକୁ ଯିଏ ମୌଜେସ୍ କି ଜୋସୁଆ କହି ଲୋକଙ୍କୁ ମତାଇବେ ରୋମ୍ ବିରୋଧରେ । ଯୋସିଫୁସ୍ ବିଶଦଭାବେ ଲେଖିଛନ୍ତି, ରାଜା ଆଣ୍ଟିପସ୍ ନିମନ୍ତେ ଜନ୍ କେମିତି ହୋଇଉଠିଥିଲେ ତ୍ରାସର କାରଣ; ଅଥଚ ଯୀଶୁଙ୍କ ବିଷୟରେ ଏତିକିରୁ ବେଶି କହିନାହାନ୍ତି ଯେ, ଜେରୁସାଲେମ୍‌ର ପ୍ରଭାବଶାଳୀ ଲୋକଙ୍କ ପ୍ରରୋଚନାରେ ପାଇଲେଟ୍ ତାଙ୍କୁ କ୍ରୁଶଉପରେ ଚଢ଼ାଇଥିଲେ । ଏକଥା ଲେଖିବା ଆଗରୁ ଦେଉଳଭିତରେ ଘଟିଥିବା ଦୁଇଟି ବିବାଦ କଥା କହିଛନ୍ତି ଅବଶ୍ୟ; ମାତ୍ର ଯୀଶୁଙ୍କ ରାଜନୀତି ତାଙ୍କ ଲକ୍ଷ୍ୟ ନୁହେଁ, ଅସଲ ଶରବ୍ୟ ପାଇଲେଟ୍‌ଙ୍କ ଅବଜ୍ଞା ଓ ଔଦ୍ଧତ୍ୟ । ଅର୍ଥାତ୍, ଯୀଶୁଙ୍କୁ ଶୂଳିରେ ଚଢ଼ାଇବା କାରଣ ଆଉଯୋଉ କାର୍ଯ୍ୟକଳାପ ହେଉପଛେ, 'ଅବଗାହନ' ଜମାରୁ ନୁହେଁ । ଯୋସିଫୁସ୍ ସେତକ ଅନ୍ତତଃ କରିଦେଇଛନ୍ତି ପରିଷ୍କାର ।

ଅବଗାହନରୁ କ୍ଷାନ୍ତହେବା କାରଣରୁ, ରାଜନୀତି ପ୍ରେକ୍ଷିତରେ ଅନ୍ତତଃ, ଜନ୍‌ଙ୍କଠୁଁ ଭିନ୍ନଧରଣର ଲୋକ ବୋଲି ପରିଚିତ ହୋଇଛନ୍ତି ଯୀଶୁ, ଏବଂ ସେଇ ସୂତ୍ରରେ, ରାଜରୋଷରୁ ବି ଅବ୍ୟାହତି ପାଇଛନ୍ତି କିଞ୍ଚିତ୍ । ମାତ୍ର ଜନ୍‌ଙ୍କ ସହିତ ପୂର୍ବସଂଯୋଗ ସ୍ମୃତିରେ ରହିଛି ରାଜା ପ୍ରଜା ଉଭୟଙ୍କର । ଏପରିକି, ଧର୍ମାଚାର୍ଯ୍ୟଙ୍କଠୁଁ ବିରୋଧ ସମ୍ମୁଖୀନହୋଇ ଯୀଶୁ ନିଜେ ପଚାରିଛନ୍ତି, ଜନ୍‌ଙ୍କ ଅବଗାହନତତ୍ତ୍ୱ କଣ ପରମେଶ୍ୱରଙ୍କ ସାକ୍ଷାତ୍ ଅନୁଜ୍ଞା ? ନିଜ କର୍ତ୍ତୃତ୍ୱକୁ ବୈଧ ପ୍ରତିପନ୍ନକରିବାକୁ ଜନ୍‌ଙ୍କ ଦୃଷ୍ଟାନ୍ତ ବ୍ୟବହାର କରିବାକୁ ବାଧହୋଇଛନ୍ତି ହୁଏତ, କାହିଁକିନା, ତେବେଯାଇ ଲୋକ ବୁଝିପାରିବେ ତାଙ୍କ ଆଗରୁ ଆଉଜଣେ ମଧ୍ୟ ଶୁଚିତା ବିଷୟରେ ଆହ୍ୱାନ ଦେଇଚ଼ନ୍ତି ଧର୍ମାଚାର୍ଯ୍ୟଙ୍କୁ ଆଉ ପାଇଛନ୍ତି ବିପୁଳ ଜନସମର୍ଥନ । ଏ ସ୍ମୃତି ଯୀଶୁଙ୍କ ବିରୋଧରେ ମଧ୍ୟ ଯାଇଛି; ଯେପରି, ଯୀଶୁଙ୍କ ଚମତ୍କାର ପ୍ରଦର୍ଶନ ଖବର ଶୁଣି ଆ୍ୟାଣ୍ଟିପସ୍ କହିଛି, 'ଏ ହେଲା ସେଇ ଜନ୍, ଯା ମୁଣ୍ଡ ମୁଁ କାନ୍ଧରୁ ଖସାଇଦେଇଥିଲି; ଫେର୍ ଉଠିଆସିଛି ।' ଅର୍ଥାତ୍, ଅବଗାହନ-କର୍ମପନ୍ଥାରୁ ନିଷ୍କ୍ରାନ୍ତହୋଇ ଯୀଶୁଙ୍କୁ ମୁକାବିଲା କରିବାକୁ ପଡ଼ିନାହିଁ

ଅ୍ୟାଣ୍ଟିପସ୍‌କୁ, ଅନ୍ତତଃ କିଛିକାଳ । ତା' ଛଡ଼ା ଅବଗାହନ କର୍ମସୂଚି ବର୍ଜନକରିବା ଯୋଗୁଁ ଜୋର୍ଦନ୍ ଉପତ୍ୟକାରେ ରହିବା ମଧ୍ୟ ଆଉ ଦରକାର ହୋଇନାହିଁ; ଚାଲିଆସିଛନ୍ତି ଗ୍ୟାଲିଲି । ଜନ୍‌ଙ୍କୁ ମୃତ୍ୟୁଦଣ୍ଡ ଦିଆଯିବା କାରଣରୁ, ଜନ୍‌ଙ୍କ ଯୋଉ ଶିଷ୍ୟ ଯୀଶୁଙ୍କ ପ୍ରତି ବୋଧକରିଛନ୍ତି ସଂଭ୍ରମ, ଗ୍ୟାଲିଲିକୁ ଫେରିଆସିଥିବା ଯୀଶୁଙ୍କ ପ୍ରତି ହୁଏତ ହୋଇଥିବେ ଶୀତଳ ଓ ଉଦାସୀନ । କିନ୍ତୁ ଗ୍ୟାଲିଲି, ଯା ସିଂହର ଗୁହା ବୋଲି ବିଦିତଥିଲା ଅ୍ୟାଣ୍ଟିପସ୍‌ଙ୍କ ନୈକଟ୍ୟ ହେତୁ, କି କାରଣରୁ କରିଥିଲା ଯୀଶୁଙ୍କୁ ଆକର୍ଷଣ ? ଯୋସିଫୁସ୍ କହିଛନ୍ତି, ପେରିୟା ପ୍ରଦେଶର ମ୍ୟାକିରସ୍‌ଠିଁ କରାଯାଇଛି ଜନ୍‌ଙ୍କ ଶିରଚ୍ଛେଦନ, ଆଉ ସେହି ଜାଗାରୁ ଅ୍ୟାଣ୍ଟିପସ୍‌ର ପରିତ୍ୟକ୍ତା ପତ୍ନୀ ପଳାଇଯାଇଛି ନ୍ୟାବାଟିଆ, *ଅ୍ୟାଣ୍ଟିକ୍ୱିଟିଜ୍* ୧୮.୧୧୧-୧୨,୧୧୯; ତେଣୁ ଜାଗାଟା ଥିଲା ଅ୍ୟାଣ୍ଟିପସ୍ ଦୃଷ୍ଟିରେ ରାଜଦ୍ରୋହର ଅନ୍ତୁଡ଼ିଶାଳ । ନିଜକୁ ସେଠୁ ପ୍ରତ୍ୟାହୃତକରି ରାଜା ଓ ନିଜ ମଝିରେ ଯୀଶୁ ସୃଷ୍ଟିକରିଛନ୍ତି ନିରୁପଦ୍ରବ ପରିସର ।

ଜର୍ଦନ ଉପତ୍ୟକାର ନଈନାଳ ଥିଲା ସିନା ଜନ୍‌ଙ୍କ କର୍ମକ୍ଷେତ୍ର, ନିଜ କର୍ମକ୍ଷେତ୍ର ଯୀଶୁ ପାଇଚ୍ନ୍ତି ଗ୍ୟାଲିଲିର କ୍ଷୁଦ୍ରାତିକ୍ଷୁଦ୍ର ଜନବସତିରେ ଏବଂ ପରିଶୁଦ୍ଧିର ବିଦିତ ମାନଚିତ୍ର ବଣଜଙ୍ଗଲକୁ ପଛରେପକାଇ ନିଜକୁ କରିଚନ୍ତି ବୁଦ୍ଧିନିର୍ଭର । ରାଜନୀତି ଦୃଷ୍ଟିରୁ କିନ୍ତୁ ଲୋକାଳୟ ବି ଯୀଶୁଙ୍କ ପାଇଁ ଛଦ୍ମବେଶ, କାହିଁକିନା, ବଣଖମାଣ କି ଜର୍ଦନଉପତ୍ୟକା ସାଙ୍ଗରେ ସଂସ୍ରବନାହିଁ ଲୋକାଳୟର; ଅ୍ୟାଣ୍ଟିପସ୍ ସହିତ ଜନ୍‌ଙ୍କ ବିରୋଧର ଜାଗା ମଧ୍ୟ ଥିଲାନାହିଁ ଗ୍ୟାଲିଲି । ପୁଣି, ଅ୍ୟାଣ୍ଟିପସ୍‌ଙ୍କ ରାଜଧାନୀ ସେଫରିସ୍ ପରି ଗ୍ୟାଲିଲି ମଧ୍ୟ ସହର ନୁହେଁ, ଯୋଉଠି ଥିବ କ୍ଷମତାର ଯନ୍ତାକଳ କି ଦୁର୍ଦ୍ଧର୍ଷ ରୋମାନ୍ ସୈନ୍ୟଛାଉଣି । ଅନ୍ୟଥା, ଯୀଶୁଙ୍କ ଭଳି ଜନପ୍ରିୟ ଜଣେ ରାବାଇ, ଯାର ଶିଷ୍ୟ ଆସିଛନ୍ତି ପ୍ରାୟ ସବୁ ଦିଗରୁ ଓ ସବୁ ଗୋଷ୍ଠୀରୁ, ସହରାଞ୍ଚଳର ସୀମା ମାଡ଼ିବାକୁ କରିବ କାହିଁକି ଇତସ୍ତତଃ ? ବିଚିତ୍ର ଏ ଆଚରଣ ପଛରେ କର୍ମଗତ ରଜା ଆଣ୍ଟିପସ୍‌ଙ୍କ ଛେଦହୀନ ଆକ୍ରୋଶ । ଶୁଦ୍ଧିକରଣ କର୍ମସୂଚି ଶତ୍ରୁତାର କାରଣ ନିଶ୍ଚୟ, ମାତ୍ର ଆଉଗୋଟିଏ କାରଣ ମଧ୍ୟ ପ୍ରକଟହୋଇଛି ଯୀଶୁ ଯେତେବେଳେ ଏକମାତ୍ର ସହର ଜେରୁସାଲେମ୍‌ରେ ପ୍ରବେଶକରିଚନ୍ତି ସଦଳବଳ । ପରିଣାମ ହୋଇଚି ଭୟାବହ । ଅର୍ଥାତ୍, ସର୍ବଦା ସତର୍କରହିଚନ୍ତି ଯୀଶୁ, ଆହୁରି ଉଉରକୁ ଜଗିବସିଚି ଯୋଉ ଶତ୍ରୁ, ତାହାରି ପ୍ରତି । ଲ୍ୟୁକ୍ କହୁଚନ୍ତି (୧୩:୩୧-୩୩) *In that hour some Pharisees came forward, saying to him, get out and go*

*from here ! Because Herod (=ଅ୍ୟାଣ୍ଟିପସ୍ ) wants to kill you. And he said to them, you go and say to that fox, Look, I put out demons and will send healings today and tomorrow, and on the third day I will be completed. Except that I must go today and tomorrow and the following day, because it is not acceptable that a prophet should perish outside of Jerusalem !*

ସ୍ପଷ୍ଟତଃ, ଯୋଉକଥା ଚର୍ଚ୍ଚାହେଉଛି, ତା ଆଦିମ ଆଖ୍ୟାନ; କାହିଁକିନା, ଫ୍ୟାରିସି ଏଠି ବନ୍ଧୁଭାବାପନ୍ନ, ଅ୍ୟାଣ୍ଟିପସ୍ ଏକେଲା ଶତ୍ରୁପକ୍ଷ, ଏବଂ ଲ୍ୟୁକ୍‌ଙ୍କ ଯୀଶୁ ନିଜ ସ୍ୱଭାବସିଦ୍ଧ ବାକ୍‌ରୀତି ଛାଡ଼ିଦେଇ, ସତକୁସତ କି ଭାବରେ ମୃତ୍ୟୁକୁ ବରଣକରିବେ, ସେ ବିଷୟରେ ନେଇଛନ୍ତି ଅସ୍ୱଚ୍ଛତାର ଆଶ୍ରୟ । ଅସ୍ୱଚ୍ଛତା, କାହିଁକିନା, କେବେ ଓ କେମିତି ଶହୀଦ୍‌ହେବେ, ସଂଗୋପନରଖି ନିଜକୁ ଆଉପାଞ୍ଚଜଣ ଦିବ୍ୟଦ୍ରଷ୍ଟାଙ୍କ ଗହଣରେ ହଜାଇଦେଇଛନ୍ତି, ଯିଏ ନିଜ ଭବିଷ୍ୟବାଣୀ କାରଣରୁହିଁ ହୋଇଥିଲେ ଇତିହାସର ଶିକାର । ଉଦ୍ଧୃତ ସଂଳାପରୁ ଏତିକିମାତ୍ର ଜଣାପଡୁଛି ଯେ ତାଙ୍କ ବିଚରଣର ଭୂଗୋଳ ସଚେତନଭାବେ ଗଠିତ, ଏକମାତ୍ର ଉଦ୍ଦେଶ୍ୟ : ଅ୍ୟାଣ୍ଟିପସ୍ ପାଖରୁ ଦୂରତ୍ୱ ରହିବ ବିସ୍ତର, ଯେତେଦିନ ଅନ୍ତତଃ ସଂଘାତ ନ ହୋଇଚି ଅନିବାର୍ଯ୍ୟ । ଆଉ, ସମ୍ଭାବ୍ୟ ସେ ସଂଘାତର ଏକମାତ୍ର କ୍ଷେତ୍ର ଅବଶ୍ୟ ଜେରୁସାଲେମ୍ । ମୁକାବିଲା ଯେ ଅବଧାରିତ, ଯୀଶୁ ମନେହୁଏ, ସେ ବିଷୟରେ ମୂଳରୁ ନିଶ୍ଚିତ; ମାତ୍ର ଚରମବିନ୍ଦୁରେ ପହଞ୍ଚିବା ପର୍ଯ୍ୟନ୍ତ, ଜନ୍‌ଙ୍କ ମୃତ୍ୟୁ ଓ ଯୀଶୁଙ୍କ ମୃତ୍ୟୁ ମଧ୍ୟସ୍ଥ କାଳସୀମାରେ ମିତ୍ରତା ଓ ଶତ୍ରୁତା କି ବାଟଦେଇ ଗତିକରିଚି, ସର୍ବାଦୌ ଲକ୍ଷ୍ୟଣୀୟ । ଅବଗାହନ କର୍ମସୂଚୀରୁ ଆତ୍ମସମ୍ବରଣ ଆପେଆପେ କୋଉ ମୀମାଂସା ନୁହେଁ, କାହିଁକିନା, ଜନସମର୍ଥନ ସଂଗ୍ରହସକାଶେ ଯୀଶୁ ପ୍ରବର୍ତ୍ତନକରିଚ଼ନ୍ତି, ତା ଜାଗାରେ, ପଙ୍‌କ୍ତିଭୋଜନ । ଏତେଲୋକଙ୍କୁ ଘରକୁ ଡାକି ଖାଇବାକୁଦେବା କାରଣରୁ ନିଜ ପରିବାର ସହିତ ମଧ୍ୟ ଘଟିଛି ମନାନ୍ତର । ଲୋକଙ୍କ ସାଙ୍ଗରେ ଏକତ୍ରବସି ଭୋଜନ ପ୍ରଧାନ କାର୍ଯ୍ୟକ୍ରମ ହେବାଦିନରୁ ଫଳପ୍ରସୂ ଅନ୍ୟାନ୍ୟ ପ୍ରକଳ୍ପ ହୋଇଯାଇଛି ଗୌଣ, କାହିଁକିନା, ଖାଲି ସେଇ ଉଦ୍ଦେଶ୍ୟରେ, ନ୍ୟାଜାରେଥ୍ ଛାଡ଼ି ଯୀଶୁଙ୍କୁ ଅନ୍ୟତ୍ର ଯିବାକୁ ପଡ଼ିଚି ଘନଘନ । ଗ୍ୟାଲିଲିବାସୀ ଅବଶ୍ୟ ହୃଦୟଙ୍ଗମ କରିଛନ୍ତି ପଙ୍‌କ୍ତିଭୋଜନର ଭାବଗତ ତାତ୍ପର୍ଯ୍ୟ : ବୁଦ୍ଧିବିବେଚନା ପ୍ରତି

ଆବେଦନ : ତାଙ୍କ ସ୍ୱଭୂମି ପବିତ୍ର, ଈଶ୍ୱରଙ୍କ ଅବତରଣ ପାଇଁ ତେଣୁ ଉପଯୁକ୍ତ; ନିଜେ ସମସ୍ତେ ପରିଶୁଦ୍ଧ, କାହିଁକିନା, ଈଶ୍ୱର ତାଙ୍କୁ କ୍ଷମାକରିଛନ୍ତି, ଆଉ ଯୋଉ ଗୁଟି ଏକାସାଙ୍ଗରେ ବସି ଖାଉଛନ୍ତି, ତା' ସେଇ ଦିବ୍ୟ କ୍ଷମାର ନିଦର୍ଶନ । ଜନ୍ତାଳରେ ଯୋଗଦେବାକୁ ଆଗ୍ରହ-ଉତ୍ସାହ ତେଣୁ ବଢ଼ିଛି ଲୋକଙ୍କ ଭିତରେ, ଏବଂ ଯେତିକି ବେଶି ବଢ଼ିଚି, ସାଂସାରିକ କୃତ୍ୟକର୍ମକୁ ପଛରେ ପକାଇ ଯୀଶୁ ହୋଇଛନ୍ତି ସେତିକି ବେଶି ନିକମା । ପରିବାର ଉପରେ ତେଣୁ ପଡ଼ିଛି ପ୍ରଚଣ୍ଡ ଆର୍ଥିକ ଚାପ । ଲ୍ୟୁକ୍ ଯୋଉ ବିତ୍ତବାନ ଅନୁଚରଙ୍କ କଥା ଲେଖିଛନ୍ତି (୮.୨-୩), ଆସିନାହାନ୍ତି ତଥାପି । ଯୀଶୁଙ୍କୁ ଯିଏ ଘରକୁ ଡାକି ଖୁଆଇଚନ୍ତି, ସାମାଜିକ ଶିଷ୍ଟତା ରକ୍ଷାକରି, ପରିବାରଲୋକ ତାଙ୍କୁ ଖୁଆଇଛନ୍ତି କି ତାଙ୍କ ଘରକୁ ଖାଦ୍ୟ ପଠାଇବାକୁ ବାଧହୋଇଛନ୍ତି । ଜେମ୍‌ସ ଆଉ ଜୋସେଫ୍ (ଯୀଶୁଙ୍କ ବଡ଼ଭାଇ) ସେତେବେଳକୁ ବିବାହିତ, ସାନ ଭାଇଭଉଣୀଙ୍କ ଭରଣପୋଷଣ ଭାର ସେମାନଙ୍କ ଉପରେ; ହେଲେସୁଦ୍ଧା, ମା ମେରୀଙ୍କ ଋଣ ମଧ ସେମାନଙ୍କୁ ଶୁଝିବାକୁ ପଡ଼େ (ମାର୍କ୍୬.୩); ଜେମ୍‌ସଙ୍କ ପ୍ରତିକ୍ରିୟା ହୋଇଛି ସ୍ୱତଃ ସେଇ ବଡ଼ପୁଅର ଯା 'ପ୍ରଡ଼ିଗାଲ୍ ସନ୍' ଉପାଖ୍ୟାନରେ ଯୀଶୁ କହିଛନ୍ତି ଶିଷ୍ୟବର୍ଗଙ୍କୁ (ଲ୍ୟୁକ୍ ୧୫.୧୧-୩୨) । ଜେମ୍‌ସଙ୍କୁ ଲାଗିଥିବ, ଯୀଶୁ ଯା କରୁଛନ୍ତି, ସେଥିରେ ଆଉ ଯା ଥାଉ, ଦାୟିତ୍ୱଜ୍ଞାନ ନାହିଁ ଏକେବାରେ । କାହିଁକିନା, ଖାଲି ଅଭ୍ୟାଗତସେବା ନୁହେଁ, ବିନା ବାଛବିଚାରରେ ଲୋକଙ୍କ ସାଙ୍ଗରେ ବସି ଖାଇପିଇ ତାଙ୍କୁ ପରିଶୁଦ୍ଧକରିବା, ଯାହାକୁପାରେ ତାକୁ ଧରାଧରିକରି ଭୂତଛଡ଼ାଇବା, ପରିବାରଲୋକ ପସନ୍ଦକରିବେ ଅବା କାହିଁକି ? ପୁଣି, ପତିତଉଦ୍ଧାର କାମଗୁଡ଼ାକର ଭିତ୍ତି, ଯୀଶୁ ଦାବିକରିଚନ୍ତି, ଈଶ୍ୱରଦତ୍ତ; ସ୍ୱୟଂ ଈଶ୍ୱର ତାଙ୍କୁ ଅଭିଷିକ୍ତକରିଚନ୍ତି ସମଳଙ୍କୁ ନିର୍ମଳକରିବାକୁ, ଅଶୁଚିଙ୍କୁ ଶୁଚିକରିବାକୁ । ଏ ଦାବି ବା ଔଦ୍ଧତ୍ୟ ବିବେଚିତ ହୋଇଛି ଅସହ୍ୟ । ଖାସ୍ ନ୍ୟାଜାରେଥ୍‌ରେ ପଥର ଫିଙ୍ଗି ଯୀଶୁଙ୍କ ପ୍ରାଣନାଶର ଉପକ୍ରମ ସୁଦ୍ଧା ହୋଇଛି (ଲ୍ୟୁକ୍ ୪.୧୬-୩୦) । ଜନ୍ (୭୦୨-୫) ଇଙ୍ଗିତଦେଇଚନ୍ତି, ପରିବାର-ପରିଜନଙ୍କ ସାଙ୍ଗରେ ମତାନ୍ତର ଚାଲିଯାଇଚି ପ୍ରକାଶ୍ୟ ବିଦ୍ୱେଷ ପର୍ଯ୍ୟନ୍ତ । ଫଳତଃ, ନ୍ୟାଜାରେଥ୍ ଛାଡ଼ି ଡେରା ଉଠାଇବାକୁ ପଡ଼ିଛି କାପେରନୋମ୍, ଯୋଉଠି ଆତିଥ୍ୟ ସାଙ୍ଗକୁ ଆନୁଗତ୍ୟ ପାଇଛନ୍ତି ଯୀଶୁ ନିର୍ବାଧ ଓ ନିଃସଙ୍କୋଚ । ଦୁଇହଳ ସହୋଦର, କାପେରନୋମ୍‌ରେ ଯିଏ ବିତ୍ତଶାଳୀ ଭୂସ୍ୱାମୀ, ପିଟର୍ ଓ ଆଣ୍ଡ୍ରୁ, ଆଉ ଜେମ୍‌ସ ଓ ଜନ୍, ହୋଇଛନ୍ତି ତାଙ୍କ ପୃଷ୍ଠପୋଷକ; ଏବଂ ଖ୍ରୀଷ୍ଟପୂର୍ବ ୨୪ ପାଖରୁ ଆନ୍ଦୋଳନର ଅଗ୍ରଦୂତ । ରୋମାନ୍

ଜମିଦାରୀପ୍ରଥାରୁ କିନ୍ତୁ ନିଜକୁ ରଖିଛନ୍ତି ନିରାପଦ ଦୂରତ୍ୱରେ; ନ ହେଲେ, ଅତ୍ୟାଚାରୀ ମ୍ୟାମନ୍ (ଟଙ୍କାକୁ ଯିଏ ଇହକାଳ-ପରକାଳ ମନେକରେ, ଆ୍ୟାରାମାଇକ୍‌ରେ ତାକୁ ଗାଳିଦିଅନ୍ତି, ମ୍ୟାମନ୍)କୁ ସମାଲୋଚନା କରିପାରନ୍ତେନାହିଁ (ଲ୍ୟୁକ୍ ୧୬.୧-୯) । ଏତିକିବେଳେ ଖାଲି ପିଟରଘରକୁ ଯୀଶୁ ଯା-ଆସ କରିନାହାନ୍ତି, ତାଙ୍କ ହାତୁଡ଼ିଆ ଡାକ୍ତରୀର ଖ୍ୟାତି ବା ଅପଖ୍ୟାତି ମଧ ବ୍ୟାପିଯାଇଛି ଚାରିଆଡ଼େ; ଆଉ ଲୋକ ଜାଣିଛନ୍ତି ସିନ୍ୟାଗଗ୍‌କୁ ଗଲେ ଭୂତଗ୍ରସ୍ତ ଦିହରୁ ଅମଙ୍ଗଳ ଝାଡ଼ିଦେବେ ଯୀଶୁ; ମାତ୍ର ନିକଟସ୍ଥ ତାଙ୍କ ବାସସ୍ଥାନ ଆକର୍ଷଣକରିଛି ପ୍ରକୃତ ଆସ୍ଥାବାନ୍ ଅନେକ ଅନୁଚରଙ୍କୁ; ଏବଂ ଏମାନଙ୍କ ଭିଡ଼ରୁ ଅବ୍ୟାହତି ପାଇବାକୁ ଯୀଶୁଙ୍କୁ ବେଳକୁବେଳ ବାହାରିପଡ଼ିବାକୁ ପଡ଼ିଛି କାପେରନୋମ୍‌ରୁ ସଦଳବଳ (ମାର୍କ ୧.୩୫-୩୮; ଲ୍ୟୁକ୍ ୪.୪୨-୪୩) ।

*ନିଉ ଟେଷ୍ଟାମ୍ୟାଣ୍ଟ*‌ରେ ଯେତେ ଶିଷ୍ୟଙ୍କ ନାଁ ଦେଖିବାକୁ ମିଳେ, ସବୁ ସତନୁହେଁ, କାହିଁକିନା, ଯୀଶୁ ଗ୍ୟାଲିଲିରେ ଥିଲାବେଳେ ଦଳଦଳହୋଇ ଲୋକ ଆସିଛନ୍ତି 'ହଲାଖା' ଶିଖି ଅଭ୍ୟାସକରିବାକୁ (ହଲାଖା, ଆ୍ୟାରାମାଇକ୍ ଶବ୍ଦ; 'ଧର୍ମସୂତ୍ର' କୁହାଯାଇପାରେ ଓଡ଼ିଆରେ, ଯା ଅଲଂଘ୍ୟ ବିଧାନ) । ପରବର୍ତ୍ତୀ ଅବସ୍ଥାନକାଳରେ ବାରଜଣ ଶିଷ୍ୟଙ୍କୁ ନିର୍ବାଚନ କରିଛନ୍ତି, ଲୋକଙ୍କୁ ଯିଏ ଉପଦେଶ ଦେବେ କି ଧର୍ମକର୍ମ ଶିଖାଇବେ । ନିର୍ବାଚିତ ଶିଷ୍ୟଙ୍କ ସଂଖ୍ୟା ସତୁରି କି ବାସ୍ତରି ବୋଲି ଲେଖିଛି ଗସ୍‌ପେଲ୍ (ଲ୍ୟୁକ୍ ୧୦.୧); ସେ ସଂଖ୍ୟା ପ୍ରତୀକ ମାତ୍ର, ଦୁନିଆ ତମାମ୍ ବିକ୍ଷିପ୍ତ ଯେତେ ଇହୁଦୀଗୋଷ୍ଠୀ, ତାଙ୍କରି ପ୍ରତୀକ । ଏଲିଜା ବି ବାଛିଥିଲେ ବାରଖଣ୍ଡ ପଥର ।

ଗସ୍‌ପେଲ୍‌ର ଅସଲ ଲକ୍ଷ୍ୟ ଇହୁଦୀ ନୁହେଁ, ଅଣଇହୁଦୀ ବା ଜେଣ୍ଟାଇଲ୍ । ଯୀଶୁବାଣୀର ଔଦାର୍ଯ୍ୟ ଦେଖାଇବାକୁ ପ୍ରଚାରକସଂଖ୍ୟା ତେଣୁ ସ୍ଫୀତକରିବାକୁ ପଡ଼ିଛି । ମୌଜେସ୍ ଅବଶ୍ୟ କୁଳପତି ବାଛିଥିଲେ ସତୁରୀ; କିନ୍ତୁ ଲ୍ୟୁକ୍‌ଙ୍କ ଆଗ୍ରହ ଅନ୍ୟତ୍ର । ସଙ୍ଗତ ସଂଖ୍ୟା ହୋଇପାରେ କୋଡ଼ିଏ କି ତିରିଶ, ଯୀଶୁ ଯାହାଙ୍କୁ ଆ୍ୟାରାମାଇକ୍‌ରେ କହିଛନ୍ତି 'ତାଲ୍‌ମାଦିମ୍' (=ଇହୁଦୀ ଧର୍ମକର୍ମର ବିଶେଷଜ୍ଞ); ଖୁବ୍ ସମ୍ଭବତଃ କ୍ୟାପେରନୋମ୍ ଅଞ୍ଚଳର ପ୍ରତିବେଶୀ, ଯିଏ ପିଲାକବିଲା ସାଙ୍ଗରେଧରି ଯୀଶୁଙ୍କ ପଛେପଛେ ଯାଇଛନ୍ତି ଜାଗାବରଜାଗା । ସମସ୍ତେ ସବୁବେଳେ ସବୁଜାଗରକୁ ଯାଇପାରିବେନାହିଁ, ଏବଂ ବେଳକୁ ବେଳ ଦଳଗୁଡ଼ାକର ପରିଚୟ ବଦଳିଯିବ । ଶିଷ୍ୟ-ପରିଚୟ ବହୁସଂଖ୍ୟକ ହେବାର ତା ଦ୍ୱିତୀୟ କାରଣ । ବଡ଼ବଡ଼ ଦଳରୁ ପ୍ରତିନିଧି ଯିଏ ବଛାହୋଇଛନ୍ତି, ତାଙ୍କଭିତରୁ ଢେର ଲୋକ ଆସିଛନ୍ତି ପୁଣି ଯାଇଛନ୍ତି,

ମତାନ୍ତର ମନାନ୍ତର କାରଣରୁ କେତେ ମଧ୍ୟ ଯାଇଛନ୍ତି ବାହୁଡ଼ି; ଯୀଶୁପ୍ରବର୍ତ୍ତିତ ହଲାଖା ଐକ୍ୟ ଓ ଆନୁଗତ୍ୟକୁ ସ୍ଥାୟୀ କରିପାରିନାହିଁ । ବିଶେଷ ବିବଦମାନ ଏକ ଦୃଷ୍ଟାନ୍ତ ହେଲା, ନିର୍ଦ୍ଦିଷ୍ଟ ଏକ ସ୍ତ୍ରୀଲୋକର ପରିଚର୍ଯ୍ୟାଗ୍ରହଣ; ଲ୍ୟୁକ୍ ସେ ନାରୀକୁ କହିଛନ୍ତି ବାରବନିତା (ଲ୍ୟୁକ୍ ୭.୩୬-୫୦) । ନାରୀ-ଶିଷ୍ୟଙ୍କ ନାଁ ଗସ୍‌ପେଲ୍‌କାର ଲୁଚାଇନାହାନ୍ତି; କିନ୍ତୁ କେବଳ ଏଇ ଜଣକ ଦେହରୁ ଭୂତ ଉତାରିଛନ୍ତି ଯୀଶୁ ପୁନଃପୁନଃ (୮.୧-୩) । ଦୁର୍ନାମ ରଟିବାର କାରଣ ସ୍ତ୍ରୀଲୋକଙ୍କ ସାଙ୍ଗରେ ଧର୍ମାଲୋଚନା ନୁହେଁ, ତାଙ୍କ ଗହଣରେ ପରିଭ୍ରମଣ, ଯା ସନ୍ଦେହ ଓ ବ୍ୟଭିଚାରକୁ ପ୍ରଶ୍ରୟ ଦେଇପାରେ । ଯୀଶୁ ଯେତେବେଳେ ରୁଟି ସେକୁଥିବା ଲଳନାଠିଁ ଦେଖିଚନ୍ତି ଦିବ୍ୟଲୋକର ନିଦର୍ଶନ (ଲ୍ୟୁକ୍ ୧୩.୨୧) ଅଥବା ନିଜକୁ ଚିତ୍ରଣକରିଛନ୍ତି ପକ୍ଷୀଶାବକଙ୍କୁ କୁଳାୟରେ ଏକତ୍ରକରୁଥିବା ମାତା-ପକ୍ଷୀ (ମ୍ୟାଥ୍ୟୁ ୨୩.୩୭), ଚିତ୍ତାକର୍ଷକ ରୂପକଳ୍ପ ଉଦ୍‌ଭାବନ ତାଙ୍କ ଉଦ୍ଦେଶ୍ୟ ନୁହେଁ, କାହିଁକିନା, ଆଧ୍ୟାତ୍ମିକ ବିଚକ୍ଷଣତାର ରସାଳ ଉର୍ବରତା, ଯା ଦିବ୍ୟଲୋକର ମାତୃପ୍ରତିମା (ପ୍ରବାଦ ୮.୨୨-୩୧) ହୋଇରହିଛି ଈଶ୍ୱର୍‌ସମ୍ପର୍କିତ ଚିନ୍ତାର ମୌଳିକ ଉପାଦାନ; ଠିକ୍ ଯେମିତି, ଈଶ୍ୱରଙ୍କ ପ୍ରତିମୂର୍ତ୍ତି ମଣିଷ, ଯୌନତା ମଧ୍ୟ ରହିଚି ସେହିପରି ପ୍ରାଥମିକ ଏକ ଉପସର୍ଗ; ଏପରିକି, ଅନ୍ତତଃ ଗୋଟିଏ ଘଟଣାରେ ଏଇ ଉଇଜ୍‌ଡମ୍ (=ଆଧ୍ୟାତ୍ମିକ ବିଚକ୍ଷଣତା)ର ଦ୍ୱାହିଦେବାକୁ ଛାଡ଼ିନାହାନ୍ତି ଯୀଶୁ (ଲ୍ୟୁକ୍ ୧୧.୪୯) ।

ବିବଦମାନ ଦୃଷ୍ଟିଭଙ୍ଗୀ ହେତୁ ଶିଷ୍ୟ ଯେ ତାଙ୍କୁ ଛାଡ଼ି ପଳାଇଯାଇଛନ୍ତି, ଯୀଶୁ ସେକଥା ସ୍ୱୀକାରକରିଛନ୍ତି ପ୍ରବଚନ ଦେଲାବେଳେ; ଚାଷ ଯେମିତି ହେଇପାରେନା ମେଘ ଛଡ଼ା, ସ୍ୱର୍ଗରାଜ୍ୟର କଥାକୁ ମଞ୍ଜିଭଳି ବିଲରେ ପୋତିଦେଲେ ସୁଦ୍ଧା ଫଳ ମିଳେନା ସବୁବେଳେ; ତାଛଡ଼ା, ଭଲମଞ୍ଜି ସାଙ୍ଗରେ ଅଗାଡ଼ି ବି ବୁଣିଦେଇପାରେ କେହି । ଅଥବା, ମାଛକୁ ଜାଲରୁ କାଢ଼ିଆଣିବାପରେ ମାରିଦେବା ସହଜ ବିନା କାରଣରେ । ଧର୍ମଜ୍ଞାନର ଏ ବିଫଳତା ଯୀଶୁଙ୍କୁ ବାଧ୍ୟକରିଛି ସାଙ୍ଗୋପାଙ୍ଗଙ୍କୁ ତିରସ୍କାର କରିବାକୁ, କାହିଁକିନା, ଅଧିକାଂଶ ପ୍ରମାଣକରିଛନ୍ତି ନିଜକୁ ଅପଦାର୍ଥ, ନ ହେଲେ ଅମାନିଆ । ବିରୋଧ ବଢୁଚି ଦେଖି କ୍ଷିପ୍ତହୋଇଛନ୍ତି ଯେତିକି କାତରହୋଇଛନ୍ତି ତତୋଽଧିକ । ମାତ୍ର, ଜୁଦାଇଜ୍ମରେ ଯିଏ ବଂଶଗତିରେ ଅଭ୍ୟସ୍ତ, ଫ୍ୟାରିସି ହେଲେସୁଦ୍ଧା, ଯୀଶୁଙ୍କ ନବବିଧାନକୁ ମାନିବ କାହିଁକି ବଳେବଳେ ? ରାବାଇ ଯେମିତି ପ୍ରଶ୍ନୋତ୍ତର ଛଳରେ ସଂଶୟ ଭଞ୍ଜନ କରନ୍ତି, ଯୀଶୁ ସେମିତି ଫ୍ୟାରିସିଙ୍କ ଅଭିଯୋଗକୁ

ଖଣ୍ଡନକରିବାକୁ ଚେଷ୍ଟାକରିଛନ୍ତି ଫ୍ୟାରିସି-ରୀତିରେ ଯା ମିଶ୍‌ନାହ୍ (=ମୌଖିକ ଧର୍ମବିଧି) ଭଙ୍ଗୀରେ କଥୋପକଥନ । ହିଲେଲ୍ (ଖ୍ରୀ.ପୂ.୫୦-ଖ୍ରୀ.୧୦) ନାମକ ଜଣେ ର୍‌ୟାବାଇ ଯୁକ୍ତି ଦେଖାଇଥିଲେ ଯେ ପାତ୍ରର ଅଭ୍ୟନ୍ତର ସମଳ କି ନିର୍ମଳ ହେଲେ, ସମଗ୍ର ପାତ୍ରଟିର ଅବସ୍ଥା ତଦନୁସାରେ ହେବ ସମଳ କି ନିର୍ମଳ । ଅଭ୍ୟନ୍ତର ତେଣୁ ନିରୂପଣ କରିବ ଶୁଦ୍ଧତା ବା ଅଶୁଦ୍ଧତା । ଫ୍ୟାରିସିଙ୍କ ସହିତ ତର୍କରେ ଯୀଶୁ ଧରିଚନ୍ତି ସେଇ ନୀତି; ଅନ୍ତରରୁ ନିର୍ଗତହୋଇ ପରିଶୁଦ୍ଧି ପବିତ୍ରକରେ ସମଗ୍ର ସତ୍ତାକୁ । ଜଡ଼ବସ୍ତୁ ମୃତ୍‌ପାତ୍ର ପ୍ରତି ଯଦି ଏ ନିୟମ ପ୍ରଯୋଜ୍ୟ, ଇସ୍‌ରାଏଲ୍-ଅଧିବାସୀ, ଯିଏ ଅନ୍ତଃକରଣରେ ନିର୍ମଳ (=ଉଦ୍ଦେଶ୍ୟ ଯେହେତୁ ସତ୍) ଆଉ ଭୂମିକର୍ଷଣରେ ନିର୍ଲୋଭ, କାହିଁକି ବିବେଚିତ ହେବେନାହିଁ ପାପମୁକ୍ତ ? ଭିତରକୁ ଯା ଯାଏ, ମଣିଷକୁ ତା ମଇଳା କରେନା, ଯା ବାହାରକୁ ବାହାରିଆସେ, ସେଇ ଏକା ମଇଳାକରେ । ଗ୍ୟାଲିଲିର ଜମିରୁ ଯା ଫଳୁଛି, ତାକୁ ପାଣିରେ ବାରମ୍ବାର ଧୋଇଲେ କଣ ବେଶି ବଳଯୁକ୍ତ ହେବ ? ତେଣୁ ହଜାରବାର ଘଷାମଜା କଲେସୁଦ୍ଧା, ମ୍ୟାମନ୍ ସହିତ ଆପୋସ ରୂପକ ଭ୍ରଷ୍ଟାଚାରକୁ ଧୋଇଦେଇ ହେବନାହିଁ; ସେ ଭ୍ରଷ୍ଟାଚାର ଦିନକୁଦିନ ବଢୁଛି ଆଉ କାପେର୍‌ନୋମ୍ ସହିଯାଉଛି ଆଖିବୁଜି । ଅନ୍ୟ ଶବ୍ଦରେ, ଫ୍ୟାରିସିଙ୍କ ଆପତ୍ତିର ଜବାବରେ ଯୀଶୁ କହିଛନ୍ତି, ପରିସ୍ଥିତିକୁ ସମଗ୍ରତାରେ ବିଚାରକରିବା ଦରକାର; ଆଂଶିକ ବିବେଚନାରୁ ଉପଲବ୍ଧି ସମ୍ପୂର୍ଣ୍ଣ ହୁଏନା । ସେମିତି, ଶୁଦ୍ଧ ଅଶୁଦ୍ଧ ମଝିରେ ଆପୋଷ ଥାଇପାରେନା କି ଅନିଶ୍ଚୟତା; ରଫାକରିବା ମନୋବୃତ୍ତି ତେଣୁ ନୈତିକ ଅଧଃପାତଃ । ଫ୍ୟାରିସି, ନଗରବାସୀ ଚତୁର ଲୋକ; ସହରରେ ଦେଖୁଛନ୍ତି ନାନା ମତର ନାନା ପଥିକ, ଜଟିଳ ସେଇ ପରିସ୍ଥିତିରେ ହାତେ ମାପି ଚାଖଣ୍ଡେ ଚାଲିଲେଯାଇ ସମସ୍ତଙ୍କ ସମର୍ଥନ ମିଳିବ; ନ ମିଳବାଯାଏଁ ଆପୋଷ ହିଁ ଶ୍ରେୟଃ ନୀତି । ଗ୍ୟାଲିଲି ଗ୍ରାମାଞ୍ଚଳରୁ ଆଗତ ଯୀଶୁ ଏ ନୀତିର ମର୍ମ ବୁଝିବାକୁ ରାଜିନୁହେଁ । ପରିଶୁଦ୍ଧି ଆନ୍ଦୋଳନରେ, ବିକଳ୍ପ କୋଉ ପ୍ରତୀତି, ପାପମୋଚନ ଧାରଣା ସାଙ୍ଗରେ ରଫା ନ କରି, ସର୍ବଗ୍ରାହ୍ୟ ହେବାକୁ ତେଣୁ ଅବସର ପାଇନାହିଁ । ଜାଣିବା ଉପାୟ ନାହିଁ, ଫ୍ୟାରିସି ସ୍କାଇବ୍ ଆଉ ଯୀଶୁଙ୍କ ପରି ପ୍ରତ୍ୟନ୍ତ ଅଞ୍ଚଳର ଜନଶିକ୍ଷକ ମିଳିତଭାବରେ କୋଉ ସର୍ବମାନ୍ୟ ସିଦ୍ଧାନ୍ତରେ ପହଞ୍ଚିଥାଆନ୍ତେ କି ନାହିଁ, ସେ ସିଦ୍ଧାନ୍ତ ଅନୁସରଣକରି ବ୍ୟାପକ ଗଣଆନ୍ଦୋଳନ ଗଢ଼ିଉଠିପାରନ୍ତା କି ନାହିଁ । କାହିଁକିନା, ଠିକ୍ ସେଇ ସନ୍ଧିକ୍ଷଣରେ ପ୍ରତିଘାତକରି ଆ୍ୟାଣ୍ଟିପସ୍ ଘଟାଇଦେଇଛନ୍ତି ତର୍କବିତର୍କର ଅକାଳ-ଅବସାନ । ଫ୍ୟାରିସି ସତର୍କକରିଛନ୍ତି ଯୀଶୁଙ୍କୁ, କାହିଁକିନା, କିଛିଲୋକଙ୍କ ସାଙ୍ଗରେ

ବିବାଦ ଥିଲେସୁଦ୍ଧା, ଇସ୍‌ରାଏଲ୍‌ର ଶୃଙ୍ଖଳମୁକ୍ତି ଓ ଯୀଶୁଙ୍କ ଶୁଚିତାନିଷ୍ଠା ପାସୋରିନାହାନ୍ତି ଫ୍ୟାରିସୀ ଦଣ୍ଡକପାଇଁ । ଯୀଶୁଙ୍କ ଗୁଣିଗାରୁଡ଼ି ଆଉ ଏଲିଜାଙ୍କ ଅନୁକରଣକରି ଭୋଜବାଜି ପ୍ରଦର୍ଶନ, ଆକର୍ଷଣକରିଛି ରାଜରୋଷ (ମାର୍କ ୬-୧୪.୧୬; ମ୍ୟାଥ୍ୟୁ ୧୪.୧-୨; ଲ୍ୟୁକ୍ ୯.୭-୯) ଆଉ ଅ୍ୟାଣ୍ଟିପସ୍ ଆଗରୁ ଜାଣିଛି ବ୍ୟାପ୍ଟିଷ୍ଟ୍ ଜନ୍‌ଙ୍କ ସହିତ ଯୀଶୁ ଥିଲେ ଘନିଷ୍ଠ । ବୟସ ଯେତେବେଳେ ୨୭, ମାନେ, ସମ୍ରାଟ୍ ତିବେରିଉସ୍‌ଙ୍କ ପଞ୍ଚମ ଅଙ୍କ ବେଳକୁ, ଯୀଶୁ ଏତେ ପ୍ରସିଦ୍ଧ ହୋଇଯାଇଛନ୍ତି ଯେ କାପେରନୋମ୍‌ରେ ଥୟଧରି ରହିବା ସମ୍ଭବହୋଇନାହିଁ । ଅ୍ୟାଣ୍ଟିପସ୍  ଡରରେ, ରଜାର ମୃତ ବଡ଼ଭାଇ ଫିଲିପ୍‌ଙ୍କ ରାଜ୍ୟକୁ ପଳାଇଯାଇଛନ୍ତି ଯୀଶୁ (ପ୍ରଥମେ ବେଥ୍‌ସାଇଦା, ଯୋଉଠି ଶିଷ୍ୟଙ୍କ ବନ୍ଧୁବାନ୍ଧବ ଘର), ମାତ୍ର ସେଠି ରହିଛି ଶତାଧିକ ରୋମାନ୍ ସେନାଙ୍କ ଛାଉଣୀ । ବିବାଦ ମେଣ୍ଟାଇଦେବାକୁ ରୋମାନ୍ ସେନାଧକ୍ଷ ଲୋକ ପଠାଇଲେ ଯୀଶୁ ଜଣାଇଛନ୍ତି ସାଦର ଅଭ୍ୟର୍ଥନା; ଅଥଚ ଏକା ଉଦ୍ଦେଶ୍ୟରେ ଆତ୍ମୀୟସ୍ୱଜନ ଯାଇ ପହଞ୍ଚିବା ବେଳକୁ ମୁହଁଟେକି ଚାହିଁନାହାନ୍ତି ସୁଦ୍ଧା, ପ୍ରବଚନ ଶୁଣାଇବାରେ ରହିଛନ୍ତି ତନ୍ମୟ : 'ଈଶ୍ୱରଙ୍କ ଅନୁଜ୍ଞା ଯିଏ ପାଳନକରେ, ସିଏ ଏକା ମୋ ଭାଇ ଭଉଣୀ ଆଉ ମା' ।' ଆହୁରି ଆଶ୍ଚର୍ଯ୍ୟକଥା, ଡେକାପଲିସ୍ ନଗରୀକୁ ଯୀଶୁଙ୍କ ଅକସ୍ମାତ୍ ଅନୁପ୍ରବେଶ, କାହିଁକିନା, ଦଶଟି ଇଲାକା ଯୋଡ଼ିହୋଇ ଯୋଉ ଗ୍ରୀକ୍ ଉପନିବେଶ, ତାହାରି ନାଁ ଡେକାପଲିସ୍; ନାଗରିକ ସଂସ୍କୃତିରେ ପରିସିକ୍ତ ଗ୍ରୀକ୍, ଯୀଶୁଙ୍କ ଶୁଦ୍ଧ-ଅଶୁଦ୍ଧ ବିତର୍କ କି ଭୋଜବାଜିରେ ଭଳିଯିବା ଲୋକ ନୁହେଁ ସେମାନେ; ଠାଇଁ ପାଇନାହାନ୍ତି ଯୀଶୁ । ମାର୍କ ମ୍ୟାଥ୍ୟୁ ଲ୍ୟୁକ୍ ସମସ୍ୱରରେ କହିଛନ୍ତି, ଗ୍ୟାଲିଲିର ସାଗରଜଳ ନିର୍ମଳ; ଘୁଷୁରି ବୁଡ଼ିବୁଡ଼ି ଡେକାପଲିସ୍ ପାଣିକୁ କରିଦେଇଛନ୍ତି ଭାରି ଅବର୍ଜିଆ ।

ଇସ୍‌ରାଏଲ୍‌ର ଭୌଗୋଳିକ ପରିଧି ବାହାରେ ଆନ୍ଦୋଳନର କେନ୍ଦ୍ର ସ୍ଥାପନକରିବା ବ୍ୟର୍ଥତା ଯୀଶୁଙ୍କୁ ପ୍ରରୋଚିତ କରିଛି 'ଦ୍ୱାଦଶ' ସଂଖ୍ୟା ପ୍ରବର୍ତ୍ତନକରିବାକୁ ପୁନଶ୍ଚ; ସଂପ୍ରସାରିତ ବୃହତ୍ତର ଇସ୍‌ରାଏଲ୍‌ର ଅବାସ୍ତବ ସ୍ୱପ୍ନ ହୁଏତ ବିଭୋରକରିଛି ଚେତନା; ମାତ୍ର ଗ୍ୟାଲିଲିରେ ତାଙ୍କୁ ଗୋଡ଼ାଉଛି ଅ୍ୟାଣ୍ଟିପସ୍, ଫିଲିପ୍‌ରାଜ୍ୟକୁ ପଳାଇଆସି ସୁଦ୍ଧା ଅନୁଭବ କରୁନାହାନ୍ତି ନିରାପତ୍ତା, ଗ୍ୟାଲିଲି ହ୍ରଦର ପୂର୍ବକୁ ଯେତେ ଅଣଇହୁଦୀ ବସତି, ସବୁଠୁଁ ଆସୁଛି ଅବଜ୍ଞା; କୁଆଡ଼କୁ ତେବେ ଯିବେ ? କେମିତି ଅବା ଗ୍ୟାଲିଲିରେ ପହଞ୍ଚି ଶୁଣାଇବେ ସ୍ୱାଧୀନତାର ବାର୍ତ୍ତା ? ନ ଯଯୌ ନ ତସ୍ଥୌ, ଏ ଅବସ୍ଥାରୁ ବାହାରି ଆସିବାକୁ ଉଦ୍ଭାବନକରିଛନ୍ତି ଅଭିନବ ବ୍ୟବସ୍ଥା, ଯା ସ୍ୱର୍ଗରାଜ୍ୟର ବାର୍ତ୍ତା ପହଞ୍ଚାଇଦେବ

ବ୍ୟାପକତର ଜନସମାଜ ସମକ୍ଷରେ; ଅର୍ଥାତ୍ ବାରଜଣ ପ୍ରତିନିଧି ପଠାଇଦେଇଛନ୍ତି ଇସ୍ରାଏଲ୍ ବାହାରକୁ । ଶଲିଆ (=ମଧ୍ୟସ୍ଥ) ଦରକାର ହୁଅନ୍ତି ମଧ୍ୟପ୍ରାଚ୍ୟରେ ବର-କନ୍ୟା ଠିକଣା କରିବାକୁ, ବେପାରବଣିଜରେ ମଧ ଶଲିଆର ମଧ୍ୟସ୍ଥତା ବିଦିତ । ଶଲିଆ ଗ୍ରୀକ୍‌ଭାଷାରେ ଆପୋସ୍ତୋଲୋସ୍, ଇଂରେଜୀରେ ଆପୋସ୍ଟଲ୍ । ଚୁକ୍ତି ସମ୍ପାଦନବେଳେ ଦୂତ ଦରକାର ହେଲାଭଳି, ଯୀଶୁଙ୍କ ପ୍ରକଳ୍ପ ସକାଶେ ବାରଜଣ ନିର୍ବାଚିତ ହୋଇଛନ୍ତି ଦୂତ; ସ୍ୱର୍ଗରାଜ୍ୟର ବାର୍ତ୍ତା ଶୁଣାଇବେ ଆଉ ରୋଗ ନିରାମୟକରିବେ ପରିବ୍ରାଜକହୋଇ । ଗ୍ୟାଲିଲିରୁ ଫିଲିପ୍-ରାଜ୍ୟକୁ ପଳାଇଗଲା ବେଳେ, ସଙ୍ଗୀ ହୋଇଥିଲେ ଏଇ ବାରଜଣ; ଯଥାକ୍ରମେ ପିଟର୍, ଜେମ୍‌ସ ଓ ଜନ୍-ଭ୍ରାତୃଦ୍ୱୟ (ଭାରି କୁହାଳିଆ), ଆ୍ୟାଣ୍ଡ୍ର୍ୟୁ, ଫିଲିପ୍, ବାର୍ଥୋଲୋମିଉ, ମ୍ୟାଥ୍ୟୁ, ଟୋମାସ୍, ଆଉଜଣେ ଜେମ୍‌ସ (ପିତା ନାମ ଆଲ୍‌ଫେଉସ୍), ଥାଡେଉସ୍, ସାଇମନ୍ (ଜିୟଲଟ୍) ଆଉ ଜୁଡାସ୍ ଇସ୍କାରିଅଟ୍ । ଅନ୍ୟ ଶିଷ୍ୟ, ଯେପରି ନ୍ୟାଥାନିଲ୍ ବା କ୍ଲିୟପସ୍, ପ୍ରତିନିଧି ଭୂମିକାରେ ଅବତୀର୍ଣ୍ଣ ହେଲେନାହିଁ, କାହିଁକିନା, ସେ-କାମରେ ଗୌରବ ଯେତେ, କଷ୍ଟକଷଣ ତଦପେକ୍ଷା ବହୁଗୁଣ । ଅନିଶ୍ଚୟତା ଭିତରକୁ ତେଣୁ ସତୁରିଜଣ ଲୋକ ଗୋଡ଼ବଢାଇବା କଥା ନୁହେଁ । ଦୂତ ମୁଷ୍ଟିମେୟ ହେଲେସୁଦ୍ଧା, ତାଙ୍କ କର୍ମସାଫଲ୍ୟ ଯୀଶୁଙ୍କୁ ଏପରି ମୁଗ୍ଧକରିଛି ଯେ ସଂଗ୍ରାମରେ ବଳପ୍ରୟୋଗକୁ ଆଉ ବିଳମ୍ବିତକରିବାକୁ ଚାହିଁନାହାନ୍ତି । ତାର ପୂର୍ବାଭାସ ପାଞ୍ଚହଜାର ଲୋକଙ୍କୁ ଜନ୍ତାଳରେ ଖୋଇବା ଘଟଣା (ଜନ୍ ୬.୧-୧୫; ମାର୍କ ୬.୨୩-୪୪; ମ୍ୟାଥ୍ୟୁ ୧୪.୧୩-୨୧; ଲ୍ୟୁକ୍ ୯.୧୦-୧୭) । ଲ୍ୟୁକ୍ କହିଛନ୍ତି, ଜନ୍ତାଳ ହୋଇଥିଲା ବେଥ୍‌ସାଇଦା ନିକଟରେ; ପାଞ୍ଚହଜାର ଲୋକ ଯୀଶୁଙ୍କ ସାଙ୍ଗରେ ଯାଇଥିଲେ ସିରିଆ ଜଙ୍ଗଲଭିତରକୁ; ମାତ୍ର ସତକୁସତ କେତେଲୋକ ଯାଇଥିଲେ ଜାଣିବା କଠିଣ; କାହିଁକିନା, ଗ୍ୟାଲିଲିର ମୋଟ ଜନସଂଖ୍ୟା ଥିଲା ୧୫୦,୦୦୦ ପାଖାପାଖି, ଅଧାଅଧି ଲୋକ ଇହୁଦୀ, ରହୁଥିଲେ ୨୦୪ ସରିକି ସହର ଓ ଗାଁରେ (ଯୋସିଫୁସ୍, *ଲାଇଫ୍*, ୨୩୫); ହଜାରେ ଲୋକ ହେଲେ ବି, ପୁଷ୍ଟଶରୀର ଇହୁଦୀଙ୍କର ହେବେ ୪ ଶତାଂଶ, ଗ୍ୟାଲିଲୀୟ ଜୁଦାଇଜ୍ମର ଯିଏ ବିଦ୍ରୋହୀ ବାହୁବଳ । ଯୀଶୁଙ୍କ ଆନ୍ଦୋଳନ, ସେ ଦୃଷ୍ଟିରୁ, ରାଜନୀତିରେ ପାଇଛି ଗୁରୁତ୍ୱ; ମାତ୍ର ଅସ୍ତ୍ରବଳ ଆଦୌ ବିଶାଳ ନୁହେଁ । ତଥାକଥିତ ଭାବୀ ଜିୟଲଟ୍ ମାସମାସଧରି ପାହାଡ଼ତଳ ଗାଁଗୁଡ଼ାକରୁ ଦୂରରେ ରହିଛନ୍ତି, ଚାଷବାସ ପଡ଼ିଚି ପଛରେ, ପରିବାରଲୋକ ଜାଣନ୍ତିନାହିଁ ଗଲେ କୁଆଡ଼େ; ଲୁଚିଛପି ଚାଲିଛନ୍ତି ବିସ୍ତୀର୍ଣ୍ଣ ସମତଳରେ ଉତ୍ତର ଆଉ ପୂର୍ବ ଦିଗକୁ ଯେପରି ଆ୍ୟାଣ୍ଟିପସ୍ ଦୃଷ୍ଟିରେ ପଡ଼ିବେନାହିଁ । ପ୍ରକାଶ୍ୟ

କୋଉ ରାଜନୀତିକ କର୍ମସୂଚି ଗ୍ରହଣକରିନାହାନ୍ତି ଯୀଶୁ, ମାତ୍ର ତାଙ୍କ ପ୍ରଲୋଭନର ଯୋଉ ବର୍ଣ୍ଣନା ଦେଇଚନ୍ତି ମ୍ୟାଥ୍ୟୁ (୪.୧ -୧୧) ଓ ଲ୍ୟୁକ୍ (୪.୧-୧୩), ସେଥିରୁ ସୁସ୍ପଷ୍ଟ ଯେ ଅନୁଚରଙ୍କ କଥାରେ ପଡ଼ିନାହାନ୍ତି ଆଦୌ; ନିଜକୁ ରାଜା ଘୋଷଣାକରିବା ଉଚ୍ଚାକାଂକ୍ଷାରୁ ବିରତରହିଚନ୍ତି ଯଥାସାଧ (ଜନ୍ ୬-୧୫)।

ହେଲେନିକ୍ ଜଗତରେ, ଯୀଶୁଙ୍କ ଏ ନୈଶଭୋଜନ (=ଇଉକ୍ୟାରିଷ୍ଟ)କୁ ସ୍ମରଣୀୟକରିବା ସକାଶେ ଲେଖାଯାଇଚି ଅବଶ୍ୟ ଏଇ ଗସ୍ପେଲ୍; ତଥାପି ଜନ୍ତାଳ ଉପରେ ଆରୋପକରାଯାଇଚି ଗଭୀର ପ୍ରତୀକାତ୍ମକ ମୂଲ୍ୟବୋଧ। ଜମାରୁ ପାଞ୍ଚଟା ପାଉଁରୁଟି ଆଉ ପୁଞ୍ଜାଏ ମାଛରୁ ପାଞ୍ଚହଜାର ଲୋକଙ୍କ ଖିଆପିଆ ମେଣ୍ଟିଯିବା ଉତାରୁ, ଶଳିଆ ବଳକା ଖାଦ୍ୟଦ୍ରବ୍ୟକୁ ସଂଗ୍ରହକରିଥିଲେ ବାରଟା ପାଛିଆରେ, ଯୋଉ '୧୨' ପ୍ରାଚୀନ ଇସ୍ରାଏଲର୍ ଜନଗୋଷ୍ଠୀଙ୍କ ପ୍ରତୀକ; ଅନ୍ୟ ଶବ୍ଦରେ ସମଗ୍ର ଇସ୍ରାଏଲ୍‌କୁ ଭୋଜ୍ୟ ଯୋଗାଇବା ପ୍ରତିଶ୍ରୁତି ସେଇ ଜନ୍ତାଳ। ମ୍ୟାଥ୍ୟୁ ଆଉ ମାର୍କ କିନ୍ତୁ ଖାଇବାଲୋକଙ୍କ ସଂଖ୍ୟା ଲେଖିଛନ୍ତି ଚାରିହଜାର, ଆଉ ବାରଝୁଡ଼ି ବଳକାଖାଦ୍ୟ ଜାଗାରେ ମାତ୍ର ସାତଗୁଣ୍ଡା। ଏ '୭' ସମ୍ଭବତଃ ସେଇ ସାତ ଧର୍ମାଚାର୍ଯ୍ୟ, ସଂଗୃହୀତ ପାଣ୍ଠିରୁ ଗ୍ରୀକ୍‌କହୁଥିବା ଶିଷ୍ୟଙ୍କୁ ଖାଦ୍ୟ ଯୋଗାଇଦେବାକୁ ଯିଏ ବଛା ହୋଇଥିଲେ ରିଜରେକ୍ସନ୍ ଅବ୍ୟବହିତରେ। ୧୨ ଯେମିତି ପ୍ରାଚୀନ ଇହୁଦୀ ଲୋକଗୋଷ୍ଠୀର ସଂଖ୍ୟା, ୭୦ ସେମିତି ଅଣ-ଇହୁଦୀ ଜାତି। ପ୍ରତୀକାତ୍ମକ ପ୍ରଲେପ ସତ୍ତ୍ୱେ, ଆଖ୍ୟାନଗୁଡ଼ିକ ତେଣୁ ଇସ୍ରାଏଲ୍‌ର ସଂଖ୍ୟାବାଚକ ପରମ୍ପରାରେ ପ୍ରୋଥିତ।

ହଜାରେ ସରିକି ଏ ଯୋଦ୍ଧା ଅରମାଅସନା ମଝିରେ ନିଜ ଗ୍ରାମ୍ୟତମ୍ବୁ ଖଟାଇ ପଡ଼ିରହିଛନ୍ତି ଏଣେତେଣେ; ଜାଣନ୍ତି, ଖ୍ରୀଷ୍ଟପୂର୍ବ ଚାରିସାଲ୍‌ରେ ଜୁଡାସ୍ (ହେଜେକିଆ ପୁତ୍ର) ସେଫୋରିସ୍ ଉପରେ ଆକ୍ରମଣ କଲାବେଳେ ଗ୍ୟାଲିଲି-ଲୋକ ଏଇଭଳି ତମ୍ବୁ ଭିତରୁ ସଂଗ୍ରାମ ଚଳାଇଥିଲେ ମରଣପଣ (ଦ୍ର. ଯୋସିଫୁସ୍); ସେଇ ଗୌରବର ସ୍ମୃତି ଜାଗରୂକ କରିଛନ୍ତି ଯୀଶୁ ଯୋଦ୍ଧାଙ୍କ ଚିତ୍ତପଟରେ, ଉଦ୍‌ବୁଦ୍ଧ କରିଛନ୍ତି ଜେରୁସାଲେମ୍ ଦେଉଳକୁ ଆକ୍ରମଣ କରିବାକୁ। ସେ ଜମାୟତ୍‌କୁ ଲକ୍ଷ୍ୟକରି ଜନ୍ କହିଛନ୍ତି (୬.୧୫), ଯୋଦ୍ଧା ଚାହିଁଥିଲେ, ଯୀଶୁ ରଜା ହେବେ; ତାଙ୍କର ଏ ଅଭିଳାଷ ମଧ୍ୟ ଅଜଣା ନ ଥିଲା ଯୀଶୁଙ୍କୁ; ମାତ୍ର ବ୍ୟକ୍ତିଗତ ସ୍ୱାର୍ଥକୁ ଦୃଢ଼ ପ୍ରତ୍ୟାଖାନପୂର୍ବକ, ସିରିଆ ମରୁଭୂମିରେ ଆଗରୁ କରିଥିଲେ ଯେମିତି, ଅନୁଚର-ପରିଚରଙ୍କୁ କରିଦେଇଥିଲେ ବ୍ୟର୍ଥମନୋରଥ। କାହିଁକିନା, ପାର୍ଥିବ ସମ୍ପଦ, ସସାଗରା ମେଦିନୀର ଏକାଧିପତ୍ୟ ହେଲେସୁଦ୍ଧା, ଥିଲାନାହିଁ ଜାତୀୟତାବାଦର କାମ୍ୟ।

ସଶସ୍ତ୍ର ବିଦ୍ରୋହ ଅଭିପ୍ରେତ ଥିଲାନାହିଁ; ଯୀଶୁଙ୍କ ଦାବି ଥିଲା, ମନ୍ଦିରରେ ବଳିଦାନ ହୋଇପାରେ ଦେଶର ସଙ୍କଟକାଳରେ କେବଳ, ଯେମିତି ସଙ୍କେତ ଦିଆଯାଇଛି *ଓଲ୍ଡ ଟେଷ୍ଟାମ୍ୟାଣ୍ଟ*ରେ; ଅର୍ଥାତ୍ ଦୈବନିର୍ଦ୍ଦିଷ୍ଟ ଓଲଟପାଲଟ ଘଟିବାବେଳେ । ଗିଜରେକ୍ସନ୍ ଅନତିପୂର୍ବେ, ପିଟର୍ ଜେମ୍ସ ଓ ଜନ୍, ଯିଏ ଥିଲେ ଆନ୍ଦୋଳନ ପୁରୋଭାଗରେ, ସ୍ୱଚକ୍ଷୁରେ ଦେଖିଛନ୍ତି ଯୀଶୁ କେମିତି ଜ୍ୟୋତିର୍ମୟ ଶୁଭ୍ର ମୂର୍ତ୍ତିକୁ ରୂପାନ୍ତରିତହୋଇ କଥାକହିଛନ୍ତି ଜାତିର ପିତା ମୌଜେସ୍ ଆଉ ସଶରୀରେ ସ୍ୱର୍ଗଗତ ସନ୍ନ୍ୟାସୀ ଏଲିଜାଙ୍କ ସାଙ୍ଗରେ । ଏ ଦୃଶ୍ୟ ସଂଗୋପନ ନୁହେଁ; ବର୍ଷବର୍ଷଧରି ଏକତ୍ର ଧ୍ୟାନ ଓ ଉପାସନା, ଯୀଶୁଙ୍କ ଅଲୌକିକ ଅଭିଜ୍ଞତା ଓ ଦିବ୍ୟଦର୍ଶନକୁ ଶିଷ୍ୟଙ୍କ ଅନ୍ତରରେ ହୁଏତ ସଞ୍ଚାରିତକରିଛି ଅବିକଳ । ହେରମୋନ୍ ପାହାଡ଼ଚୂଡ଼ା, ଯୋଉଠି ଘଟିଛି ଏ ସଂଯୋଗ, ସେଠି ମଧ ଯୀଶୁ, ମୌଜେସ୍‌ଙ୍କ ପଦାଙ୍କାନୁସରଣ କରିଛନ୍ତି ମାତ୍ର, କାହିଁକିନା ,ସିନାଇ ପର୍ବତ ଶିଖରକୁ ମୌଜେସ୍‌ଙ୍କୁ ଅନୁସରଣ କରିଥିଲେ ଆ୍ୟାରନ୍ ନାଦାବ୍ ଆଉ ଆବିହୁ ଭଳି ତିନିଜଣ ଅନୁଚର, ଯିଏ ଇସ୍‌ରାଏଲ୍‌ର ଦେବାଧିଦେବଙ୍କୁ ବୈଦୁର୍ଯ୍ୟ ସିଂହାସନରେ ଉପବିଷ୍ଟ ଦେଖି, ସୌଭାଗ୍ୟ ଉଦ୍‌ଯାପନକରିଥିଲେ ସୁରା ଆଉ ମାଂସ ସହଯୋଗେ (ଏକ୍ସଡ୍ୟସ୍ ୨୪.୧-୧୧) । ମାତ୍ର ଯୀଶୁଙ୍କ ଶିଷ୍ୟତ୍ରୟ ଯା ଦେଖିଛନ୍ତି, ତା କେବଳ ଜ୍ୟୋତିର୍ମୟ ମେଘଖଣ୍ଡ, ଶୁଣିଚ୍ଛନ୍ତି ସେଥିରୁ ଉଦ୍‌ଗତ କଣ୍ଠସ୍ୱର : 'ଏଇ ମୋର ପ୍ରିୟ ପୁତ୍ର, ଆନନ୍ଦର ଉତ୍ସ । ପ୍ରଣିଧାନକର ତା ମୁଖନିଃସୃତ ବଚନ ।' ଆଉ ବାଦଲ ଉଡ଼ିଗଲାକ୍ଷଣି ଦେଖିଲେ, କେହିନାହିଁ, ଏକାକୀ ଦଣ୍ଡାୟମାନ ଯୀଶୁ ସତେଅବା ସାକ୍ଷାତ୍ ଈଶ୍ୱରପୁତ୍ର । ବ୍ୟାପ୍ଟିଷ୍ଟ୍ ଜନ୍ ମଧ ଯୀଶୁଙ୍କୁ ଡାକିଛନ୍ତି 'ଦିବ୍ୟପୁତ୍ର' । ଏକ୍ଷଣି ତାଙ୍କ ସାକ୍ଷାତ୍‌ଶିଷ୍ୟ ପ୍ରତ୍ୟକ୍ଷକଲେ ସତ୍ୟାସତ୍ୟ । ଅର୍ଥାତ୍ ଯୋଉ ଦିବ୍ୟଜ୍ୟୋତି ମୌଜେସ୍ ଓ ଏଲିଜାଙ୍କୁ କରିଥିଲା ମୃତ୍ୟୁଞ୍ଜୟ, ସେଇ ଜ୍ୟୋତି ଏକ୍ଷଣି ଯୀଶୁଙ୍କ ନିଜ ବିଭୂତି । ଆଉ, ସେ ବିଭୂତି, ଯୀଶୁ ଇଚ୍ଛାକଲେ, ଶିଷ୍ୟଭିତରକୁ ମଧ ହୋଇପାରେ ସଞ୍ଚାରିତ, ଏବଂ ସେଇ ସୂତ୍ରରେ, ପ୍ରତ୍ୟେକ ଶିଷ୍ୟ ହୋଇପାରେ ଦେବନନ୍ଦନ । ଯୀଶୁଙ୍କ ରୂପକୁ ଜ୍ୟୋତିଉଦ୍‌ଭାସିତ ଦେଖି, ମୌଜେସ୍ ଏଲିଜା ଓ ଯୀଶୁ— ତ୍ରିମୂର୍ତ୍ତି ଲାଗି କୁଞ୍ଜକୁଟୀର ନିର୍ମାଣ କରିବାକୁ ବାହାରିପଡ଼ିଛନ୍ତି ପିଟର୍, ମାତ୍ର ଗ୍ରୀକ୍ ଗସ୍‌ପେଲ୍ କହୁଛି, ପିଟର୍ ଏମିତି ହଡ଼ବଡ଼େଇ ଯାଇଛି ଯେ କଥାକହିବା ବେଳକୁ ପାଟି ଖନିମାରୁଛି; ମାତ୍ର କୁଞ୍ଜକୁଟୀର ଏଠି ସ୍ମାରକ ମାତ୍ର, ଚନ୍ଦ୍ରାତପ ତଳେ ଉପାସନାନ୍ତେ ଭୋଜନର ସ୍ମାରକୀ, ଯୋଉ ଇନ୍ତାଳ ସୁକ୍କୋଥଠିଁ ତମ୍ବୁତଳେ ବସି ଖାଉଥିଲେ ସଭିଏଁ, ତାହାରି ସ୍ମାରକୀ ।

ଜେକାରିଆ-୧୪ ଅନୁସାରେ, ସେ ନୈବେଦ୍ୟର ଉଦ୍ଦେଶ୍ୟ, ଇସ୍ରାଏଲ୍ ସମେତ ଜଗତ୍‌ସଂସାରର ଦିବ୍ୟାୟନ ।

ସେଇ ଅର୍ଘ୍ୟ ନିବେଦନ କରିବାକୁଯାଇ, ଜେକାରିଆର ଭବିଷ୍ୟବାଣୀକୁ ବାସ୍ତବାୟିତ କରିବାକୁଯାଇ, ମୁହାଁମୁହିଁ ସଂଘର୍ଷରେ ଯୀଶୁ ଲିପ୍ତହୋଇଛନ୍ତି କାଇଆଫୁସ୍ ସାଙ୍ଗରେ, ସମ୍ଭବତଃ ୩୨ ସାଲର ପାସ୍‌ଓଭର୍ ପରବ ବେଳକୁ । ଏବଂ କାଇଆଫୁସ୍ ଘଟଣାକ୍ରମେ ପାଇଲେଟ୍‌ଙ୍କୁ ରାଜିକରାଇପାରିଛି ଯୀଶୁଙ୍କୁ କ୍ରୁଶବିଦ୍ଧକରି ପ୍ରାଣଦଣ୍ଡ ଆଦେଶକରିବାକୁ । ସୁକ୍କୋଥ୍ ବାଟଦେଇ ଯୀଶୁ ହୁଏତ ଜେରୁସାଲେମ୍‌କୁ ପ୍ରବେଶକରିଛନ୍ତି ପାସ୍‌ଓଭର୍ ପରବଦିନ, କାହିଁକିନା, ପଟୁଆରରେ ଯାଇ ତାଳପତ୍ରକୁ ପତାକାପରି ହଲାଇ ହଲାଇ ଯଜ୍ଞବେଦୀ ଉପରେ ବିଛାଇଦେବା ଥିଲା ପରବର ଚିରାଚରିତ ଅଙ୍ଗ, ଆଉ ଘନଘନ 'ହୋଜାନା' ଜୟଧ୍ୱନି, (ହୋଜାନା ମାନେ ଈଶ୍ୱରଙ୍କ ପ୍ରଶସ୍ତି, କୃପାଲାଭ ପାଇଁ ଆକୁତି), ସେ ପଟୁଆର କିନ୍ତୁ ଖ୍ରୀଷ୍ଟପୂର୍ବ ୩୧ ସାଲ୍‌ରେ ଘଟିଛି ଯଥାରୀତି, ରୋମ୍‌ଠିଁ ସିଜାନସ୍‌ର ପ୍ରାଣବଧ କାରଣରୁ ଯୋଉବର୍ଷ ପାଇଲେଟ୍‌ଙ୍କ ପଦମର୍ଯ୍ୟାଦା ହୋଇପଡ଼ିଛି ଦୁର୍ବଳ; ଏବଂ କାଇଆଫୁସ୍ ସାଙ୍ଗରେ ରଫାକରିବାକୁ ପରିସ୍ଥିତି ହୋଇଛି ପାଇଲେଟ୍‌ଙ୍କ ପାଇଁ ମଧ୍ୟ ଅନୁକୂଳ । ଜେକାରିଆ (=ହିବ୍ରୁ ମନ୍ତ୍ର)ର ଟାରଗମ୍ (=ଭାଷ୍ୟ) ଅନୁସାରେ ସ୍ୱର୍ଗରାଜ୍ୟ ପୃଥିବୀପୃଷ୍ଠରେ ଅବତରଣ କରିବ (୧୪.୯) ସେତିକିବେଳେ, ଇସ୍ରାଏଲ୍‌ବାସୀ ଇହୁଦୀ ଓ ଅଇହୁଦୀ ସୁକ୍କୋଥ୍‌ରୁ ନୈବେଦ୍ୟ ଆଣି ଅର୍ପଣକରିବେ ଯେତେବେଳେ ମନ୍ଦିର ଚତ୍ୱରରେ । (ଟାରଗମ୍, ହିବ୍ରୁଶବ୍ଦ; ଇଂରେଜୀରେ 'ଇଣ୍ଟରପ୍ରିଟେସନ୍', ମୌଖିକ ଆରାମାଇକ୍ ରୂପ ଲିପିବଦ୍ଧହୋଇଛି ୧୦୦ ଖ୍ରୀଷ୍ଟାବ୍ଦ ପରବର୍ତ୍ତୀକାଳରେ) ଏବଂ ନୈବେଦ୍ୟ ସେମାନେ ଅର୍ପଣକରିବେ ଯେତେବେଳେ, ନିଃସଙ୍ଗ ହେବ ସେଇ ନିବେଦନ; ଅର୍ଥାତ୍ ମଧ୍ୟସ୍ଥ (=ପୁରୋହିତ) ରହିବେନାହିଁ ଉପସ୍ଥିତ । ଯାଜକର ହସ୍ତକ୍ଷେପ ନିଷିଦ୍ଧ କରାଯାଇନାହିଁ କେବଳ, ଗର୍ଭଗୃହରେ ଏକାବେଳକେ ନିଷିଦ୍ଧକରାଯାଇଛି କ୍ରୟବିକ୍ରୟ, ବଣିକର ଉପସ୍ଥିତି (୧୪.୨୧) । ସେ ମନ୍ତ୍ରର ଅନୁପ୍ରେରଣା ଯୀଶୁଙ୍କପାଇଁ ହୋଇଛି ନାଟକୀୟ ସଂଘାତର ପ୍ରରୋଚନା ।

ଅତ୍ୟୁତ୍ସାହୀ ସମର୍ଥକ ଘେରିପକାଇଛନ୍ତି ଯୀଶୁଙ୍କୁ, ତାଙ୍କ ଭିତରେ ରହିଛି ଭାଇ ଜେମ୍‌ସ । ଜେମ୍‌ସ ଯୋଗଦେଇଛି ଯୀଶୁ ଯେତେବେଳେ ଆତ୍ମଦାନକୁ କରିଚ଼ନ୍ତି ଆନ୍ଦୋଳନର ଆଭିମୁଖ୍ୟ; ଗୁଣିଗାରୁଡ଼ି ନୁହେଁ କି ସଶସ୍ତ୍ର ବିଦ୍ରୋହ ମଧ୍ୟ ନୁହେଁ। ଆତ୍ମୋତ୍ସର୍ଗର ପ୍ରାଧାନ୍ୟ, ତଥାକଥିତ '୫୦୦୦' ଯୋଦ୍ଧାଙ୍କ ହତାଶାର·ଯା କାରଣ,

ଜେମ୍‌ସଙ୍କୁ କରିଛି ଯୀଶୁଙ୍କ ପ୍ରତି ଅନୁରକ୍ତ । ଜେମ୍‌ସ ସମ୍ବନ୍ଧରେ ଜାଣିବାର ସୂତ୍ର ତିନିଟି : ଆ୍ୟାକ୍ଟସ୍, ଯୋସିଫୁସ୍ ଆଉ ଦ୍ୱିତୀୟଶତକର ଐତିହାସିକ ହେଗେସିପ୍‌ପସ୍ । ସମ୍ମିଳିତ ବକ୍ତବ୍ୟ : ଯେ, ସଶସ୍ତ୍ର ବିଦ୍ରୋହକୁ ଜେମ୍‌ସ ସମର୍ଥନ କରିନାହାଁନ୍ତି କେତେବେଳେ, ଆଉ ମନ୍ଦିର ପ୍ରତି ଅଟଳାଭକ୍ତିରେ ମଧ୍ୟ ଘୁଣ ଲାଗିନାହିଁ ଦଣ୍ଡେହେଲେ । ବଳିଦାନପ୍ରଥା ପ୍ରତି ଦାୟବଦ୍ଧତା ତାଙ୍କୁ ପ୍ରସିଦ୍ଧକରିଛି ଜେରୁସାଲେମ୍‌ରେ, ଏବଂ ତା ପ୍ରତି ତୀର୍ଥଯାତ୍ରୀଙ୍କ ଅପରିସୀମ ଶ୍ରଦ୍ଧା ଦେଖି, ଈର୍ଷ୍ୟାପରାୟଣ ଏକ ଧର୍ମାଚାର୍ଯ୍ୟ ଜେମ୍‌ସଙ୍କୁ ହତ୍ୟାକରିଛି ୬୨ ଖ୍ରୀଷ୍ଟାବ୍ଦରେ ।

ଯୀଶୁ ନିଶ୍ଚୟ ସଫଳ ହୋଇଥିଲେ ଶାସ୍ତ୍ରବଚନକୁ ଅନୁଧାବନପୂର୍ବକ ଅଗ୍ନିଗର୍ଭ ବିଦ୍ରୋହକୁ ଆତ୍ମଦାନରେ ରୂପାନ୍ତରିତକରିବାକୁ, ମାତ୍ର ସିଦ୍ଧି ଜୁଟିନାହିଁ କପାଳରେ । କାଇଆଫୁସ୍ ସାଙ୍ଗରେ ମୁକାବିଲା ଥିଲା ଅବଶ୍ୟ ଅନିବାର୍ଯ୍ୟ, କାହିଁକିନା, ଜେକାରିଆର ଭବିଷ୍ୟଦ୍‌ବାଣୀକୁ କାର୍ଯ୍ୟକାରୀ କରିବାକୁ ହିଁ ଆସିଛନ୍ତି ସିଏ ଜେରୁସାଲେମ୍; ଅଥଚ ମନ୍ଦିରର ପୂଜାବିଧି ସଂସ୍କାରକରିବାକୁ କାଇଆଫୁସ୍ ସଂପ୍ରତି ପାଇଛି.ରାଜାନୁମୋଦନ । ମନ୍ଦିରବେଢ଼ାରୁ ସାନ୍‌ହେଡ୍ରିନ୍ (ଇହୁଦୀଙ୍କ ମୁକ୍ତିମଣ୍ଡପ)କୁ ବରଖାସ୍ତକରିଛି, ଯଦିଓ ସେ ପରିଷଦରେ ଅଛନ୍ତି ଅଭିଜାତ ଆଚାର୍ଯ୍ୟ, ଫ୍ୟାରିସି ବୟୋଜ୍ୟେଷ୍ଠ, ପୁଣି ଗଣ୍ୟମାନ୍ୟ ନାଗରିକ ପ୍ରାୟ ସତୁରିଜଣ । ବଡ଼ପଣ୍ଡା କାଇଆଫୁସ୍ ଓ ପ୍ରକିଉରେଟର୍ ପାଇଲେଟ୍‌ଙ୍କୁ ଧର୍ମାଚାର ଓ ନାଗରିକ ବ୍ୟାପାରରେ ପରାମର୍ଶଦେବା ସେମାନଙ୍କ କର୍ତ୍ତବ୍ୟ । ସାନ୍‌ହେଡ୍ରିନ୍‌କୁ ଉଠାଇନିଆଯାଇଛି ଅଲିଭ୍-ପାହାଡ଼ ଉପରକୁ । ଦେଉଳବେଢ଼ାରୁ ସାନ୍‌ହେଡ୍ରିନ୍ ସ୍ଥାନାନ୍ତରିତ ହେବାପରେ କାଇଆଫୁସ୍ ମନ୍ଦିରଚତ୍ୱରରେ ଆଣି ବସାଇଛି ଦୋକାନପାଟ, କିଣାବିକା ଚାଲିଛି ହରଦମ ।

*ଜେକାରିଆ*-ପ୍ରଣୋଦିତ ଯୀଶୁଙ୍କ ଚଢ଼ାଉ, ମନ୍ଦିରଭିତରେ କାଇଆଫୁସ୍ ସାଙ୍ଗରେ କାର୍ଯ୍ୟତଃ ସମ୍ମୁଖ-ସମର । ପ୍ରଚଳିତ ବଳିଦାନପ୍ରଥାକୁ ମଧ୍ୟ ଆହ୍ୱାନଜଣାଇଛନ୍ତି ଯୀଶୁ; ଆପଣା ପଙ୍ଗତର ରୁଟି ଆଉ ମଦକୁ କହିଛନ୍ତି ବଳିଦାନର ଅସଲ ମାଂସ ଆଉ ରକ୍ତ । ସେକଥା ଶୁଣି ନିଜ ଅନୁଚର ମଧ୍ୟ ଶଙ୍କିତ ହୋଇପଡ଼ିଛନ୍ତି; ଏପରିକି, ଜୁଡାସ୍ (ଇସ୍‌କାରିଅଟ୍)ଙ୍କୁ ସୁଦ୍ଧା ଲାଗିଛି, ଏ ଘୋଷଣା ଦ୍ରୋହାଚାର, କାହିଁକିନା, ଯୀଶୁ ନିଜକୁ ଜିହୋଭାଙ୍କ ସମସ୍କନ୍ଧ ଭାବୁଛନ୍ତି ଏ ଘୋଷଣାରେ । ତା ଅବଶ୍ୟ କାଇଆଫୁସ୍‌କୁ ବଳ ଯୋଗାଇଛି; ଆଉ, ଯୀଶୁ ଜାଣିନାହାନ୍ତି ଯେ ୩୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର୍ ୧୮ ଦିନ ରୋମ୍‌ରେ ସିଜାନସ୍‌ର ପ୍ରାଣଦଣ୍ଡ କାଇଆଫୁସ୍ ସାଙ୍ଗରେ ପଣ୍ଟିୟସ୍ ପାଇଲେଟ୍‌ଙ୍କୁ

କରିଛି ନିବିଡ଼ । ୩୧ ସାଲ୍ ଅକ୍ଟୋବରରୁ ପରବର୍ତ୍ତୀ ପାସ୍‌ଓଭର୍ ପରବ ମଝିରେ, କାଇଆଫ୍ରସ୍ ଢେର୍ ସମୟ ପାଇଛି ପାଇଲେଟ୍‌ଙ୍କୁ ବୁଝାଇଶୁଝାଇ ରାଜିକରିବାକୁ; ଏବଂ ସ୍ୱସ୍ତିରେ ନିଶ୍ୱାସନେବାକୁ ତରପାଇ, ରଜା ଆ୍ୟାଣ୍ଟିପସ୍ ମଧ୍ୟ ଦେଇଛନ୍ତି ଯୀଶୁଙ୍କ ପ୍ରାଣଦଣ୍ଡକୁ ଅକୁଣ୍ଠ ଅନୁମୋଦନ (ପଞ୍ଚମ ଅଧ୍ୟାୟ, ପୃଷ୍ଠା ୭୨-୮୫) । ଅଥଚ୍ ମାଥ୍ୟୁ ତାଙ୍କ ସୁସମାଚାରରେ ଲେଖିଚ୍ଛନ୍ତି, ଜେରୁସାଲେମ୍‌କୁ ପ୍ରବେଶ କଲାବେଳେ ଯୀଶୁ ଚଢ଼ିଚ୍ଛନ୍ତି ଏକାସାଙ୍ଗରେ ଏକ ଅଶ୍ୱଶାବକ ଓ ଏକ ଗର୍ଦ୍ଦଭ । ଈଶ୍ୱରପୁତ୍ର କ'ଣ ତେବେ ଉଭୟ ବାହନ ଉପରେ ରଖିଥିଲେ ଗୋଟିଏ ଲେଖାଁ ଗୋଡ଼ ?

ଯୀଶୁଙ୍କ ସଙ୍ଗିନୀମାନଙ୍କ ଭିତରୁ *ନିଜ ଟେସ୍ଟାମେଣ୍ଟ୍*‌ରେ ସର୍ବାଧିକ ଗୁରୁତ୍ୱ ଯିଏ ପାଇଛନ୍ତି, ତାଙ୍କ ନାଁ ମେରି ମ୍ୟାଗ୍‌ଡେଲିନ୍ । କବରଭିତରୁ ଯୀଶୁଙ୍କ ପୁନରୁତ୍ଥାନ ସିଏ କୁଆଡ଼େ ପ୍ରତ୍ୟକ୍ଷକରିଚ୍ଛନ୍ତି ସବାଆଗେ । ମନ୍ଦିରରେ ପଶି ଭାଙ୍ଗଚୂର୍‌କରିବା ଆଗଦିନ, ଯୀଶୁ ଖାଇବସିଚ୍ଛନ୍ତି ରାତିରେ, ଧୀରପଦରେ ଏକ ରମଣୀ ଆସି ଠିଆହେଲା ପଛରେ, ହାତରେ ଧରିଛି ଶ୍ୱେତପଥର ଆଧାରରେ ମହାମୂଲ୍ୟ ଅତର, ଆଖିରୁ ଗଡ଼ିପଡୁଚି ଧାର ଧାର ଲୁହ । ଆପଣା କେଶଗୁଚ୍ଛରେ ଯୀଶୁଙ୍କ ପାଦ ପୋଛିଦେଇ ମାଖିଦେଇଛି ଅତର, ଅତଃପର କରିଛି ଘନ ଘନ ପଦଚୁମ୍ବନ । ଉପସ୍ଥିତ ଅନୁଚର ବ୍ୟଙ୍ଗକରିଛନ୍ତି; ମାତ୍ର ଯୀଶୁ କହିଛନ୍ତି, ଜାଣିରଖ, ପୃଥିବୀର ଏ ପ୍ରାନ୍ତରୁ ସେ ପ୍ରାନ୍ତ, ଯୋଉଠି ଶୁଣାଇବ ମୋ ମଙ୍ଗଳବାର୍ତ୍ତା, ସ୍ମରଣକରିବାକୁ ପଡ଼ିବ ମୋ· ସାଙ୍ଗରେ ଏଇ ନାରୀକୁ । ଲ୍ୟୁକ୍ କହିଛନ୍ତି, ନାରୀ ଥିଲା ବାରବନିତା । ଜନ୍ କହିଛନ୍ତି ଆଉଏକ ଆଖ୍ୟାନ : ମନ୍ଦିର ଭିତରେ ବାରନାରୀ ଦେଖିବାକୁ ପାଇ ଫ୍ୟାରିସି ତାକୁ ଡାକିଆଣି ଯୀଶୁଙ୍କୁ କହିଲେ, କୁଳପତି ମୌଜେସ୍ ବ୍ୟଭିଚାରୀକୁ ପଥର ଫିଙ୍ଗି ମାରିଦେବାକୁ ଆଜ୍ଞାଦେଇଛନ୍ତି । ଏକ୍ଷଣି, ତମେ କଣ କହୁଛ ? ଯୀଶୁଙ୍କ ଉତ୍ତର : ତମ ଭିତରେ ଯିଏ ଜମାରୁ ପାପକରିନାହିଁ, ସେଇ ଏବେ ଢେଲାମାରୁ । ପଳାଇଗଲେ ସମସ୍ତେ । ପତିତାକୁ ହିତୋପଦେଶ ଶୁଣାଇ ବିଦାକରିଦେଲେ ଯୀଶୁ । ଏଥର ଲ୍ୟୁକ୍ କହୁଛନ୍ତି, କୋଉଏକ ଗାଁରେ ଅନୂଢ଼ା ଦି'ଭଉଣୀ ଘରେ ଥାଆନ୍ତି, ମାର୍ଥା ଆଉ ମେରି । ପ୍ରଚାରକାମରେ ଗାଁଦାଣ୍ଡରେ ଚାଲିଯାଉଥିବା ବେଳେ ମାର୍ଥା କୁଆଡ଼େ ଯୀଶୁଙ୍କୁ ଆଦରକରି ଡାକିନେଲା; ରନ୍ଧାବଢ଼ାରେ ବ୍ୟସ୍ତରହିଚ୍ଛି; ମେରି କିନ୍ତୁ ଯୀଶୁଙ୍କ ମୁହଁକୁ ଚାହିଁ ବସିରହିଥାଏ ଏକଲୟରେ । ଦିନାକେତେ ବାଦେ ଅସହ୍ୟହେବାରୁ ମାର୍ଥା ଅନୁଯୋଗ କରିଛି : ଆପଣ କିଛି କହୁନାହାନ୍ତି କାହିଁକି ? ଯୀଶୁଙ୍କ ଜବାବ : ମଣିଷର ଅସଲ କାମ ତ ମାତ୍ର ଗୋଟିଏ;

ଆଉ ମେରି ତା ବାଛିନେଇଛି । ଈଶ୍ୱର କରନ୍ତୁ, ସେକାମ ତାଠୁଁ କେହି କାଢ଼ି ନ ନେଉ ! କାଢ଼ିନେଉ କି ନ ନେଉ, କବରଭିତରୁ ନ ଉଠାଇ ଯୀଶୁଙ୍କୁ ସିଏ ଛାଡ଼ିନାହିଁ । ଯୋଉଘରେ ପୁରୁଷ ନାହିଁ ଜଣେହେଲେ, ଅଛନ୍ତି ଖାଲି ଦୁଇ ଅନୂଢ଼ାରମଣୀ, ସଙ୍ଗସୁଖ ଲାଭପାଇଁ ଯୋଉଠି ପ୍ରତିଯୋଗିତା, ଦୁଇହଜାରବର୍ଷ ପୂର୍ବର ଇସ୍ରାଏଲ୍‌ରେ ତାଙ୍କୁ ବାରାଙ୍ଗନା ବୋଲି ଅନୁମାନ କରିବାହିଁ ସଙ୍ଗତ । ଜୁଡାସ୍ ଇସ୍‌କାରିଅଟ୍, ଯିଏ ଆନ୍ଦୋଳନର ଟଙ୍କାପଇସା ଦାୟିତ୍ୱରେ ଥିଲେ, କିନ୍ତୁ ଆପତ୍ତି କରିଚ଼ନ୍ତି; ଉତ୍ତରରେ ଯୀଶୁ ଉଠାଇଚ଼ନ୍ତି ଦାର୍ଶନିକ ପ୍ରଶ୍ନ; ଅଥଚ଼ ମେରି ଦିହରୁ ସାତସାତଟା ଭୂତ ଓଝାଗିରିକରି ଓହ୍ଲେଇ ଦେଇଛନ୍ତି ସେତେବେଳକୁ । ବିଂଶ ଶତକରେ ପହଞ୍ଚିବାବେଳକୁ ଡି.ଏଚ୍. ଲରେନ୍ସ ମେରିକୁ ଭେଟିଛନ୍ତି ଫେର୍ ଏକ ଉପାଖ୍ୟାନରେ : କ୍ରୁଶଉପରେ ପ୍ରାଣହରାଇ କବରଭିତରେ ପଡ଼ିଥିବାବେଳେ ଯୀଶୁ ଫେରିପାଇଛନ୍ତି ମାନବଚୈତନ୍ୟ; ମେରି ମ୍ୟାଗ୍‌ଡେଲିନ୍‌କୁ ଖୋଜିବାହାରକରି ଜଣାଇଛନ୍ତି ପୁନରାଗମନର ଉଦ୍ଦେଶ୍ୟ ଜଗତ୍‌ଉଦ୍ଧାର ନୁହେଁ, ନିଜକୁ ଉଦ୍ଧାର, ସଂସାରଭିତରେ ରହି ନିଜକୁ ଉଦ୍ଧାର; କିନ୍ତୁ ମେରି ଦେଖିଛି ଆହତହୋଇ ଯୀଶୁଙ୍କ ଚେହେରା ଯାଇଛି ବଦଳି, ଦେହରେ ଆଉ ଚୁମ୍ବକ ନାହିଁ । ପ୍ରତ୍ୟାଖ୍ୟାତ ଯୀଶୁ ଆଇସିସ୍ ଚାଲିଯାଇ କୋଉ ଜଣେ ସନ୍ନ୍ୟାସିନୀଠୁଁ ପାଇଚନ୍ତି ଯତ୍‌ପରୋନାସ୍ତି ସୋହାଗ ଏବଂ ଅନ୍ତଃସତ୍ତ୍ୱାହୋଇ ପ୍ରସବକରିଛି ସିଏ ପୁତ୍ରସନ୍ତାନ । ଲରେନ୍ସଙ୍କ ସେ ବହିର ନାଁ *ଦ ମ୍ୟାନ୍ ହୁ ଡାଇଡ୍* । ଏକବିଂଶ ଶତକରେ, ମାତ୍ର ଦି'ବର୍ଷ ଆଗରୁ ପ୍ରକାଶପାଇଛି ଡାନ୍ ବ୍ରାଉନ୍‌ଙ୍କ ଉପନ୍ୟାସ *ଦା ଭିଞ୍ଚି କୋଡ୍* । ଅନ୍ୟୂନ ୪୪ଟି ଭାଷାକୁ ଅନୂଦିତହୋଇଛି ଇତିମଧ୍ୟରେ, ବିକ୍ରିହୋଇଛି ଅଠର ମିଲିଅନ୍ କପି; ପ୍ରତିପାଦ୍ୟ : ମେରି ମ୍ୟାଗ୍‌ଡେଲିନ୍ ନାମ୍ନୀ ପ୍ରାକ୍ତନ ବେଶ୍ୟାକୁ ସତକୁସତ ବିବାହକରିଥିଲେ ଯୀଶୁ ଏବଂ ସେ ପରିଣୟରୁ ଉପୁଜିଥିଲା ଏକ କନ୍ୟାସନ୍ତାନ; ଏବଂ ଚର୍ଚ୍ଚ, ଆହୁରି ଅନେକ ସତ୍ୟଘଟଣାକୁ ଯେମିତି, ଏ ଘଟଣାଟାକୁ ବି ସେମିତି ଘପିଦେଇଚି ।

ସନ୍ଦେହନାହିଁ, ବିଂଶଶତକର ଉପାସକଙ୍କ ପାଖରେ ଯୀଶୁ ପ୍ରତିଭାତ ହୋଇଛନ୍ତି କେତେବେଳେ ମାନବତାବାଦୀ ଜନନାୟକ, କେତେବେଳେ ଜାତୀୟତାବାଦୀ ମୁକ୍ତିଯୋଦ୍ଧା, କେତେବେଳେ ଅବା ଆପାଦମସ୍ତକ ବିପ୍ଳବୀ । ଡନ୍ କିଉପିଟ୍ ଓ ପିଟର୍ ଆର୍ମସ୍ଟ୍ରଙ୍ଗ୍ ମନେକରାଇ ଦେଇଛନ୍ତି, ଏ ଭାବଛବି ବହନକରେନା ଇତିହାସ-ପୁରୁଷ ଯୀଶୁଙ୍କ ଯଥାର୍ଥ ପରିଚୟ । ଯଦିଓ, ଯୀଶୁ ଯୋଉ ପରିଣତିରେ ଉପନୀତହୋଇଚନ୍ତି

ଘଟଣାଚକ୍ରରେ, ତା ସଂପୂର୍ଣ୍ଣ ସ୍ୱାଭାବିକ ଓ ଇତିହାସସିଦ୍ଧ । ଅତୀତର ଗୁରୁମାନଙ୍କ ଛାଞ୍ଚରେ ବର୍ତ୍ତମାନର ଆଶାଆକାଙ୍‌କ୍ଷାକୁ ଢାଳିସଜାଇବା ଏକାନ୍ତ ମାନବିକ ଏକ ଉଦ୍ୟମ; ତାର ଐତିହାସିକ ମୂଲ୍ୟ ତେଣୁ ଅସ୍ୱୀକାର କରିହେବନାହିଁ, କାହିଁକିନା, ପାଶ୍ଚାତ୍ୟ ସଭ୍ୟତାରେ ପ୍ରବର୍ତ୍ତିତ ଯୋଉ ଶ୍ରେୟୋବୋଧ, ପ୍ରଗତିବୋଧ ଅଥବା ମାନବ କଲ୍ୟାଣ ଅବବୋଧ, ସବୁଯାକର ଗଠନ ଖ୍ରୀଷ୍ଟଧର୍ମର ଅବଦାନ; ମାତ୍ର କିଉପିଟ୍ ଓ ଆର୍ମସ୍ଟ୍ରଙ୍ଗ୍‌ଙ୍କ ଭଳି ବିଦ୍ୱାନ୍ ମଧ୍ୟ ଯୀଶୁଙ୍କ ରାଜନୀତିକ ଭୂମିକାକୁ ଅମଳଦେବାକୁ ପ୍ରସ୍ତୁତ ନୁହେଁ; କାହିଁକିନା, ଯୀଶୁଙ୍କ ନୈତିକ ମୌଳିକତା କୁଆଡ଼େ ଏକାନ୍ତଭାବେ ଧର୍ମୀୟ ! ଭାବୋନ୍ମତ୍ତ ଯୀଶୁ 'ଈଶ୍ୱରଙ୍କ ରାଜ୍ୟ' କଥାଟାକୁ ଯେହେତୁ ଆକ୍ଷରିକ ଅର୍ଥରେ ବିଶ୍ୱାସକରିଛନ୍ତି, ରାଜନୀତିର ଗନ୍ଧ ପାଇବା ଏକ୍ଷଣି ଅନ୍ୟାୟ । ଧାର୍ମିକ ସାଙ୍ଗରେ ତର୍କକରି ଲାଭନାହିଁ; ମାତ୍ର ଆକାଶରୁ ପଡ଼ିଲାପରି କିଉପିଟ୍ ହଠାତ୍ ମନ୍ତବ୍ୟକରିଛନ୍ତି, 'for him the most advanced socialist society would be just as obsolete in the face of the kingdom of God as would be the most reactionary feudal society.' ଜାଣିଲେ କେମିତି କିଉପିଟ୍ ସାହେବ ? କୋଉ ତଥ୍ୟ ଭିତ୍ତିରେ ? ଦି'ହଜାରବର୍ଷ ଉତାରୁ ଆମ ଏଇ ଅବସ୍ଥାକୁ ଦେଖିଚାହିଁ ଯୀଶୁ କଣ କହିଥାନ୍ତେ କି କରିଥାନ୍ତେ, କଳ୍ପନାକରିବା ବୁଦ୍ଧିମାନ୍ ଲୋକକୁ ଶୋଭାପାଏନା, କାହିଁକିନା, the most advanced socialist society ଯେ କି ଧରଣର ଇଉଟୋପିଆ, ତା ଭୂଗୋଳ ଅଦ୍ୟାବଧି ମାନବସମାଜର ଅଜ୍ଞାତ; ଆଉ, ସାମନ୍ତତନ୍ତ୍ର ଅପେକ୍ଷା ସମାଜତନ୍ତ୍ର ଯୀଶୁଙ୍କ ପକ୍ଷରେ ପ୍ରିୟତର ହୋଇନଥାନ୍ତା, କି ଅକଲରେ କହିପାରୁଛନ୍ତି ଡନ୍ କିଉପିଟ୍ ? ମାନବିକ ଯେକୌଣସି ପ୍ରକଳ୍ପ ସ୍ୱୟମ୍ଭୂ ହୋଇପାରେନା; ପଛରେ ରହିବ ନିଶ୍ଚୟ ବିଶ୍ୱବୀକ୍ଷା/ଜୀବନଦର୍ଶନର କୋଉନାକୋଉ ମଡେଲ୍ ଆଉ ପ୍ରତ୍ୟେକ ମଡେଲ୍ ପଛରେ ଅନୁଚିନ୍ତନର ଧାରାବାହିକତା, ବୁନିଆଦର ପରିମଣ୍ଡଳ । ଇହୁଦୀଧର୍ମ, ଏସିନ୍‌ଙ୍କ ସଂସ୍କାର, ବ୍ୟାପଟିସ୍ଟ ଜନ୍‌ଙ୍କ 'ଅବଗାହନ'ଜନିତ ଶୁଦ୍ଧିକରଣ, ସାମାଜିକ ଶ୍ରେଣୀ ବୈଷମ୍ୟ, ଯାଜକତନ୍ତ୍ର, ରୋମାନ୍ ରାଜନୀତିକ ଆଧିପତ୍ୟ—ସବୁଗୁଡ଼ାକ ମିଶି ତିଆରିକରିଛି ଯୀଶୁଙ୍କ ମନନର ପଟଭୂମି, ଐତିହାସିକ ଭୂମିକା । ପୁରାଣର ପରସ୍ତଗୁଡ଼ାକ କ୍ରମାଗତ ଖୋଲିଦେବାପରେ ଐତିହାସିକ ସତ୍ୟ ହୋଇଛି ଏକ୍ଷଣି ବିକଚିତ; ସେ ବିକଚନ ପ୍ରତିଷ୍ଠାକରିଛି ଯୀଶୁଙ୍କ ମାନବତ୍ୱ ଏବଂ ମାନବତ୍ୱ ପ୍ରତିଷ୍ଠାହେଲାପରେ ତାଙ୍କ ନାଁରେ ଯୋଉ ଧର୍ମ ପ୍ରଚାରକରାଯାଇଛି, ବିଶେଷ କୋଉ

ସିଂହାସନ ତା ସକାଶେ ସଂରକ୍ଷିତହୋଇ ରହିପାରେନା, କାହିଁକିନା, ଆଜିର ଏଇ ବିଜ୍ଞାନମନସ୍କ ଯୁକ୍ତିନିର୍ଭର ଦୁନିଆରେ ବିଶେଷ କୋଉ ମଣିଷକୁ ଅଥବା ମତାଦର୍ଶକୁ ଚରମ ପରମ ଅଲଂଘ୍ୟ  ଇତ୍ୟାଦି ବିଶେଷଣରେ କେହି ଭୂଷିତ କରେନା; କିଉପିଟ୍ ଅବଶ୍ୟ ଭଗବାନ୍‌ଙ୍କୁ ମଣିଷ ଭାବିବାକୁ ମନେକରନ୍ତି ଅକ୍ଷମଣୀୟ ଆଧାତ୍ମିକ ଅପରାଧ; ମାତ୍ର ଭଗବାନ୍ ଯଦି ମଣିଷ ନୁହେଁ, ତା ହେଲେ ଅଜ୍ଞେୟ; କାହିଁକିନା, ନିର୍ଗୁଣ ନିରାକାର ନିରଞ୍ଜନ ଅନାଦି ଅନନ୍ତ ଆବାଙ୍‌ମାନସଗୋଚରକୁ କୋଉ ଶଳାର ସାଧନାହିଁ ଜାଣିବ । କୃପାକରି ଦେଖାଦେଲେ ସୁଦ୍ଧା ତାଙ୍କୁ ଆକାର ପରିଗ୍ରହ କରିବାକୁ ପଡ଼ିବ ବାଧହୋଇ । ଆଉ, ସେ ଆକାର ହାତୀ-ଘୋଡ଼ା ନ ହୋଇ ମଣିଷ ହେଲେ ତ ଭଗବାନ୍‌ଙ୍କୁ ଚିହ୍ନିହେବ ସହଜରେ । ଉପାସକ ଥିଲେ, ଉପାସ୍ୟ ରହିବେ; ଉପାସ୍ୟଙ୍କ ବସ୍ତୁରୂପ, ପାଣି ପବନ ନିଆଁ ଆକାଶ ଯା ବି ହେଉ, ନଥିଲେ ଉପାସନା ଚାଲିବ ଫେର୍ କେମିତି ?



## ।। ପାଞ୍ଚ ।।

ଯୀଶୁଙ୍କ ପ୍ରାଗୁକ୍ତ ଚରିତରୁ ଦେଖିହେବ, ପ୍ରାଚୀନ ଜୁଦାଇଜ୍ମ ସହିତ ତାଙ୍କ ମତବାଦର ତାରତମ୍ୟ ଆଦୌ ଗୁରୁତର ନୁହେଁ; ଈଶ୍ୱରଙ୍କ ପ୍ରତି ଅଚଳା ବିଶ୍ୱାସ ଆଉ ବିବେକାନୁମୋଦିତ ଜୀବନଚର୍ଯ୍ୟା ସାଙ୍ଗକୁ ଯୀଶୁ ଯୋଡ଼ିଦେଇଛନ୍ତି ବଞ୍ଚିତ ଲାଞ୍ଛିତ ମଣିଷପାଇଁ ସୁଦିନର ପ୍ରତ୍ୟାଶା (=ହୋପ୍) । ହିନ୍ଦୁଙ୍କ ଷଡ଼୍‌ଦର୍ଶନ ପରି ବିଧିବଦ୍ଧ ଦର୍ଶନ ଏ ନୁହେଁ କି ବୁଦ୍ଧଙ୍କ ଦୁଃଖବାଦ ପରି ବିଜ୍ଞାନ ମଧ୍ୟ ନୁହେଁ । ବାଁ ଗାଲରେ ଥାପଡ଼ ମାରିଲେ ଡାହାଣ ଗାଲ ଦେଖାଇଦିଅ, ବଳାତ୍କାରକରି କିଏ କୋଟ୍ କାଢ଼ିନେଲେ ଜାମାଟା ବି ତାକୁ ଦେଇଦିଅ, କିନ୍ତୁ ମଣିଷସ୍ୱଭାବର ବିପରୀତ; ବରଂ ମୌଜେସ୍‌ଙ୍କ ଦଶଆଜ୍ଞା ଢେର୍‌ବେଶି ପ୍ର୍ୟାକ୍‌ଟିକ୍ୟାଲ୍ । ପାଟିଫିଟୁନାହିଁ ଯାହାର ସିଏ ହେବ ଧରଣୀର ଅଧୀଶ୍ୱର, ଭୋକଉପାସରେ ଦିନଯାଏ ଯା'ର ସିଏ ଖାଇବ କ୍ଷୀରିପୁରି-ନିର୍ବାଚନଇସ୍ତାହାର ହୋଇପାରେ; କାଣ୍ଡଜ୍ଞାନ ବା ସଂସାର-ଅଭିଜ୍ଞତାର ପ୍ରମାଣ ନୁହେଁ । ଯୀଶୁଙ୍କ ଅପମୃତ୍ୟୁ ଅବ୍ୟବହିତରେ ଇହୁଦୀଜଗତରୁ ତାଙ୍କ ଧର୍ମମତ (?) ନିର୍ବାସିତ ହୋଇଯାଇଛି ସେଥିପାଇଁ । ଶିଷ୍ୟମାନଙ୍କୁ ଉଦ୍‌ଭାବନ କରିବାକୁ ପଡ଼ିଛି ଅଲୌକିକତା : ମାନବପୁତ୍ର = ଈଶ୍ୱରପୁତ୍ର; ଆଦିଶବ୍ଦ=ଲଗସ୍; ମସିହା=ତ୍ରାଣକର୍ତ୍ତା; ଶେଷକୁ ମାନବଶରୀରରେ ସ୍ୱୟଂ ପରମେଶ୍ୱର । ଏକଥା କହିବାକୁ ଯାଇ ପ୍ରଥମ ତିନିଶ'ବର୍ଷ ମାଡ଼ଖାଇଛନ୍ତି ଇଉରୋପ ସାରା, ଇଂରେଜୀରେ କହୁଛନ୍ତି, 'ପର୍‌ସିକିଉସନ୍'; ମାତ୍ର ବିରାଡ଼ିକପାଳକୁ ଶିକାଛିଡ଼ିଚି ସମ୍ରାଟ୍ କନ୍‌ଷ୍ଟାଣ୍ଟାଇନ୍ ଖ୍ରୀଷ୍ଟଧର୍ମକୁ ଘୋଷଣାକରିଛନ୍ତି ଯେତେବେଳେ ରୋମାନ୍ ସାମ୍ରାଜ୍ୟର ରାଷ୍ଟ୍ରଧର୍ମ । ରାଷ୍ଟ୍ରଧର୍ମହେବା ଗୋଟେକଥା, ପରିବର୍ତ୍ତମାନ ଜଗତ୍ ପ୍ରତି ପ୍ରାସଙ୍ଗିକ ହୋଇପାରିବା ଆଉଗୋଟେ କଥା; ଏବଂ ଯେକୌଣସି ଧର୍ମମତକୁ ବୈଧ ହେବାପାଇଁ ପ୍ରାସଙ୍ଗିକତା ହିଁ ସର୍ବାପେକ୍ଷା ଜରୁରୀ ସର୍ତ୍ତ । ଯେହେତୁ ଯୀଶୁ ମଣିଷ, ନିଜ ଦେଶକାଳର ଚିହ୍ନରେ ହିଁ ସିଏ ଅଖଣ୍ଡ; ଏବଂ ତାଙ୍କ ଧର୍ମ ଓ କର୍ମ ତାଙ୍କ ପ୍ରାତିସ୍ୱିକ, ଇହୁଦୀ ଏକେଶ୍ୱରବାଦୀ ଜୀବନଦର୍ଶନରୁ ଅବିଚ୍ଛେଦ୍ୟ; କିନ୍ତୁ ସେ ବିଶ୍ୱବୀକ୍ଷା ଡେକାହଟ୍-ଉତ୍ତର ନିରୀଶ୍ୱରବାଦୀ ଯୋଉ ଦୁନିଆ, ସେଠି ତା ତାତ୍ପର୍ଯ୍ୟକ'ଣ ହୋଇପାରେ, ସେକଥା ଚର୍ଚ୍ଚକୁ କହିବାକୁ ପଡ଼ିବ; କାହିଁକିନା, ଦି'ହଜାର ବର୍ଷରୁ

ଅଧିକ କାଳ ଗତହୋଇଥିଲେ ସୁଦ୍ଧା, ଈଶ୍ୱରଙ୍କ ରାଜତ୍ୱ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇନାହିଁ । ସେ ଈଶ୍ୱର ପୁଣି ପୁରୁଷତନ୍ତ୍ରର ସୃଷ୍ଟିକର୍ତ୍ତା । ପରିବେଶ /ପ୍ରାଣିଜଗତ୍ ଉପରେ ମଣିଷର ଏକାଧିପତ୍ୟର ବରଦାତା; ଜ୍ଞାନ ଓ କର୍ମରେ ମଣିଷର ଦେବୋପମ ଉତ୍କର୍ଷ ତାଙ୍କୁ କ୍ଷୁବ୍ଧକରେ, ଉଦ୍ରେକକରେ ରୋଷାଗ୍ନି । ତାଙ୍କ ପ୍ରୀତିର ଯୋଗ୍ୟହେବାକୁ ହେଲେ ଛେଳି-ମେଣ୍ଢା ବଳିଦେବା ଦରକାର; ଆଉ ଦୁନିଆଯାକ ମଣିଷଙ୍କ ଭିତରେ ଏକମାତ୍ର ଇହୁଦୀହିଁ ତାଙ୍କ ନିର୍ବାଚିତ ପରିଜନ । ଏଇ ଭାବମଣ୍ଡଳର ଅଧିବାସୀ ନ୍ୟାଜାରେଥ୍‌ର ଯୀଶୁ । ଏ କଳମ୍ପଳକିଙ୍କୁ ବାଦ୍‌ଦେଇ ପ୍ରେମ-କରୁଣା-କ୍ଷମାର ବାଗାଡ଼ମ୍ବର କେତେଦୂର ନେଇଯାଇପାରେ ଏକାଳର ମଣିଷଙ୍କୁ, ଏପରିକି, ନିଷ୍ଠାବାନ୍ ଖ୍ରୀଷ୍ଟାନ୍‌ଙ୍କୁ ? ଚର୍ଚ୍ଚ ଦେଇପାରିନାହିଁ ଏ ବିଶ୍ୱବୀକ୍ଷାର ଯୁଗୋଚିତ ନବବ୍ୟାଖ୍ୟା, କାହିଁକିନା, ଆଧୁନିକ ଜୀବନଚର୍ଯ୍ୟାର ଜଟିଳତା ପ୍ରତି ସେ ଜୀବନଦର୍ଶନର ପ୍ରୟୋଗଯୋଗ୍ୟତା ରହିଯାଇଚି ଅମୀମାଂସିତ । ଇତିହାସ-ପୁରୁଷ ଯୀଶୁଙ୍କୁ ଜାଣିବା ଗୋଟେକଥା, ତାଙ୍କ ବାଣୀକୁ ପ୍ରାତ୍ୟହିକ ଜୀବନଯାତ୍ରାରେ ପ୍ରୟୋଗକରିବା ଆଉଗୋଟେ କଥା, କାହିଁକିନା, ପ୍ରୟୋଗକରିବାକୁ ଗଲେ ଦରକାରହେବ ସମକାଳୀନ କୋଉହେଲେ ମଡେଲ୍ । ଅନ୍ୟ ଶବ୍ଦରେ, ଯୀଶୁ ଯଦି ସମକାଳର ପୃଥିବୀରେ ଜନ୍ମହୋଇଥାନ୍ତେ, ତାଙ୍କ ଅଭୀଷ୍ଟ କାଳ୍ପନିକ ସ୍ୱର୍ଗରାଜ୍ୟ ନ ହୋଇ ହୋଇଥାନ୍ତା ବିଂଶଶତକରେ ପରିଲକ୍ଷିତ ଆଉ କୋଉ ଇଉଟୋପିଆ; ଗର୍ଭପାତ ନିରୋଧ ନୁହେଁ କି ପାୟୁମୈଥୁନ ନିଷେଧ ନୁହେଁ । ଏଥ୍‌ନିସିଟି ଉପରେ ଆଧାରିତ ସେ ମଡେଲ୍ କେତେଦୂର ସର୍ବଜନଗ୍ରାହ୍ୟ ହୋଇପାରନ୍ତା, ତା ଅବଶ୍ୟ ଭାବି ଦେଖିବାକୁ ହେବ । ଏଥ୍‌ନିସିଟି (=ଜାତିବିଦ୍ୟା) ସାମ୍ରାଜ୍ୟବାଦର ଏକାନ୍ତ ଅବଦାନ; ଅର୍ଥାତ୍ ଅଷ୍ଟାଦଶ ଶତକରୁ ପୃଥିବୀର ଧନତାନ୍ତ୍ରିକ ବିଭାଜନ ଫଳରେ ଅଧସ୍ତନ ଜାତିର ଲୋକ ହୋଇଚନ୍ତି ବ୍ୟାପକ ହାରରେ ଅନାବାସୀ । ଏକ୍ଷଣି ସାର୍ବଜନୀନ ସାବାଳକ ଭୋଟ୍ ଉପରେ ଅଧିଷ୍ଠିତ ଯେତେ କ୍ଷମତା ସଂଗଠନ, ଏଥ୍‌ନିସିଟି ସମସ୍ତଙ୍କ ପାଇଁ ଏକ ଫଳପ୍ରସୂ ପ୍ରତ୍ୟୟ । ମାତ୍ର ତା ଧର୍ମ ନୁହେଁ, ରାଜନୀତି । ରୋମାନ୍ ସାମ୍ରାଜ୍ୟର ଅଧସ୍ତନ ଭୂମିକାରୁ ଯୀଶୁ କରିଥିଲେ ପ୍ରତିବାଦ; ସେ ପ୍ରତିବାଦ ଧର୍ମୀୟ ପ୍ରଲେପ ଆହରଣ କରିଥିଲେ ସୁଦ୍ଧା, ତା'ର ଅସଲ ପରିଚ୍ୟ ରାଜନୀତିକ । ସେ ରାଜନୀତିର ଗନ୍ତବ୍ୟ ସମାଜବାଦ କି ନୁହେଁ, ଅବାନ୍ତର ପ୍ରଶ୍ନ । କିନ୍ତୁ ତା କେବେ ଜୀବନଦର୍ଶନର ବହୁମାତ୍ରିକତା ଆହରଣ କରିପାରେ କି ନାହିଁ, ଚର୍ଚ୍ଚ ସେକଥା ସ୍ପଷ୍ଟକରିବା କଥା । କାହିଁକିନା, ଯୀଶୁଙ୍କ ଲକ୍ଷ୍ୟ ଥିଲା ଏକମାତ୍ର ଇହୁଦୀ ଜାତି ଓ ତାର ରାଜନୀତିକ ମୁକ୍ତି । ଅଭିଧାନ ଏ ପ୍ରତୀତି (ଏଥ୍‌ନିସିଟି)କୁ କହିଚି affiliation to a common racial, cultural, religious or linguistic group whose

characteristics distinguish it from a larger population; କିନ୍ତୁ ଚର୍ଚ୍ଚ କହୁଚି ଯୀଶୁ ସର୍ବମାନବର ମୁକ୍ତିଦାତା !

ବର୍ତ୍ତମାନ ଚର୍ଚ୍ଚ ନିଜକୁ ଧରିନେଇଛି ପୁନର୍ଜୀବିତ ଯୀଶୁଙ୍କ ଦେହସ୍ୱରୂପ, ତଦନୁସାରେ ତାର ବାସ୍ତବ ଓ ଲୌକିକ ସଂଗଠନ; ନିଃସନ୍ଦେହରେ ଭ୍ୟାଟିକାନ୍ ଆଉ ପୋପ୍ ତା ମସ୍ତକ ଓ ମସ୍ତିଷ୍କ । ମାତ୍ର ବାବାଜିଙ୍କ ଆଶ୍ରମ ନୁହେଁ ଚର୍ଚ୍ଚ, ଧର୍ମଜଗତର ରାଜତନ୍ତ୍ର; ପୋପ୍ ମାନେ ପିତା, ଏବଂ ଭ୍ୟାଟିକାନ୍ ନାମକ ସାର୍ବଭୌମ ରାଷ୍ଟ୍ରର ସିଏ ଏକାଙ୍ଗଚକ୍ରବର୍ତ୍ତୀ, ତାଙ୍କ ହାତରେ ରାଜଦଣ୍ଡ, ମସ୍ତକରେ ତ୍ରିକୋଣ ମୁକୁଟ । ମହାବିଜ୍ଞାନୀ ଗ୍ୟାଲିଲେଓ (୧୫୬୪-୧୬୪୨) ଙ୍କୁ କାରାଗାରରେ ନିକ୍ଷେପ କରିପାରନ୍ତି ଆ୍ୟାରିସ୍ଟୋଟ୍ଲୀୟ ଜ୍ୟୋତିର୍ବିଦ୍ୟାକୁ ମିଥ୍ୟା ପ୍ରମାଣକରିବା ସ୍ୱକାଶେ; ଅର୍ଥାତ୍ *ଜେନିସିସ୍*ରେ ବର୍ଣ୍ଣିତ ସୃଷ୍ଟିତତ୍ତ୍ୱକୁ ଅସ୍ୱୀକାର ବିବେଚିତହୁଏ ବିଜ୍ଞାନପାଇଁ ଦଣ୍ଡଯୋଗ୍ୟ ଅପରାଧ । ୧୯୧୪ ଅଗଷ୍ଟରେ ଅନ୍ୟୂନ ତେୟାନବେଇଶ ଖ୍ରୀଷ୍ଟାନ୍ ଧର୍ମବିଦ୍ ଜର୍ମାନୀର କାଇଜରଙ୍କ ଯୁଦ୍ଧନୀତିକୁ ସମର୍ଥନଜଣାଇ ଇସ୍ତାହାର ଜାରିକରନ୍ତି, କାହିଁକିନା, ସେ ଯୁଦ୍ଧ କୁଆଡ଼େ ଖ୍ରୀଷ୍ଟାନ୍‌ସଭ୍ୟତାକୁ ରକ୍ଷାକରିବାପାଇଁ ଧର୍ମଯୁଦ୍ଧ ! ଅଥଚ, ଯୀଶୁଙ୍କ ସମସାମୟିକ ଗ୍ରୀକ୍‌ଭାବୁକ ଫିଲୋ, ଆ୍ୟାଲେକ୍‌ଜାଣ୍ଡ୍ରିଆରେ ଥାଇ ସର୍ବପ୍ରଥମ ଯୀଶୁବାଣୀକୁ ଆଖ୍ୟାଦିଅନ୍ତି 'ଲଗସ୍', ଅର୍ଥାତ୍ ସର୍ବକାଳ ଓ ସର୍ବସ୍ଥାନ ସକାଶେ ଉଚ୍ଚାରିତ ପ୍ରଥମ ଓ ଶେଷ ଶବ୍ଦ । ସେଇ ଲଗସ୍‌ରୁ ଉଦ୍‌ଭବ ଈଶ୍ୱରଙ୍କୁ 'ପବିତ୍ର ପ୍ରେତ'(=ହୋଲି ଘୋସ୍‌ଟ୍) ବିବେଚନାକରିବା ଅନୁଷଙ୍ଗ । ଯୀଶୁବାଣୀ ଯଦି ଶେଷଶବ୍ଦ (=ଲାଷ୍ଟ୍ ୱର୍ଡ୍), ତେବେ ବ୍ୟାଖ୍ୟା ବା ଭାଷ୍ୟର ଅତୀତ; ତା ହେଲେ, 'ଖ୍ରୀଷ୍ଟାନ୍ ସଭ୍ୟତା' ଭଳି ରାଜନୀତିକ-ସାଂସ୍କୃତିକ ବ୍ୟାଖ୍ୟାକୁ ଚର୍ଚ୍ଚ କରୁଚି କେମିତି ସମର୍ଥନ ? କରୁଚି ଅବା କି ଉଦ୍ଦେଶ୍ୟରେ ? ପୁଣି, ୧୯୩୩ ରେ ହିଟ୍‌ଲର୍ ଯେତେବେଳେ ପ୍ରସ୍ତୁତହେଉଛନ୍ତି ଧରାବକ୍ଷରୁ ଜ୍ୟୁ'ଙ୍କୁ ନିର୍ମୂଳ କରିଦେବାକୁ, ଯୀଶୁଙ୍କୁ ଚିତ୍ରଣକରାଯାଇଛି 'ଆ୍ୟାଣ୍ଟିଲଗସ୍' ! କାହିଁକିନା, ଏକାଦେହରେ ମାନବ ଓ ଈଶ୍ୱରହେବା ଅଥବା ଏକାବେଳକେ ମାନବପୁତ୍ର ଓ ଈଶ୍ୱରପୁତ୍ର ହେବା ଅବାସ୍ତବ ପ୍ରସ୍ତାବ ? ଆଦିବଚନ ଯଦି ଈଶ୍ୱର (ଦ୍ର. *ଜେନିସିସ୍*) ତା ହେଲେ, ଲଗସ୍ ଆଗେ ଯୀଶୁ ପଛେ; ପିତା ଆଗେ, ପୁତ୍ର ପଛେ । ଯୀଶୁବାଣୀ ତେଣୁ ସର୍ବକାଳ ଓ ସର୍ବସ୍ଥାନ ପାଇଁ ଧ୍ରୁବସତ୍ୟ ହୋଇପାରେନା । ତେଣୁ, when the Counter-Logos appears in history,no longer as an idea, but as 'word' become flesh, there is no longer any possibility of assimilating him into the existing order of human logos. The only real question which now remains is : who are you ? Speak

for yourself ! ଏ ତ ଜର୍ମାନ୍ ଖ୍ରୀଷ୍ଟାନ୍‌ଙ୍କ ବିଂଶଶତକର ବିଶ୍ୱବୀକ୍ଷା; ଚତୁର୍ଥଶତକରେ ସୁଦ୍ଧା ଆଥାନାସିଅସ୍ ଆଉ ନାଇସେନି ସ୍ଥବିର ଭାବିଛନ୍ତି, ସର୍ବଭୂତରେ ବ୍ୟାପ୍ତ-ନିର୍ଲିପ୍ତ ଯୋଉ ସତ୍ତା (=ଈଶ୍ୱର), ନିର୍ଦ୍ଦିଷ୍ଟ କୋଉଜଣେ ଲୋକ କି ଗୋଟେଜାତି ପ୍ରତି ସିଏ ପକ୍ଷପାତ କରିବେ- ଏ ଧାରଣା, ଆଉ ଯା ହେଉ, ଆଧାତ୍ମିକ ଉତ୍କର୍ଷ ନୁହେଁ । କି ଭାବରେ ଚର୍ଚ୍ଚ କରୁଛି ଏ ସମସ୍ୟାର ମୁକାବିଲା ? ମୁକାବିଲାକରୁଛି ଭାବାଦର୍ଶ ଉଦ୍‌ଭାବନକରି, ଦି ଆଇଡିଅଲଜି ଅବ୍ ଇଭିଲ୍ ! ଦି ଆଇଡିଅଲଜି ଅବ୍ ନିହିଲିଜ୍ମ । ଏ ଅମଙ୍ଗଳ, ଏ ଶୂନ୍ୟତା, କୁଆଡ଼େ ସଂସଦୀୟ ଗଣତନ୍ତ୍ରର ଅବଦାନ ! କାହିଁକିନା, ସଂସଦୀୟ ଗଣତନ୍ତ୍ରରେ ହିଁ ଜନ୍ମନିୟନ୍ତ୍ରଣ, ଗର୍ଭପାତ ଓ ସମକାମିତା, ଯା ଈଶ୍ୱରଙ୍କ ଅଭିପ୍ରାୟର ପ୍ରତୀପ, ଆଇନ୍‌ର ଅନୁମୋଦନ ପାଏ । ଗଣତନ୍ତ୍ରର ଅନୁମୋଦନ ପାଏ ହିଟ୍‌ଲର୍; ଗଣତନ୍ତ୍ରର ଅନୁମୋଦନ ପାଏ ପରିବାର ଭିତରେ ପାରକ୍ୟ (=ଏଲିଏନେସନ୍) । ଅର୍ଥାତ୍, ସଂସଦୀୟ ଗଣତନ୍ତ୍ର ଯେହେତୁ ସର୍ବସାଧାରଣଙ୍କ ଭୋଟ୍ ପାଇବାକୁ ଉଦ୍‌ଗ୍ରୀବ, ମଣିଷର ପ୍ରଲୋଭନ (=ଟେମ୍ପ୍‌ଟେସନ୍)କୁ ନିୟନ୍ତ୍ରଣ କରିପାରେନା, କରେ ପ୍ରଜ୍ୱଳିତ । ମଣିଷ ଉପରେ ଈଶ୍ୱରଙ୍କ କର୍ତ୍ତୃତ୍ୱକୁ କରିଦିଏ ନିସ୍ତେଜ ।

ତା ହେଲେ, ଉପାୟ ? ଜାତି-ରାଷ୍ଟ୍ରରେ ବିଭକ୍ତ ଓ ଜାତୀୟତାବାଦରେ ବିଭାଜିତ ଏ ପୃଥିବୀ ପୁନଶ୍ଚ ଫେରିଯିବ ଦେବତନ୍ତ୍ରକୁ, ପୁରୋହିତତନ୍ତ୍ରକୁ ବିବେକ-ବିବେଚନା ଉପରେ ଶାସ୍ତ୍ରର ରାଜତ୍ୱକୁ ? ଚର୍ଚ୍ଚ କିନ୍ତୁ ବିକଳ୍ପ ସପକ୍ଷରେ ନୁହେଁ; ବରଂ ପାଶ୍ଚାତ୍ୟ ଦର୍ଶନପରମ୍ପରାକୁ ବି ମନେକରେ ନିଜ ପ୍ରତିପକ୍ଷ, କାହିଁକିନା, ରେନି ଦେକାର୍ତ୍ତ୍ (୧୫୯୬-୧୬୫୦) ଯୋଉ ଦର୍ଶନତତ୍ତ୍ୱ ପ୍ରବର୍ତ୍ତନକରନ୍ତି ୧୬୪୧ରେ (ଦ୍ର.*ମେଡିଟେସନ୍‌ସ୍ ଅନ୍ ଫାର୍ଷ୍ଟ ଫିଲଜଫି*) ଈଶ୍ୱର ପ୍ରଭୃତି ଆଧିଭୌତିକ ବା କାଳ୍ପନିକ ଅସ୍ତିତ୍ୱ ସମ୍ବନ୍ଧରେ ତା ମଣିଷର ସଂଶୟକୁ ବେଳକୁବେଳ ଘନୀଭୂତ କରେ; ଆପଣା ଅସ୍ତିତ୍ୱକୁ କିନ୍ତୁ ମଣିଷ ଅସ୍ୱୀକାର କରିପାରେନା ସ୍ଥାନ-କାଳ/ଭୂଗୋଳ-ଇତିହାସ ନିର୍ବିଶେଷରେ, କାହିଁକିନା, ମଣିଷ ଏକମାତ୍ର ପ୍ରାଣୀ ଯିଏ ଚିନ୍ତାକରିପାରେ ଏବଂ ସେଇ ଚିନ୍ତାସାମର୍ଥ୍ୟ ତାକୁ ନିଜ ଚେତନାରେ ପ୍ରତିପନ୍ନକରେ ଏକକ ସ୍ୱାଧୀନ ସତ୍ତା, *Cogito ergo sum*; ଅର୍ଥାତ୍, ମୁଁ ନିଜେ ଭାବିପାରେଁ ବାହ୍ୟକୋଉ ଶକ୍ତିର ବିନା ସାହାଯ୍ୟରେ, ମୋ ଭାବନା ହିଁ ମୋ ଅସ୍ତିତ୍ୱ; ଦୈହିକଭାବେ ବଞ୍ଚିରହିଲେ ସୁଦ୍ଧା ଭାବିବାକୁ ଯଦି ଅସମର୍ଥ ହୁଏଁ, ତା ହେଲେ, ମୋ ଅସ୍ତିତ୍ୱ ମଧ୍ୟ ଅବଲୁପ୍ତ । ଚର୍ଚ୍ଚ ବୁଝିପାରେ, ଏ ତତ୍ତ୍ୱ ଚାପରେ ସ୍ୱର୍ଗରାଜ୍ୟର ମର୍ତ୍ତ୍ୟାବତରଣ ଏବଂ ସେ ରାଜ୍ୟରେ ଈଶ୍ୱରଙ୍କ ଏକାଧିପତ୍ୟ ମିଛ ହୋଇଯାଉଛି, ଭଗବାନ୍‌ଙ୍କ ବୈଦୂର୍ଯ୍ୟସିଂହାସନ ଦଖଲକରୁଛି ନିହିଲିଜ୍ମ : ସବୁ ଶୂନ୍ୟ; ଯା କିଛି ଅର୍ଥବହ, ମୋ ନିଜ ଚିନ୍ତାର କାରୁକାର୍ଯ୍ୟ କେବଳ ।

ଅନ୍ୟ ଶବ୍ଦରେ, ଶୁଭ-ଅଶୁଭ ପ୍ରଭେଦ ଯଦି ଧ୍ୱଂସହୋଇଯାଏ ହିଟ୍‌ଲରଙ୍କ ଇହୁଦୀ-ନିଧନ ଯଜ୍ଞ ତେବେ ବିବେଚିତହୋଇପାରେନା ପାପ । କିନ୍ତୁ ଇତିହାସରୁ ଦିଶୁଛି, ଭ୍ୟାଟିକାନ୍ ନିର୍ଦ୍ଦେଶରେ ହିଁ ଜର୍ମାନ୍ କ୍ୟାଥଲିକ୍ ସେଣ୍ଟର୍ ପାର୍ଟି, ସୋସ୍ୟାଲ୍ ଡେମକ୍ର୍ୟାଟ୍ ଓ କମିଉନିଷ୍ଟଙ୍କ ସାଙ୍ଗରେ ଏକମତହୋଇନାହିଁ ହିଟ୍‌ଲରଙ୍କୁ ବିରୋଧକରିବାକୁ । ବରଂ, 'ଏନେବ୍ଲିଙ୍ଗ୍ ଆ୍ୟାକ୍ଟ' (୧୯୩୩) ପାସ୍‌କରିବାକୁ ହିଟ୍‌ଲରଙ୍କୁ ସାହାଯ୍ୟକରିଛି ପାର୍ଲାମେଣ୍ଟରେ । ଖାଲି ହୁକୁମ୍‌ଜାରିକରି ରାଜତ୍ୱକରିଚନ୍ତି ତେଣୁ ହିଟ୍‌ଲର୍ । ୧୯୩୩ ଜୁଲାଇରେ ହିଟ୍‌ଲରଙ୍କ ସାଙ୍ଗରେ ଏକ ଚୁକ୍ତି (=କନ୍‌କର୍‌ଡାଟ) ସ୍ୱାକ୍ଷରକରିଛି ଭ୍ୟାଟିକାନ୍, ଜର୍ମାନୀରେ ତେଣୁ ନିରଙ୍କୁଶ ଏକାଧିପତ୍ୟ ପ୍ରତିଷ୍ଠିତହୋଇଛି ନାତ୍‌ସି ନେତୃତ୍ୱ ସାଙ୍ଗରେ ଭ୍ୟାଟିକାନ୍ ହାତମିଳାଇବା କାରଣରୁ । ତେବେ, ଇଉରୋପ ମହାଦେଶରେ ଖ୍ରୀଷ୍ଟାନ୍ ରହିଚନ୍ତି ଜନସଂଖ୍ୟାର ୭୩ ଶତାଂଶ । ବାଇବେଲ୍-ବିଶେଷଜ୍ଞ ଟମାସ୍ କ୍ୟାହିଲ୍ ସେଥିପାଇଁ କହୁଛନ୍ତି, ଭ୍ୟାଟିକାନ୍‌ର ଇତିହାସ ବହୁଳାଂଶରେ ରାଜନୀତିକ, ଧର୍ମଗୁରୁଙ୍କ ଆଧ୍ୟାତ୍ମିକତାର ନୁହେଁ ।

ଚର୍ଚ୍ଚପାଇଁ ଏ ରାଜନୀତି ନୂଆ କୋଉ ପେସା ନୁହେଁ; ପ୍ରଥମ ୫୦୦ ବର୍ଷଯାଏଁ ଯୀଶୁ ଥିଲେ ଚର୍ଚ୍ଚର କେନ୍ଦ୍ର; ଅତଃପର ରୋମାନ୍ ସାମ୍ରାଜ୍ୟର ରାଷ୍ଟ୍ରଧର୍ମରେ ପରିଣତହୋଇ ଖ୍ରୀଷ୍ଟଧର୍ମ ହୋଇଗଲା ରାଷ୍ଟ୍ରର ଅଧସ୍ତନ; ତଥାପି ରୋମାନ୍ ସାମ୍ରାଜ୍ୟର ବହୁଅଞ୍ଚଳରୁ ଦୀର୍ଘବିରୋଧର ସମ୍ମୁଖୀନ ହେବାକୁପଡ଼ିଛି ଖ୍ରୀଷ୍ଟଧର୍ମକୁ । ମାତ୍ର ଅଚିରେ ରାଷ୍ଟ୍ରାନୁକୂଲ୍ୟ ପ୍ରାପ୍ତହୋଇ ପାଦ୍ରୀ ବ୍ୟାପିଯାଇଛନ୍ତି ଏସିଆ-ଆଫ୍ରିକାକୁ; ସେଠି ମଧ ଇସ୍‌ଲାମ୍‌କୁ ଦଖଲ ଛାଡ଼ିଦେବାକୁପଡ଼ିଛି ବିସ୍ତର; ଏପରିକି, ପ୍ରାଚ୍ୟଜଗତରୁ ଉପକ୍ରମହୋଇଛି ଖ୍ରୀଷ୍ଟଙ୍କ ବିଲୁପ୍ତି, ଯେତେବେଳେ ୧୪୫୩ ଖ୍ରୀଷ୍ଟାବ୍ଦରେ କନ୍‌ଷ୍ଟାଣ୍ଟିନୋପ୍‌ଲ୍ ଜୟକରିନେଇଛି ତୁରସ୍କ । କ୍ରୁସେଡ୍ (=ଧର୍ମଯୁଦ୍ଧ) ଅବଶ୍ୟ ଚାଲୁରହିଛି, ଦାନଦକ୍ଷିଣା ଉଠାଇଛନ୍ତି ପଛକୁପଛ ପୋପ୍, ମାତ୍ର ଟଙ୍କାଗୁଡ଼ାକ ଅପଚୟହୋଇଛି ବିଳାସବହୁଳ ଜୀବନଶୈଳୀରେ, ଖାଲି ଇଟାଲୀ ଓ ରୋମ୍‌ରେ । ତହିଁଉତ୍ତାରୁ, ପୃଥିବୀର ନାନା ପ୍ରାନ୍ତରେ ମୁଣ୍ଡଟେକିଛି ଜାତୀୟତାବାଦ; ସେଥିରୁ ଜାତି-ରାଷ୍ଟ୍ର; ଖ୍ରୀଷ୍ଟଧର୍ମକୁ ଇଉରୋପ୍ ଭିତରେହିଁ ଆବଦ୍ଧରହିବାକୁ ପଡ଼ିଛି । ମାତ୍ର ଶ୍ୱେତାଙ୍ଗ ଯେତେବେଳେ ଉପନିବେଶ ବସାଇଚନ୍ତି ଯୀଶୁଙ୍କର ଘଟିଛି ପ୍ରକୃତ ରିଜରେକ୍ସନ୍; ଏଥର ଉତ୍ତର ଓ ଦକ୍ଷିଣ ଆମେରିକା, ଅଷ୍ଟ୍ରେଲିଆ, ଭାରତ, ଦକ୍ଷିଣ ଓ ପୂର୍ବ ଆଫ୍ରିକା—ବିବାକ ହୋଇଗଲେ ଖ୍ରୀଷ୍ଟଧର୍ମର ପ୍ରଜା । ପ୍ରଜା ଯେହେତୁ ଶ୍ୱେତାଙ୍ଗ ନୁହେଁ କି ସ୍ୱେଚ୍ଛାରେ ବିଦେଶୀ ପ୍ରଭୁଙ୍କୁ ବରଣକରିନାହିଁ, ଔପନିବେଶିକ ରାଷ୍ଟ୍ରର ଯେମିତି, ବହିରାଗତ ଗୀର୍ଜାର ସେମିତି, କାମ ହୋଇଚି ଏଣିକି ଶାନ୍ତିଶୃଙ୍ଖଳା ରକ୍ଷା; ଅର୍ଥାତ୍ ସ୍ୱର୍ଗରାଜ୍ୟର

ମର୍ତ୍ତ୍ୟାବତରଣ ଭୁଲିଯାଇଚନ୍ତି ସମସ୍ତେ, କାହିଁକିନା, ସେକଥା କହିଲେ ଚର୍ଚ୍ଚକୁ ତ ପ୍ରଜାର ସ୍ୱାଧୀନତା ଆନ୍ଦୋଳନକୁ ବି ସମର୍ଥନକରିବାକୁ ପଡ଼ିବ ! ପରାଧୀନତାରୂପକ ପାପରୁ ମୁକ୍ତହେଲେ ସିନା ସିଏ ହେବ ଭଗବତ୍‌କୃପାର ଯୋଗ୍ୟ ! ଇତିହାସଗତି ଉପରେ ତେଣୁ ଭଗବାନ୍ ଆଉ ହସ୍ତକ୍ଷେପ କରିପାରିନାହାନ୍ତି; ଭଗବାନ୍‌ଙ୍କ ଗତିଉପରେ ଇତିହାସ କରିଚି ହସ୍ତକ୍ଷେପ । ଷୋଡ଼ଶଶତକରେ ମହାମତି ମାର୍ଟିନ୍ ଲୁଥର୍ ସେଥିପାଇଁ ପୋପ୍‌ଙ୍କୁ କହିଛନ୍ତି ଖ୍ରୀଷ୍ଟବିଦ୍ୱେଷୀ (=ଆ୍ୟଣ୍ଟିକ୍ରାଇସ୍ଟ), କାହିଁକିନା, ମୁକ୍ତିଲାଭ ସକାଶେ ଦୁଃଖବରଣ, ଏପରିକି ମୃତ୍ୟୁବରଣ, ଗୀର୍ଜା ଆଉ ଶିଖାଏନା, ଶିଖାଏ ଧର୍ମ ନାଁରେ ବଞ୍ଚିତମଣିଷଙ୍କ ଉପରେ ପ୍ରଭୁତ୍ୱ; ଯେପରି କଲମ୍ବସ୍ ଆମେରିକା ଆବିଷ୍କାର କରିବା ପୂର୍ବରୁ ସ୍ଥାନୀୟ ଆଦିବାସୀଙ୍କ ଭିତରେ ପ୍ରଚଳିତଥିଲା ଯୋଉ ଧର୍ମସଂସ୍କାର, ତା'ଉପରେ ବହିରାଗତ ଗୀର୍ଜାର ବଳାତ୍କାର; ବହିରାଗତ ଇଉରୋପୀୟ ଶକ୍ତିର ସ୍ୱାର୍ଥରେ । ଅନ୍ୟ ଶବ୍ଦରେ, ବହିରାଗତ ଶ୍ୱେତାଙ୍ଗ ସମ୍ମୁଖୀନହୋଇଛନ୍ତି ଯୋଉଠି ଦିଗନ୍ତବ୍ୟାପୀ ଅରଣ୍ୟ କି ମରୁପ୍ରାନ୍ତର କି ଗର୍ଜମାନ କରାଳସ୍ରୋତ ନଦୀ, ଧର୍ମଭାବ ଉଛୁଳିପଡ଼ିଛି ଛାତିଭିତରେ; ଅସଭ୍ୟଙ୍କୁ ସଭ୍ୟ କରିବେ, ବିଗ୍ରହପୂଜକ ହାତରେ ଧରାଇଦେବେ କ୍ରୁଶକାଠ, ସ୍ୱର୍ଗକୁଯିବା ନିଶୁଣି ! ଯୀଶୁଙ୍କ ଜୁଦାଇଜ୍ମ ସାଙ୍ଗରେ ଚର୍ଚ୍ଚ-ପ୍ରଚାରିତ ଖ୍ରୀଷ୍ଟଧର୍ମର ତେଣୁ ଦେଖାଦେଇଚି ବେଢାଏ ତଫାତ୍, କାହିଁକିନା, ନବ ଧର୍ମାନ୍ତରିତକୁ *ତୋରାହ୍* ମାନିବାକୁ ପଡ଼େନା, ମୌଜେସ-ପ୍ରବର୍ତ୍ତିତ ଦଶଆଜ୍ଞାରୁ ମାନିବ କେବଳ ସେତିକି, ଯୀଶୁଙ୍କ *ସରମନ୍ ଅନ୍ ଦ ମାଉଣ୍ଟ୍* ସାଙ୍ଗରେ ରହିଚି ଯାର ସାମଞ୍ଜସ୍ୟ, ଆଉ ଲିଙ୍ଗାଗ୍ରର ତ୍ୱକ୍‌ଛେଦନ ମଧ ବାଧତାମୂଳକ ନୁହେଁ । ଅର୍ଥାତ୍ ଆବ୍ରାହମ୍ ସାଙ୍ଗରେ ଭଗବାନ ଯୋଉ ଚୁକ୍ତିକରିଥିଲେ, ଧର୍ମାନ୍ତରିତ ପ୍ରତି ତା ପ୍ରଯୋଜ୍ୟ ନୁହେଁ ଜମାରୁ । ସର୍ବୋପରି, ଇସ୍‌ରାଏଲ୍‌ର ଜାତୀୟତାବାଦ ସହିତ ଧର୍ମାନ୍ତରିତ ପ୍ରଜାର କୋଉହେଲେ ସମ୍ବନ୍ଧ ନାହିଁ, ଈଶ୍ୱରଙ୍କ ନିର୍ବାଚିତ ପରିଜନ ନୁହେଁ, ପ୍ରଜା ଏକ୍ଷଣି ମୁକ୍ତିକାମୀ ବିଶ୍ୱନାଗରିକ; ରାଜନୀତିରେ ତେଣୁ ନିର୍ବୀର୍ଯ୍ୟ । ତାର ନେସନ୍ ନାହିଁ କି ନ୍ୟାସନାଲିଟି ନାହିଁ, 'ବାବେଲ୍' ଦୁର୍ଗରୁ ନିକ୍ଷିପ୍ତହୋଇନାହିଁ ସିଏ; ସବୁ ଖ୍ରୀଷ୍ଟାନ୍‌ଙ୍କର ତେଣୁ ଏକାଭାଷା: *ନିଉ ଟେଷ୍ଟାମ୍ୟାଣ୍ଟ*, ଯାର ଅନୁବାଦ ରହିଛି ପ୍ରାୟ ପ୍ରତ୍ୟେକ ଲିଖିତ ଭାଷାରେ । ତାହାହିଁ ଶାସ୍ତ୍ରବଚନ, କ୍ୟାନନ୍ । ଜୁଦାଇଜ୍ମ ଦୃଷ୍ଟିରେ ଏଗୁଡ଼ାକ ଅନଧିକାର ଈଶ୍ୱରଚର୍ଚ୍ଚା, ଗୋଟାପଣେ ଅନୁମାନ, ତେଣୁ, ଅଶାସ୍ତ୍ରୀୟ । ମାତ୍ର ଖ୍ରୀଷ୍ଟଧର୍ମ, ରାଷ୍ଟ୍ରଧର୍ମ ହେବାପରେ ଜ୍ୟୁ ନିର୍ଯାତିତହୋଇଛନ୍ତି ନାନାଦି ବାଗବର୍ଗରେ; ଏବଂ ବିନା ବ୍ୟତିକ୍ରମରେ, ଖ୍ରୀଷ୍ଟାନ୍ ଧର୍ମଯାଜକଙ୍କ ନେତୃତ୍ୱରେ । ଶତ୍ରୁତାର ଚୂଡ଼ାନ୍ତ ଦୃଷ୍ଟାନ୍ତ ବିଂଶଶତକରେ ଆ୍ୟଣ୍ଟି-ସେମିଟିଜ୍ମ (=ଇହୁଦୀ-ବିଦ୍ୱେଷ), ହିଟଲର୍ କରିଛନ୍ତି ତାକୁ ଜର୍ମାନୀର ପ୍ରମୁଖ ବିଦେଶନୀତି ।

ନୋହାର ବଡ଼ପୁଅ ନାଁ ଶେମ୍ (ଦ୍ର. *ଜେନିସିସ୍*); ଶେମ୍‌ର ବଂଶଧରହିଁ ସେମାଇଟ୍ । ଚର୍ଚ୍ଚ କହିଚି ନୀଚଜାତି, ଗୋରାଙ୍କ ଆଖିରେ ଯେମିତି ନିଗ୍ରୋ । ଅଥଚ ମହାବୀର ଆଲେକ୍‌ଜାଣ୍ଡାର୍ ଜ୍ୟୁଙ୍କୁ ମନେକରିଚନ୍ତି ଅଭିଜାତ ! ଆଭିଜାତ ଅଲ୍‌ବତ୍; ନହେଲେ ସଦାନିପୀଡ଼ିତ ବାସ୍ତୁହରା ସେଇ ଜାତିରୁ ବାହାରନ୍ତେ କେମିତି କାର୍ଲମାର୍କ୍ସ ଆଉ ଆଇନ୍‌ଷ୍ଟାଇନ୍ ! ମାତ୍ର, ପ୍ରଥମ ତିନିଶ'ବର୍ଷ ଖ୍ରୀଷ୍ଟାନ୍ ନିଜକୁ ଭାବିଚ୍ନ୍ତି ଏକ ତୃତୀୟଜାତି, ଜ୍ୟୁ ନୁହଁ କି ଜେଣ୍ଟାଇଲ୍ ନୁହଁ; ମାଟିର ମର୍ତ୍ତ୍ୟଲୋକରେ ଅଭ୍ୟାଗତ ତୀର୍ଥଯାତ୍ରୀ ମାତ୍ର; ତାଙ୍କ ଅସଲ ବାସସ୍ଥାନ ତ 'କିଙ୍ଗ୍‌ଡମ୍ ଅଫ୍ ହେଭେନ୍ !' ତୀର୍ଥଯାତ୍ରୀର ପୁଣି ଦେଶ କାହିଁ ନା ରଜା କାହିଁ, ସ୍ୱର୍ଗକୁ ଯାଉଁଯାଉଁ ରୋମ୍‌ରେ ଆସି ଠେକିଛି ଖାଲି ଦି'ଦିନପାଇଁ ! ତେଣୁ ମାଡ଼ଦେଇଚି ପ୍ରଶାସନ । ମାତ୍ର, ଭାରତ ଚୀନ୍ ପ୍ରଭୃତି ପ୍ରାଚୀନ ସଭ୍ୟତାକୁ ସମ୍ମୁଖୀନହେଲା ଯେତେବେଳେ, ଖ୍ରୀଷ୍ଟଧର୍ମକୁ ଗ୍ରହଣକରିବାକୁ ପଡ଼ିଛି ଗ୍ରୀକ୍ ହେଲେନିକ୍ସର ଆଦିକଳ୍ପ, ଗ୍ରୀକ୍ ବିଶ୍ୱବୀକ୍ଷା ଓ ଈଶ୍ୱରତତ୍ତ୍ୱ; କାହିଁକିନା, ଏସିଆ ଭଳି ପ୍ରାଚୀନ ଭୂଖଣ୍ଡରେ ପ୍ରଚଳିତଥିଲା ଯୋଉ ଧର୍ମାଧାରା, ଯୀଶୁଙ୍କୁ ସେଥିରେ ଏକମାତ୍ର ତ୍ରାଣକର୍ତ୍ତା କରି ଛିଡ଼ାକରିବା ହୁଅନ୍ତା ହାସ୍ୟାସ୍ପଦ । ଉଦ୍‌ଭାବିତହେଲେ ତେଣୁ 'ଟ୍ରିନିଟି', ବାପ-ପୁଅ-ପ୍ରେତ ଭଳି ତ୍ରିମୂର୍ତ୍ତି; ନିର୍ଦ୍ଦିଷ୍ଟ କୋଉ ଦେଶ/ଜାତିର ଯା ଉତ୍ତରାଧିକାର ନୁହେଁ । ଚର୍ଚ୍ଚ ଏ ବାଟରେ ଆରମ୍ଭକରିଦେଇଚି ଯୀଶୁଙ୍କ ବିଶ୍ୱାୟନ । ଆଦାମ୍ ମୁହଁରେ ସ୍ଫୁରିତ ହୋଇଥିଲା ଆଦିଶବ୍ଦ; ଏସିଆର ଧର୍ମଧାରାରେ ବି ରହିଛି ଆଦିଶବ୍ଦର ଉତ୍ତରାଧିକାର; ଖ୍ରୀଷ୍ଟଧର୍ମ ତେଣୁ ବିଶ୍ୱଜାଗତିକ ଧର୍ମବିଶେଷ, ତା'ର ବି ଅବତାର, ମୋକ୍ଷ, ସଦାଚାର, ଈଶ୍ୱରଦର୍ଶନ ଓ କୃପାଲାଭ ଭଳି ପରମ୍ପରା ରହିଛି, ରହିଛି କର୍ମଫଳ ଓ ଜନ୍ମାନ୍ତର ଭଳି ରହସ୍ୟମୟ ପ୍ରତୀତୀ । ରୋମାନ୍ ସାମ୍ରାଜ୍ୟର ବିବର୍ତ୍ତନ ପ୍ରକ୍ରିୟାରେ ଖ୍ରୀଷ୍ଟଧର୍ମ, ଏଇ ସୂତ୍ରରେ, ହୋଇଯାଇଛି ଇଉରୋପୀୟ ଐକ୍ୟ ଗଠନରେ ରାଷ୍ଟ୍ରର ଅଂଶୀଦାର; ସାମ୍ରାଜ୍ୟ ତେଣୁ ବିଶେଷଣ ପାଇଛି 'ପବିତ୍ର' (=ହୋଲି) । ସେ ଐକ୍ୟକୁ ଭାଙ୍ଗିଦେଇଛନ୍ତି ଅବଶ୍ୟ ୧୮୦୬ରେ ନେପୋଲିଅଁ । ତା', ଆଗରୁ କନ୍‌ସ୍ଟାଣ୍ଟାଇନ୍ ରାଜଧାନୀ ଉଠାଇଆଣିଛନ୍ତି ରୋମ୍‌ରୁ ବାଇଜାଣ୍ଟିୟମ୍; ଏବଂ ବାଇଜାଣ୍ଟିଅମ୍ ହୋଇଛି ଖ୍ରୀଷ୍ଟାନ୍‌ଙ୍କ ନୂତନ ତୀର୍ଥ, କାହିଁକିନା, ଇଉରୋପର ଜରାଗ୍ରସ୍ତ ରୋମ୍ ଚାଲିଯାଇଛି ଜର୍ମନ୍-ବିଜେତାଙ୍କ କବଳକୁ ଏବଂ ପୋପ୍ ହୋଇଚନ୍ତି ରାଜନୀତିରେ ବିଜେତାଙ୍କ ହାତବାରିସି । ୧୪୫୩ରେ ବାଇଜାଣ୍ଟିଅମ୍ ଚାଲିଯାଇଚି ତୁରସ୍କ ଅଧୀନକୁ; ମସ୍କୋ ହୋଇଚି ଏଥର ନବ୍ୟରୋମ୍ ଆଉ ଜାର୍ (ତୃତୀୟ ଆଇଭାନ୍) ଚର୍ଚ୍ଚର ଅଭିଭାବକ । ସାରା ପୃଥିବୀ ଚରିବୁଲିଚ୍ନ୍ତି ସିନା, ମାଟିର ପୃଥିବୀଟା କିନ୍ତୁ ଖ୍ରୀଷ୍ଟାନ୍‌ଙ୍କ ଜଗତ୍ ନୁହେଁ; ଡୁବନ ଆଉ ସ୍ୱୀକାରୋକ୍ତି (=ବ୍ୟାପ୍ଟିଜ୍ମ ଆଉ କନ୍‌ଫେସନ୍) ବଳରେ ନବଜନ୍ମ ଘଟିଯିବା ଉତାରୁ

ଖ୍ରୀଷ୍ଟାନ୍ ହେଇଚ୍ଛନ୍ତି ଭିନ୍ନ ଧରଣୀର ବାସିନ୍ଦା, ଯୋଉ ଧରଣୀର ଭୂଗୋଳ ଇତରଜନଙ୍କୁ ଅଜ୍ଞାତ । ଇତରଜନଙ୍କୁ, ତେଣୁ, ଅବଗାହନ ଜରିଆରେ ସଇତାନ ହାତରୁ ମୁକ୍ତକରି ଯୀଶୁଙ୍କ ସାନ୍ନିଧ୍ୟକୁ ଉନ୍ନୀତକରିବାକୁ ଦରକାର ଧର୍ମାନ୍ତର (=କନ୍‌ଭର୍‌ସନ୍); ଏବଂ ଧର୍ମାନ୍ତର ମୁହୂର୍ତ୍ତରେ ପୂର୍ବଜୀବନର ସକଳ ପାପ ସ୍ୱୀକାରପୂର୍ବକ ଯୀଶୁଙ୍କ କ୍ଷମାଲାଭ । ପୂର୍ବଜୀବନର ପାପ ମାନେ ଅବିଶ୍ୱାସ/ସଂଶୟ ଆଉ ଈଶ୍ୱରଙ୍କ ଅସ୍ତିତ୍ୱରେ ଅନାସ୍ଥା; ମୁକ୍ତି (=ସାଲ୍‌ଭେସନ୍) ଯେ ମଣିଷର ନିୟତି, ସେକଥାକୁ ସନ୍ଦେହ । ସନ୍ଦେହଭଞ୍ଜନର ଦୀର୍ଘକାଳବ୍ୟାପୀ ଅଭିଯାନ ସତ୍ତ୍ୱେ ବିଂଶଶତକରେ କିନ୍ତୁ ଘଟିଯାଇଛି ଦୁଇ-ଦୁଇଟା ବିଶ୍ୱଯୁଦ୍ଧ, ଖ୍ରୀଷ୍ଟାନ୍‌ଦୁନିଆରେ କେବଳ ।

ହେଲେନୀୟ ବିଶ୍ୱବୀକ୍ଷା ଗ୍ରହଣକଲାପରେ, ଭଗବାନ ହୋଇଛନ୍ତି ଚର୍ଚ୍ଚପାଇଁ 'ଅନାଦି ପରମକାରଣ' (=ଦ ଫାର୍ଷ୍ଟ କଜ୍), ତେଣୁ ସଂଜ୍ଞାର ଅତୀତ । ଆଦାମ୍ କତିରେ ନିଜକୁ ଉଦ୍‌ଘାଟନ କରିଛନ୍ତି, କାହିଁକିନା, ମଣିଷହିଁ ତାଙ୍କ ସନ୍ତାନ ଓ ପ୍ରତିମା । ଲଗସ୍ ରୂପରେ ଖ୍ରୀଷ୍ଟ, ମନୁଷ୍ୟ ହେଲେସୁଦ୍ଧା, ଦୈବବାଣୀ । *ବାଇବେଲ୍*‌ବର୍ଣ୍ଣିତ ସୃଷ୍ଟିତତ୍ତ୍ୱକୁ କିନ୍ତୁ ଡାର୍‌ଉଇନ୍‌ଙ୍କ ବିବର୍ତ୍ତନବାଦ ପ୍ରମାଣକରିଛି ମିଛ; ଫାର୍ଷ୍ଟ କଜ୍ ପ୍ରତୀତିକୁ ଆହ୍ୱାନଜଣାଇଛନ୍ତି ଦାର୍ଶନିକ ଇମାନୁଏଲ୍ କାଣ୍ଟ୍ ଆଉ ତାଙ୍କ ପଛକୁ ଲୁଡ୍‌ୱିଗ୍ ଫୟ୍‌ବାଖ୍; ଫ୍ରେଡ୍ରିଖ୍ ନୀଇଚହ୍ ଘୋଷଣାକରିଛନ୍ତି : ଗଡ୍ ଇଜ୍ ଡେଡ୍ । ଚର୍ଚ୍ଚ ଦୃଷ୍ଟିରେ, ଏ ଆଚରଣ, ଈଶ୍ୱରଦତ୍ତ ଫ୍ରିଡମ୍‌ର ଅପବ୍ୟବହାର; ଠିକ୍ ଯେମିତି ଦେବଦୂତ (=ଆ୍ୟାଞ୍ଜେଲ୍) କରିଛନ୍ତି *ଓଲ୍ଡ ଟେଷ୍ଟାମ୍ୟାଣ୍ଟ୍*‌ରେ । ସ୍ୟାଟାନ୍ ରୂପକ ଦାନବ ଚିରକାଳ ଈଶ୍ୱରଙ୍କ ପ୍ରତିଦ୍ୱନ୍ଦ୍ୱୀ ଈଶ୍ୱରଙ୍କ ଆପଣା ସୃଷ୍ଟିହେବା ସତ୍ତ୍ୱେ । ସେଇ ମତାଇଥିଲା ଦେବଦୂତଙ୍କୁ ବିଦ୍ରୋହକରିବାକୁ । ମାତ୍ର, ଈଶ୍ୱରଙ୍କଠିଁ ଯିଏ ଆଶ୍ରୟନେଇଛି, ତା'ପାଇଁ ସ୍ୱର୍ଗପ୍ରାପ୍ତି ଅବଧାରିତ । ପାରସ୍ୟରେ ପ୍ରଚଳିତ ଜୋରୋଷ୍ଟ୍ରିଆନ୍ ଧର୍ମ (ଦ୍ୱୈତବାଦୀ) ସଂସର୍ଗରେ ଇହୁଦୀ ଆସିଛନ୍ତି ବ୍ୟାବିଲୋନ୍‌ରେ ଯେତେବେଳେ ନିର୍ବାସିତ (ଖ୍ରୀ.ପୂ.୫୮୬-୫୩୮); ଏବଂ ଜୋରୋସ୍ଟ୍ରିଆନ୍ ପ୍ରଭାବବଶତଃ ସ୍ୟାଟାନ୍ ରୂପକ ଦ୍ୱୈତସତ୍ତାର ଅନୁପ୍ରବେଶ ଘଟିଛି ଜୁଡାଇଜ୍ମ ଭିତରକୁ; ଯେପରି, ଆଲୋକର ବିପରୀତ ଅନ୍ଧାର, ସତ୍ୟର ମିଥ୍ୟା, ଶୁଭର ଅଶୁଭ, ଗଡ୍-ର ସେଇପରି ସ୍ୟାଟାନ୍ । କିନ୍ତୁ ଶେଷବିଚାର (ଲାଷ୍ଟ ଜଜ୍‌ମେଣ୍ଟ) ହିଁ ଭଞ୍ଜନକରିଦେବ ଆପାତଃ ସେଇ ବୈପରୀତ୍ୟ । ଲକ୍ଷ୍ୟକରିବା କଥା, ସ୍ୟାଟନ୍ (ସଇତାନ୍) ସବୁବେଳେ କୃଷ୍ଣବର୍ଣ୍ଣ । ଯୋଉ ପ୍ରଲୋଭନ ଦେଖାଇ ଅବାଟକୁ ନେଇଯାଏ, ତା ମଧ, ଅଧିକାଂଶକ୍ଷେତ୍ରରେ, ଯୌନପ୍ରଲୋଭନ । କୁହାଯାଉଛି, ଏ ଉପସର୍ଗ ବି ଆସିଛି ପାରସ୍ୟରୁ, ମଣି ନାମକ ଇରାନୀ ପ୍ରଫେଟ୍‌ଙ୍କ ତୃତୀୟଶତକ କାଳର ଧର୍ମତତ୍ତ୍ୱରୁ ଯେ, ନାରୀ ହିଁ ପାପପଥରେ ଟାଣିନେଇଯାଏ ପୁରୁଷକୁ । ରାମକୃଷ୍ଣ ପରମହଂସ ମଧ

ପାପର ଉତ୍ସ ବତାଇଛନ୍ତି, କାମିନୀ ଆଉ କାଞ୍ଚନ । ଅଥଚ ପରମଧାର୍ମିକ କବି ଦାନ୍ତେଙ୍କୁ *ଡିଭାଇନ୍ କମେଡି* ଭଳି ମହାକାବ୍ୟ ଲେଖାଇଦେଇଛନ୍ତି ବିଏଟ୍ରିଚ୍ ନାମ୍ନୀ ଏକ ମହିଳା, କବି ଯାହାଙ୍କୁ ପାଇନାହାନ୍ତି କେବେ ଜୀବନରେ । ହିନ୍ଦୁ କିନ୍ତୁ ପୁରୁଷ-ପ୍ରକୃତି ଶିବ-ଶକ୍ତି ପ୍ରଭୃତି ପ୍ରତୀତି ମାଧ୍ୟମରେ ନାରୀକୁ କରିଛନ୍ତି ମହିମାମଣ୍ଡିତ, ଯଦିଓ ଯୌନସ୍ୱାଧୀନତାର ପଘା ରଖିଛନ୍ତି ପୁରୁଷହାତରେ ।

'ଆତ୍ମା' ଉଦ୍‌ଭାବନକରି ହିନ୍ଦୁ ଖଣ୍ଡନକରିଚନ୍ତି ଦ୍ୱୈତବାଦ; ବୌଦ୍ଧ 'ଦୁଃଖ' ଆବିଷ୍କାରକରି ପହଞ୍ଚିଛନ୍ତି ଶୂନ୍ୟତାରେ; ଖ୍ରୀଷ୍ଟାନ୍ କିନ୍ତୁ ଏକେଶ୍ୱରବାଦରେ ଘାଣ୍ଟିହୋଇ, ନା ଛାଡ଼ିପାରୁଛନ୍ତି ଈଶ୍ୱରଙ୍କୁ ନା ଛାଡ଼ିପାରୁଛନ୍ତି ଯୀଶୁଙ୍କୁ । ଉଭୟଙ୍କୁ ମାନିଲେ ମାନିବାକୁ ପଡ଼ିବ ଦ୍ୱୈତସତ୍ତା : ଭଗବାନ୍-ଭକ୍ତ, ଭକ୍ତ-ଭଗବାନ୍ । ସ୍ୱୀକାରକରିବାକୁ ହେବ ଯୀଶୁଙ୍କ ପ୍ରଜାତିଗତ ମନୁଷ୍ୟତ୍ୱ, ଏବଂ ସେଇ ସୂତ୍ରରେ, ମାନବିକ ସ୍ଖଳନ ପତନ ଓ ନଶ୍ୱରତା; ତା ହେଲେ କିନ୍ତୁ ଚର୍ଚ୍ଚର ଅସ୍ତିତ୍ୱ ଉପରେ ଲାଗିଯିବ ପ୍ରଶ୍ନଚିହ୍ନ । ଯୁଗପରେ ଯୁଗ ଚର୍ଚ୍ଚ ତେଣୁ ଖୋଜୁଛି ସଂହତ ଏକ ଯୁକ୍ତି-ସ୍ଟ୍ରକ୍‌ଚର୍; ଗ୍ରହଣ-ବର୍ଜନ ଲାଗିରହିଛି, କାହିଁକିନା, ଇଉରୋପର ନିଜ ମେଧାପରମ୍ପରାରୁ ଆସିଛି କ୍ରମାଗତ ଆକ୍ରମଣ ! ଭଗବାନ୍ ନିଜ ସ୍ୱରୂପରେ ମଣିଷକୁ ଗଢ଼ିଛନ୍ତି ହୁଏତ; ମାତ୍ର ଯୋଉ ଉପାଦାନରେ ଗଢ଼ିଛନ୍ତି, ତା ମାଟି କି କାଦୁଅ । ଯୁକ୍ତିସଙ୍ଗତ ମର୍ମାର୍ଥ ତେଣୁ : ନାମ-ରୂପ ଈଶ୍ୱରଙ୍କ ଅନୁରୂପ ହେଲେସୁଦ୍ଧା, ବସ୍ତୁପରିଚୟରେ ମଣିଷ ପଞ୍ଚଭୂତର ସମାହାର, ଏବଂ ଯୀଶୁ ଏ-ନିୟମରୁ ବ୍ୟତିକ୍ରମ ନୁହେଁ । ଈଶ୍ୱର ତାଙ୍କୁ, ସବୁମଣିଷଙ୍କୁ ଯେମିତି, ଦେଇଛନ୍ତି 'ଫ୍ରିଡମ୍', ଅର୍ଥାତ୍ ଚିନ୍ତା ଓ କର୍ମର ସ୍ୱାଧୀନତା; ତାଙ୍କ ନିଜ ଇତିହାସ-ଭୂଗୋଳ ପରିଧିର ସୀମାଭିତରେ ସେ ସ୍ୱାଧୀନତା ସିଏ ପ୍ରୟୋଗକରିଛନ୍ତି ଯଥାସାଧ୍ୟ, ଏବଂ ଫଳତଃ, ତାଙ୍କୁ ମୂଲ୍ୟ ଚୁକାଇବାକୁ ପଡ଼ିଛି ଜୀବନ ବିନିମୟରେ । ଭବିଷ୍ୟତ୍ ପ୍ରଜନ୍ମପାଇଁ ରହିଛନ୍ତି ତେଣୁ ଶିଳାସ୍ତମ୍ଭ ମୁକ୍ତିପ୍ରୟାସର ଅସୀମ ସରଣୀରେ । ତାଙ୍କ ଉତ୍ତାରୁ ଯିଏ ଆସିବେ, ଅଭିଯାତ୍ରା ସୁରୁକରିବେ ଆହୁରିଆଗକୁ । ଚର୍ଚ୍ଚ ଯଦି ଏତିକି କହିବ, ଇହୁଦୀଙ୍କ ସାଙ୍ଗରେ ଖ୍ରୀଷ୍ଟାନ୍‌ଙ୍କ ବିରୋଧ ମେଣ୍ଟିଯିବ ଛାଏଁ ଛାଏଁ, ଆଉ ଯୀଶୁଙ୍କୁ ଦେବତା ବନାଇବାକୁ କୂଟକପଟର ଜାଲ ବିଛାଇବାକୁ ବି ପଡ଼ନ୍ତାନାହିଁ ଜମାରୁ । ଏକଥା ଯିଏ କହିବ, ସିଏ ସାଟ୍ୟାନ୍, ବିରୋଧକରୁଚି ସ୍ୱୟଂ ପରମେଶ୍ୱରଙ୍କୁ, ଅପଚୟକରୁଛି ଈଶ୍ୱରଦତ୍ତ ଫ୍ରିଡମ୍; ଆଦମ୍ ଯେମିତି ଦେବତାହେବାକୁ ଚାହିଁଥିଲା ନିଷିଦ୍ଧଫଳ ଖାଇ, ସିଏ ବି ମନକରୁଛି ଦେବତାହେବ ଈଶ୍ୱରଙ୍କୁ ସିଂହାସନଚ୍ୟୁତକରି !

ଈଶ୍ୱରକରିବାକୁ ଯାଇ ଯୀଶୁଙ୍କୁ 'ଇନ୍‌କାର୍‌ନେସନ୍' କୁହାଯାଇଛି, ହିନ୍ଦୁଙ୍କ ଅବତାରବାଦ ତ ଆହୁରି ପ୍ରାଚୀନ; କିନ୍ତୁ ଅବତାର ପୃଥିବୀକୁ ଆସେ ଧର୍ମକୁ ଗ୍ଳାନିରୁ

ଉଦ୍ଧାରକରି ସତ୍ୟ ପ୍ରତିଷ୍ଠାକରିବାକୁ; ଆଉ, ସବୁମଣିଷଙ୍କ ପରି ସିଏ ବି ମରିଯାଏ; ଫେର୍ କୋଉ ଗ୍ଳାନି ଦେଖାଦେଲେ ଫେର୍ ଆସେ; ଏମିତି ଦଶଅବତାର ଗଲେଣି, କିଏ ମଣିଷ ତ କିଏ ଜୀବଜନ୍ତୁ । କିନ୍ତୁ ଯୀଶୁରୂପକ ଇନ୍‌କାର୍‌ନେସନ୍ କୁଆଡ଼େ ଚିରକାଳୀନ; ଆଗରୁ କେହି ଆସିନାହିଁ କି ପଛକୁ କେହି ଆସିବନାହିଁ । ଏ ଥିୟଲଜିକୁ ବଞ୍ଚାଇରଖିବା ଅସାଧ କର୍ମ । ଚର୍ଚ୍ଚର ବିସପ୍ ତ ସାଧାରଣ ଲୋକ, ଦରମା ନେଇ ଧର୍ମ ପ୍ରଚାରକରନ୍ତି; ବାଉଳିହେବେ ସିନା! ତେବେ, ଜନ୍ (୧.୧୪) କହିଛନ୍ତି, the Word became flesh. ମାନେ, ଅଜର ଅମର ଯୋଉ ଈଶ୍ୱର, ଯୀଶୁ ତ ତାଙ୍କ ମର୍ତ୍ତ୍ୟରୂପ, କେମିତି ନହେବେ ଅଜର-ଅମର ! ଜବାବ ଦେଇଚ଼ନ୍ତି ଜଣେ ଜର୍ମନ୍ ଦାର୍ଶନିକ : Who are you ? Speak for yourself ! କାହିଁକିନା, ମନୁଷ୍ୟ ବ୍ୟବାହାରକରୁଛି ଯୋଉ ଭାଷା, ତା ସିଷ୍ଟେମ୍‌ରେ ଏ 'ଫ୍ଲେସ୍' କୁ ଅଙ୍ଗୀଭୂତକରିବା ମୋଟେ ସମ୍ଭବନୁହେଁ । ଭାଷାଶୃଙ୍ଖଳା ଭିତରେ ଯେହେତୁ ସ୍ଥିତରହିଛି ଶବ୍ଦ ଓ ଶବ୍ଦ ସାଙ୍ଗକୁ ବିପରୀତ ଶବ୍ଦ (କାଉଣ୍ଟର୍-ଲଗସ୍), ବିରୋଧ ମେଣ୍ଟାଇପାରିବେ ଏକମାତ୍ର ଅଜର-ଅମର ସେଇ ସତ୍ତା ରକ୍ତମାଂସ ଶରୀର (=ଫ୍ଲେସ୍)ରେ ସାକ୍ଷାତ୍‌ହୋଇ ।

ରୋମାନ୍ ସାମ୍ରାଜ୍ୟର କେନ୍ଦ୍ର ବାଇଜାଣ୍ଟିୟମ୍‌କୁ ସ୍ଥାନାନ୍ତରିତ ହେବାପରେ, ସମ୍ରାଟ କନ୍‌ଷ୍ଟାଣ୍ଟାଇନ୍ ନିଜକୁ ଘୋଷଣାକଲେ ଚର୍ଚ୍ଚର ବୈଦେଶୀକନୀତିର ବିସପ୍; ରୋମାନ୍ ସାମ୍ରାଜ୍ୟ ବାହାରେ ଚର୍ଚ୍ଚ କଣ କରିବ, କଣ ନ କରିବ, ଖାଲି ସେତିକି ଉପରେ ନୁହେଁ, ଚର୍ଚ୍ଚର ଆଧ୍ୟାତ୍ମିକବିକାଶ ଉପରେ ମଧ ରାଷ୍ଟ୍ରଶକ୍ତିର ନିୟନ୍ତ୍ରଣ ପାଇଚି ସ୍ଥାୟିତ୍ୱ, କାହିଁକିନା, ସାମ୍ରାଜ୍ୟସାରା ଯେତେ ଗିର୍ଜା, ତାଙ୍କ କାଉନ୍‌ସିଲ୍‌କୁ ତଲବକରିବା ସାଙ୍ଗକୁ ତାଙ୍କ ନିଷ୍ପତ୍ତିକୁ ଅନୁମୋଦନକରିବା ଅଧିକାର ଏକମାତ୍ର ସମ୍ରାଟ୍‌ଙ୍କର । ବାଇଜାଣ୍ଟିଅମ୍‌ର ପ୍ରଧାନ-ପୁରୋହିତ ତେଣୁ ଯୀଶୁଙ୍କୁ ଭଗବାନ୍ ବନାଇବା କାମରେ ନିଜକୁ ନିୟୋଜିତ କରିଛନ୍ତି ପାରୁପର୍ଯ୍ୟନ୍ତ; ରାଜାଙ୍କ ଅସଲ ମତଲବ୍ କିନ୍ତୁ ପାଦ୍ରୀ ଯେମିତି ରାଜନୀତିକ କ୍ଷମତା ଆଡ଼କୁ ମନବଳାଇବାକୁ ଅବକାଶ ନ'ପାଇବେ ଅଥବା ରାଷ୍ଟ୍ରପରିଚାଳନାରେ ଗୁରୁତ୍ୱପୂର୍ଣ୍ଣ କୋଉ ଭୂମିକାରେ ଅବତୀର୍ଣ୍ଣ ହୋଇନପାରିବେ । ୧୪୫୩ରେ କନ୍‌ଷ୍ଟାଣ୍ଟିନୋପ୍ଲର ପତନ ଘଟିଚି; ତୁରସ୍କ ଯୋଉ ସାମ୍ରାଜ୍ୟ ସ୍ଥାପନକରିଛି ମଧପ୍ରାଚ୍ୟରେ, ସେଇଠି କେବଳ ଇଷ୍ଟର୍ଣ୍ଣ ଅର୍ଥଡକ୍ସଚର୍ଚ୍ଚକୁ ଦିଆଯାଇଛି ରାଜନୀତିକ ଦାୟିତ୍ୱ ଏବଂ ବଲକାନ୍‌ଭୂଖଣ୍ଡରେ ସ୍ଥାନୀୟ ଖ୍ରୀଷ୍ଟାନ୍‌ଙ୍କୁ ସଂଗଠିତ କରିବା ଭାରପାଇଛି ଚର୍ଚ୍ଚ; ଅର୍ଥାତ୍, ବିଜେତା ଅ-ଖ୍ରୀଷ୍ଟାନ୍ ରାଜତ୍ୱକୁ ସମର୍ଥନକରିବା ସାଙ୍ଗକୁ ସମ୍ଭାବ୍ୟ ବିରୋଧକୁ ନିର୍ବିଷକରିବା ହୋଇଛି ଚର୍ଚ୍ଚର ପ୍ରଧାନ କର୍ତ୍ତବ୍ୟ । ଫଳ ହୋଇଛି କିନ୍ତୁ ବିପରୀତ, କାହିଁକିନା, କାଳକ୍ରମେ ପାଦ୍ରୀ (=ସ୍ଥାନୀୟ ସମ୍ପ୍ରଦାୟର ମୁଣ୍ଡିଆଳ),

ରାଜନୀତିରେ(=କ୍ଷମତାଦଖଲ ପ୍ରତିଦ୍ୱନ୍ଦ୍ୱିତାରେ) ଗ୍ରହଣକରିଛନ୍ତି ସଂଘାତମୂଳକ ଭୂମିକା । ସେଇ ପ୍ରବଣତାର ବିକାଶ ଦେଖିହେବ ସାଇପ୍ରସ୍‌ର ଆର୍କବିସପ୍ ତୃତୀୟ ମାକାରିଅସ୍‌ଙ୍କ ସାମ୍ପ୍ରତିକ ଅଭ୍ୟୁତ୍ଥାନରେ । ଔପନିବେଶିକ ପ୍ରଭୁ ଇଂଲଣ୍ଡ୍ ବିରୋଧରେ ମୁକ୍ତିସଂଗ୍ରାମ ପରିଚାଳନାକରି, ମାକାରିଅସ୍ ଶେଷକୁ ହୋଇଛନ୍ତି ରାଷ୍ଟ୍ରର ପ୍ରେସିଡେଣ୍ଟ୍ ! ସମ୍ରାଟ୍ କନଷ୍ଟାଣ୍ଟାଇନ୍‌ଙ୍କ ଦୂରଦୃଷ୍ଟିକୁ ତେଣୁ ତାରିଫକରିବାକୁ ପଡ଼ିବ । ଇଉରୋପ୍‌ରେ ସମ୍ଭବହୋଇନାହିଁ ଅନୁରୂପ ଅଭ୍ୟୁତ୍ଥାନ; ଚର୍ଚ୍ଚ ହୋଇଛି ଯଦିଓ ବୃହତ୍ ସାମନ୍ତତନ୍ତ୍ର । ଏପରିକି, ଓଡ଼ିଶା ଭଳି ପଶ୍ଚାତ୍‌ପଦ ଉପନିବେଶରେ ମଧ୍ୟ ବାଲେଶ୍ୱର-କଟକ-ପୁରୀ ପ୍ରଭୃତି ସହରରେ ଚର୍ଚ୍ଚର ଭୂସମ୍ପତ୍ତି ଯେକୌଣସି ଗଡ଼ଜାତ ରଜାର ଭୂସମ୍ପତ୍ତି ଅପେକ୍ଷା ଊଣାନୁହେଁ । କବରସ୍ଥାନ କିନ୍ତୁ କୃଷ୍ଣକାୟ ଖ୍ରୀଷ୍ଟାନ୍‌ପାଇଁ ସବୁବେଳେ ଅଲଗା; ଯେପରି, କଟକରେ ଗୋରାକବର । ମାତ୍ର ଜର୍ମନ୍ ରାଜତ୍ୱରେ ସାମ୍ରାଜ୍ୟ 'ପବିତ୍ର'(=ହୋଲି ରୋମାନ୍ ଏମ୍ପାୟାର୍) ହେବାପରେ, ଇଉରୋପର ଜାତିରାଷ୍ଟ୍ରଗୁଡ଼ିକ ଛିଡ଼ାହୋଇପଡ଼ିଛନ୍ତି ଚର୍ଚ୍ଚ ବିରୋଧରେ; ପାଡୁଆର ରାଜା ମାର୍ସିଲିଅସ୍ ଚତୁର୍ଦ୍ଦଶଶତକରେ ବାଧ୍ୟକରିଛନ୍ତି ଚର୍ଚ୍ଚକୁ ଧର୍ମବିଷୟରେ ନିଜକୁ ସୀମାବଦ୍ଧରଖିବାକୁ; ଏପରିକି, ଅଷ୍ଟମ ହେନ୍ରିଙ୍କ ରାଜତ୍ୱକାଳରେ ଇଂଲଣ୍ଡ୍ ପୋପ୍‌ଙ୍କୁ ସୁଦ୍ଧା ଅସ୍ୱୀକାରକରି ପ୍ରଚଳନକରିଛି ଅଲଗା ଗିର୍ଜା, ଆ୍ୟାଙ୍ଗ୍‌ଲିକାନ୍ ଚର୍ଚ୍ଚ । ଅବଶ୍ୟ ଷୋଡ଼ଶଶତକରେ । ରାଷ୍ଟ୍ରର ସାର୍ବଭୌମତ୍ୱ ଉପରେ ଚର୍ଚ୍ଚର ହସ୍ତକ୍ଷେପ ସଂପୂର୍ଣ୍ଣ ଅସ୍ୱୀକୃତହୋଇଛି ଷୋଡ଼ଶଶତକ ଆରମ୍ଭରୁ; ଇଉରୋପରେ କୋଉଠି ହେଲେ ମାକାରିଅସ୍ ବାହାରିନାହାନ୍ତି ଅଦ୍ୟାବଧି । ଅଷ୍ଟାଦଶଶତକରେ ଫରାସୀ ବିପ୍ଲବର ଅନ୍ୟତମ କାରଣ ଥିଲା ଚର୍ଚ୍ଚର ଏବଂବିଧ ବୃହତ୍ ସାମନ୍ତତନ୍ତ୍ର; ବିପ୍ଲବପରବର୍ତ୍ତୀ କାଳରେ ଚର୍ଚ୍ଚକୁ ତେଣୁ କାଙ୍ଗାଳ ହୋଇଯିବାକୁ ପଡ଼ିଛି । ସେଥିପାଇଁ, ଫ୍ରାନ୍ସ, ସ୍ପେନ୍, ଇଟାଲି, ପୋର୍ତ୍ତୁଗାଲ୍—କ୍ୟାଥଲିକ୍ ଦେଶ ହେବାସତ୍ତ୍ୱେ, ଚର୍ଚ୍ଚ ଆଉ ମୁଣ୍ଡଟେକି ପାରିନାହିଁ ରାଜନୀତିରେ ।

କିନ୍ତୁ ଯେକୌଣସି ସଂଗଠିତ ଧର୍ମସଂସ୍ଥା, ଯାର ପ୍ରଧାନ କର୍ତ୍ତବ୍ୟ ବିଧର୍ମୀକୁ ଧର୍ମାନ୍ତରିତକରିବା, ଆଉ ସେଇ ବାଟଦେଇ, ଦେଶ-ବିଦେଶରେ ଆଧିପତ୍ୟ ପ୍ରତିଷ୍ଠା, ବେଳକୁବେଳ ପ୍ରତିରୋଧ ସମ୍ମୁଖୀନହେବାକୁ ବାଧ୍ୟ । ସମ୍ରାଟ୍ କନ୍‌ଷ୍ଟାଣ୍ଟାଇନ୍ ବି ବୁଝିଥିଲେ ସେକଥା, ଏବଂ ବୁଝିଥିଲେ ବୋଲି, ଚର୍ଚ୍ଚକୁ ବ୍ୟବହାରକରିଛନ୍ତି କମାର ଯେମିତି ବ୍ୟବହାରକରେ ହାତୁଡ଼ି । ତାଙ୍କ ଧର୍ମନୀତିର ସ୍ଥପତି ଇଉସେବିୟୁସ୍ ଅବ୍ ସିଜାରିଆ (ମୃତ୍ୟୁ ୩୪୦ ଖ୍ରୀଷ୍ଟାବ୍ଦ) ଯୋଉ ଘୋଷଣାପତ୍ର ରଚନାକରିଥିଲେ, *ଏପାନଗଗ*, ତଦନୁସାରେ ଖ୍ରୀଷ୍ଟାନ୍‌ସାମ୍ରାଜ୍ୟ କେନ୍ଦ୍ରରେ ଦଣ୍ଡାୟମାନ ଖ୍ରୀଷ୍ଟାନ୍‌ସମ୍ରାଟ୍, କେହି ଧର୍ମଗୁରୁ ନୁହେଁ । ରୋମ୍‌ରୁ ସେନେଟ୍ ସମେତ ରାଜଧାନୀକୁ ବାଇଜାଣ୍ଟିୟମ୍‌କୁ ଉଠାଇଆଣି

କନ୍‌ଷ୍ଟାଣ୍ଟାଇନ୍ ସ୍ପଷ୍ଟ ବୁଝାଇଦେଇଛନ୍ତି, ଏଭଳି ଭୂଖଣ୍ଡରେ ରାଜତ୍ୱକରିବାକୁ ଚାହାଁନ୍ତି, ଯା ଆଦ୍ୟୋପାନ୍ତ ଖ୍ରୀଷ୍ଟାନ୍ ଆଉ ରୋମ୍‌ସ୍ଥିତ ଅ-ଖ୍ରୀଷ୍ଟାନ୍ ପରମ୍ପରାରୁ ବିଚ୍ଛିନ୍ନ । ଅର୍ଥାତ୍, ସମ୍ରାଟ୍ ସ୍ୱୟଂ ଖ୍ରୀଷ୍ଟାନ୍‌ପରମେଶ୍ୱରଙ୍କ ନିର୍ବାଚିତ ପ୍ରତିନିଧି; ସେ-ନିର୍ବାଚନରେ ଚର୍ଚ୍ଚର ଭୂମିକା ଅବାନ୍ତର; ଧରାପୃଷ୍ଠରେ ଦୈବମହିମା ଘୋଷଣାକରିବାକୁ ଈଶ୍ୱର ତାଙ୍କୁ ତ୍ରିବାର ଆଶୀର୍ବାଦକରି ପ୍ରେରିତକରିଛନ୍ତି ଆଉ ଦିବ୍ୟଅସ୍ତ୍ରରେ ମଧ୍ୟ ସଜ୍ଜିତକରିଛନ୍ତି ଯେପରିକି ଅବିଶ୍ୱାସୀ ନିର୍ଭୀକ ଉଚ୍ଚକଣ୍ଠ ଦାମ୍ଭିକ ମଣିଷଗୁଡ଼ାଙ୍କୁ, ଅସ୍ତ୍ରଦ୍ୱାରା ବକ୍ଷଭେଦ କଲାପରି, ଦୈବଦ୍ୟୁତିରେ ଅଙ୍ଗ ଭେଦକରି ଈଶ୍ୱରାଭିମୁଖୀ କରିଦେବେ; ସମ୍ଭାବ୍ୟ ଶତ୍ରୁ ବିରୋଧରେ ସିଏ ଦ୍ୱିତୀୟ ମୌଜେସ୍ । ଚର୍ଚ୍ଚ ସହିତ ସମ୍ପର୍କ ତେଣୁ ସଂପ୍ରୀତିର, ଚର୍ଚ୍ଚ ତ ସମ୍ରାଟ୍‌ଙ୍କ ପରିପୂରକ । ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ତେଣୁ ଚର୍ଚ୍ଚହାତରେ ବିଚାରକରି ଦଣ୍ଡଦେବା କ୍ଷମତା ଥିଲାନାହିଁ ଜମାରୁ; ମାତ୍ର ଅସହିଷ୍ଣୁତା ଥିଲା ଅପର୍ଯ୍ୟାପ୍ତ, କାହିଁକିନା, ଜୁଦାଇଜ୍ମ ଥିଲା ଜନ୍ମଶତ୍ରୁ; ଇହୁଦୀଙ୍କ ସାଙ୍ଗକୁ ଫେର୍ ଜୁଟିଲେ ଯାଇ ଦୁନିଆଯାକର ପୌତ୍ତଳିକ (=ପେଇଗାନ୍) ଆଉ ଇସ୍‌ଲାମ୍‌ର ଯୁଦ୍ଧଂଦେହି ଆହ୍ୱାନ । ପେଇଗାନିଜ୍ମ ବା ପୌତ୍ତଳିକତାକୁ ଧରାପୃଷ୍ଠରୁ ନିଶ୍ଚିହ୍ନକରିବା ଯେହେତୁ ଧର୍ମକୃତ୍ୟ, ପ୍ରତିମାପୂଜାର ଯେତେ ପବିତ୍ର ଅନୁଷ୍ଠାନ, ଦେବାଳୟ, ପରମ୍ପରା, ସର୍ବୋପରି ଜୀବନଚର୍ଯ୍ୟା, ସବୁଗୁଡ଼ାକ ଉପରେ ଚାଲିଲା ନିର୍ବିଶେଷ ବଳାତ୍କାର । ଗ୍ରୀକ୍ ଓ ରୋମ୍‌ସଭ୍ୟତାର ବିଗ୍ରହଗୁଡ଼ିକୁ ଧୂଳିସାତ୍ କରିବାପରେ ଆସିଚି ଦକ୍ଷିଣ-ଆମେରିକାର ଆଜ୍‌ଟେକ୍, ହିନ୍ଦୁ ଭାରତର ଗୋଆ; ରାଜନୀତିକ କ୍ଷମତା ଥିଲା ଯୋଉଠି ଖ୍ରୀଷ୍ଟାନ୍ ବିଜେତାଙ୍କ କରଗତ । ଚୀନ୍ ଓ ଜାପାନ୍ ସେଥିପାଇଁ ରହିଯାଇଚନ୍ତି ଅକ୍ଷତ । ପୋର୍ତ୍ତୁଗୀଜ୍ ଦସ୍ୟୁଙ୍କ ଧ୍ୱଂସଲୀଳାର ଅବଶେଷ ଏବେ ବି ବିଧୃତରହିଛି ବମ୍ବେଉପକଣ୍ଠର ଏଲିଫାଣ୍ଟା ଗିରିଗୁହାରେ ।

ଖ୍ରୀ.୪୧୦ରେ କିନ୍ତୁ ରୋମାନ୍ ସାମ୍ରାଜ୍ୟର ଯେତେ ପୌତ୍ତଳିକ ସଂପ୍ରଦାୟ, (ଚର୍ଚ୍ଚ ତାଙ୍କୁ ବାଗମନାଇ ପାରିନାହିଁ, କାହିଁକିନା, ଅଧିକାଂଶ ସାମରିକ/ ପ୍ରଶାସନିକ କର୍ମଚାରୀ ଥିଲେ ପେଇଗାନ୍) ଆକ୍ରମଣକରି ଦଖଲ କରିନେଇଛନ୍ତି ରୋମ୍ । ରୋମ୍‌ର ଆବହମାନ ଐତିହ୍ୟ, ଜାତିଗତ ଅସ୍ମିତା ଓ ପୁରାକୀର୍ତ୍ତିକୁ ଚର୍ଚ୍ଚ ଯେହେତୁ ନଷ୍ଟକରିଦେଇଚି କ୍ରମାଗତ, ବିଗ୍ରହପୂଜକ ବିଦ୍ରୋହକରିଚନ୍ତି ସଶସ୍ତ୍ର । ସେମାନଙ୍କୁ ପ୍ରଶମିତ କରିଚି ଅଗଷ୍ଟାଇନ୍‌ଙ୍କ *ସିଟି ଅବ୍ ଗଡ୍*, କହିଚନ୍ତି, ବାଇଜାଣ୍ଟିଅମ୍ ନୁହେଁ, ଈଶ୍ୱରଙ୍କ ଆପଣା ଆବାସହିଁ ରୋମ୍, ଯାର ପ୍ରକୃତ ଧର୍ମ 'କ୍ୟାଥଲିକ୍' । ଏବଂ ଏଇ କ୍ୟାଥଲିକ୍ ଧାରା ସ୍ୱୟଂ ଯୀଶୁଙ୍କ ଦ୍ୱାରା ପ୍ରବର୍ତ୍ତିତ; ଯୋଉ ଯୀଶୁ ଧରାପୃଷ୍ଠରେ ଅବତୀର୍ଣ୍ଣହୋଇଥିଲେ ଇତିହାସର ଅମୋଘ ଗତିରେ, ମାଟିର ଧରିତ୍ରୀ ଉପରେ ସ୍ୱର୍ଗର ଗରିମା ପ୍ରକଟକରିବା ସକାଶେ । କ୍ୟାଥଲିକ୍ ଚର୍ଚ୍ଚ ତେଣୁ ନିଜକୁ ପ୍ରତିଭାତକଲା ଅବଲୁପ୍ତ ରୋମାନ୍ ସାମ୍ରାଜ୍ୟର

ଉତ୍ତରାଧିକାରୀ, କାହିଁକିନା, ଜର୍ମାନ୍ ଆକ୍ରମଣ ରୋମାନ୍‌ରାଷ୍ଟ୍ରବ୍ୟବସ୍ଥାକୁ ଧରାଶାୟୀକରି ସୃଷ୍ଟିକରିଚ଼ି ସେତେବେଳକୁ ରାଜନୀତିକ ଶୂନ୍ୟତା । ଶୂନ୍ୟପରିସର କ୍ୟାଥଲିକ୍ ଚର୍ଚ୍ଚପାଇଁ ହୋଇଛି ଶୂନ୍ୟସିଂହାସନ; ଅଦୃଶ୍ୟ ସମ୍ରାଟ୍‌ଙ୍କ ଜାଗା ଦଖଲକରିଛନ୍ତି ଦୃଶ୍ୟମାନ ପୋପ୍ (=ପିତା) । ଯୋଉ ଭାବାଦର୍ଶର ଭିତ୍ତିପତନକଲେ ଅଗସ୍ଟାଇନ୍, ତା ଉପରେ ନିର୍ମିତହେଲା ଭ୍ୟାଟିକାନ୍ ରାଜପ୍ରାସାଦ, ଅବଶ୍ୟ ଏକ ଜାଲ୍ ଦଲିଲ୍‌କୁ ସାକ୍ଷୀକରି । ଜାଲ୍ ଦଲିଲ୍‌ରେ ଲେଖାଥିଲା, ସମ୍ରାଟ୍ କନ୍‌ଷ୍ଟାଣ୍ଟାଇନ୍ ପାଶ୍ଚାତ୍ୟ ଜଗତର ଅଧିକାଂଶ ଭୂମ୍ୟଧିକାର କୁଆଡ଼େ ଚର୍ଚ୍ଚକୁ ଦାନକରିଦେଇ ଯାଇଛନ୍ତି ! ଏ ଦଲିଲ୍‌ରେ ପୁଣି ଥିଲା, କନ୍‌ସ୍ଟାଣ୍ଟାଇନ୍ କୁଆଡ଼େ ସାମ୍ରାଜ୍ୟର କେନ୍ଦ୍ର ତୁରସ୍କକୁ ଉଠାଇନେଇଥିଲେ ରୋମ୍‌ର ବିସପ୍‌ଙ୍କ କର୍ତ୍ତୃତ୍ୱ, ପ୍ରଜାଙ୍କ ଉପରେ ହୋଇପାରିବ ବୋଲି ନିରଙ୍କୁଶ; ଏବଂ ରୋମ୍‌ରେ ସମ୍ରାଟ୍‌ଙ୍କ ସାକ୍ଷାତ୍ ଉପସ୍ଥିତି ହେବନାହିଁ ବୋଲି ପୋପ୍‌ଙ୍କ ସଙ୍କୋଚ଼ର କାରଣ । ଏଇ ତତ୍ତ୍ୱ ବଳରେ ବାଇଜାଣ୍ଟିଅମ୍ ସମ୍ପର୍କିତ ମିଥ୍ (=ନିଉ ରୋମ୍), ପୁନର୍ଗଠିତହୋଇ ସୃଷ୍ଟିକରିଛି ନବତର ମିଥ୍ : ଖ୍ରୀଷ୍ଟାନ୍ ରୋମ୍, ଖ୍ରୀଷ୍ଟାନ୍ ବିସପ୍, ଖ୍ରୀଷ୍ଟାନ୍‌ଜଗତର ପିତା ପୋପ୍; ପ୍ରତାରଣାପୂର୍ଣ୍ଣ ଏକ ଦସ୍ତାବେଜ୍ ବଳରେ଼ ଯିଏ କରଗତ କରିଛନ୍ତି ରୋମାନ୍ ସମ୍ରାଟ୍‌ଙ୍କ ପାର୍ଥିବ-ଅପାର୍ଥିବ ସମସ୍ତ ଅଧିକାର । (ଦ୍ର. *ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା, ମ୍ୟାକ୍ରୋପିଡିଆ,* ଭଲ୍ୟୁମ୍ ୪, ପୃ.୫୧୨) ।



## ।। ଛଅ ।।

*ବାଇବେଲ୍* ଯୀଶୁଙ୍କୁ କରିଥିଲା ଲଗସ୍ (=ଆଦିଶବ୍ଦ/ନାଦବ୍ରହ୍ମ); ଚାକ୍ଷୁଷ ନ ହେଲେ ବି ଅନୁଭୂତ ଆଧ୍ୟାତ୍ମିକ ସତ୍ତା; ସେତିକିରେ ତୃପ୍ତ ନ ହୋଇ ଗସ୍‌ପେଲ୍ ଶବ୍ଦକୁ ଦେଇଦେଲା ରକ୍ତମାଂସ ଶରୀର, the Word became flesh, ସତେଅବା ଯୀଶୁ ଏକ ମୁଦ୍ରିତ ପୁସ୍ତକ, ସମକାଳର ପରିଭାଷାରେ 'ଟେକ୍‌ସ୍ଟ' । ପାଠବସ୍ତୁର ମର୍ମାର୍ଥ ତେଣୁ ପାଠବସ୍ତୁରେ ସୀମାବଦ୍ଧ ରହିବନାହିଁ ଆଉ । ମର୍ମାର୍ଥ ଓ ମୂଲ୍ୟ ନିର୍ଭରକରିବ, କିଏ ପଢୁଛି, ତାହାରି ଉପରେ; ପୁଣି ଏକାପାଠକ ମନରେ ମଧ୍ୟ ବେଳକୁବେଳ ମର୍ମାର୍ଥ ଯାଇପାରେ ବଦଳି; ଏପରିକି, ଉପଲବ୍ଧ ହୋଇପାରେ ନିରର୍ଥକତା, ଛଳନା କି ବାଗାଡ଼ମ୍ବର, ଏବଂ ସବୁଯାକ ପ୍ରତିକ୍ରିୟା ଯେହେତୁ ପାଠବସ୍ତୁର ହିଁ ଅବଦାନ, ଟେକ୍ସଟ୍‌ରୁ ହିଁ ଉତ୍ସାରିତ, ଅଳୀକ ବା ଅବାନ୍ତର କହି ଉଡ଼ାଇଦେଇ ହେବନାହିଁ ଜମାରୁ । ସ୍ୱୟଂ ଯୀଶୁ *ଓଲ୍ଡ ଟେଷ୍ଟାମେଣ୍ଟ* ପଢ଼ି ତନ୍ମୟହୋଇଛନ୍ତି ହୁଏତ; ମୋଭଳି ଜଡ଼ବୁଦ୍ଧିକୁ ଲାଗୁଛି କିନ୍ତୁ ପ୍ରଳାପତୁଲ୍ୟ । ଉଦ୍ଦେଶ୍ୟ ଆରୋପକରିବା ତଥାପି ଯୁକ୍ତିଯୁକ୍ତ ହେବନାହିଁ, କାହିଁକିନା, ଧାର୍ମିକ କି ଖ୍ରୀଷ୍ଟାନ୍‌କୁ ହୁଏତ ମନେହେବ ଅକାଟ୍ୟ ସତ୍ୟ । ଉଭୟ ପ୍ରତିକ୍ରିୟା, ଯଥାର୍ଥ ପରିପ୍ରେକ୍ଷିତରେ, ସମାନଭାବେ ବୈଧ । କଳହର ତେଣୁ ଅବକାଶନାହିଁ, କାହିଁକି ନା, ପାର୍ଥକ୍ୟର କାରଣ ଯୀଶୁ ନୁହନ୍ତି, ମଣିଷର ବୀଶ୍ୱବୀକ୍ଷା ବା ଜୀବନଦର୍ଶନ, ଯା ଏକ ଅର୍ଜିତ ସମ୍ପଦ । ସେମିତି ଜଣେ ଲୋକ ପିଏର୍ ପାଉଲୋ ପାସୋଲିନି (୧୯୨୨-୭୫), ଜଗଦ୍‌ବିଖ୍ୟାତ ଫିଲ୍ମ-ପରିଚାଳକ । ଚଉଷଠିସାଲରେ ଯୋଉ ଛବି ନିର୍ମାଣକରନ୍ତି, ଇଟାଲିଆନ୍‌ରେ ତା ନାଁ *ଇଲ୍ ଭାଞ୍ଜେଲୋ ସେକଣ୍ଡୋ ମାଟିଓ* (=ଦ ଗସ୍‌ପେଲ୍ ଆକର୍ଡିଙ୍ଗ୍ ଟୁ ସେଣ୍ଟ୍ ମାଥ୍ୟୁ) । ସିନେମାରୁ ଉଦାହରଣ ଦେଉଛି, କାହିଁକିନା, ତା ସର୍ବାଧିକ ଲୋକପ୍ରିୟ ଶିଳ୍ପମାଧ୍ୟମ, ଆଉ ରସାସ୍ୱାଦନ ସକାଶେ ଆନୁଷ୍ଠାନିକ ଶିକ୍ଷାଦୀକ୍ଷା ଜମାରୁ ପୂର୍ବସର୍ତ୍ତ ନୁହେଁ । ଆଉ ଜଣେ, ଲୁଇ ବୁଉନ୍‌ଓୟେଲ୍ (୧୯୦୦-୮୩); ସ୍ପ୍ୟାନିସ୍ ଚିତ୍ରପରିଚାଳକ । ୧୯୫୮ରେ ତିଆରି ତାଙ୍କ ଛବି ନାଁ *ନ୍ୟାଜାରିନ୍* । 'ନ୍ୟାଜାରିନ୍' ନାମବାଚକ ବିଶେଷ୍ୟ; ଆକ୍ଷରିକ ଅର୍ଥ : ନ୍ୟାଜାରେଥର ଲୋକ; ହୋଇପାରନ୍ତି ସ୍ୱୟଂ ଯୀଶୁ । ଉଭୟ ପରିଚାଳକ ଚାହିଁଛନ୍ତି ନିଜ ମାଧ୍ୟମର ସୀମାବଦ୍ଧତାକୁ ଅତିକ୍ରମକରିଯାଇ ଏପରି ଏକ ସୌନ୍ଦର୍ଯ୍ୟରେ ଉପଗତହେବେ ଯା ବସ୍ତୁତଃ ମାନବ-ସତ୍ତାର ସୀମାବଦ୍ଧତା ବିରୋଧରେ ବିଦ୍ରୋହ ।

ଗସ୍‌ପେଲ୍ ଲେଖିଛନ୍ତି ଅନ୍ତତଃ ଚାରିଜଣ; ତାଙ୍କ ଭିତରୁ ଏକମାତ୍ର ମାର୍କ ଦେଖିଥିଲେ ଦେଖିଥିବେ ଯୀଶୁଙ୍କୁ; ବାକି ତିନିଜଣ ଶୁଣାକଥା ସାଙ୍ଗରେ ମନର ମାଧୁରୀ ମିଶାଇ ରଚନାକରିଛନ୍ତି ଯୀଶୁଚରିତ; ତା'ହେଲେ, ପାସୋଲିନି ବାଛିଲେ କାହିଁକି ଖାଲି ସନ୍ଥ ମାଥ୍ୟୁଙ୍କୁ ? କାହିଁକିନା, ଏକମାତ୍ର ମାଥ୍ୟୁ ଲେଖିଛନ୍ତି (୨୮.୧୯-୨୦) ବନ୍ଦୀହୋଇ ଚାଲିଯିବା ଅବ୍ୟବହିତରେ, ଶିଷ୍ୟବର୍ଗଙ୍କୁ ଯୀଶୁ କୁଆଡ଼େ କହିଥିଲେ :

*Go therefore and make disciples of all nations, baptizing them in the name of the Father and of the Son and of the Holy Spirit, teaching them to observe all that I have commanded you. ପୁଣି, Lo, I am with you always, to the close of the age .*

ଅର୍ଥାତ୍ , ଧରିତ୍ରୀ ରହିଛି ଯେତେଦିନ, ଯୀଶୁ ବି ଅଛନ୍ତି ସେତେଦିନ, ବଞ୍ଚିତକୁ ବଞ୍ଚନାରୁ ମୁକ୍ତକରିବା ଯେହେତୁ ତାଙ୍କ ଜୀବନବ୍ରତ । ଷାଠିଏଦଶକର ଇଟାଲୀ ଗୃହହୀନତା, କର୍ମହୀନତା, ଦାରିଦ୍ର୍ୟ ଓ ତଜ୍ଜନିତ ସାମାଜିକ ବିଶୃଙ୍ଖଳା ଭିତରେ ଜୀବନରେ ଯା ସୁନ୍ଦର ସୁସ୍ଥ ଓ ସ୍ନିଗ୍ଧ, ସବୁଗୁଡ଼ାକ ହରାଇବାକୁ ବସିଛି; ଯା ଡି'ସିକା *ବାଇସାଇକ୍ଲ ଥିଫ୍* ଛବିରେ ଆଗରୁ ଦେଖାଇଛନ୍ତି : ବହୁଦିନ ବେକାରରହିବା ଉତ୍ତାରୁ କେହିଜଣେ ଯୁବକ ସହରରେ ସାମାନ୍ୟ କାମ ପାଇଛି; ଘରେ ଅଛନ୍ତି ସ୍ତ୍ରୀ ଓ ପୁଅ; କାମଜାଗାକୁ ଯିବାକୁ ବହୁକଷ୍ଟରେ ଖଣ୍ଡିଏ ସାଇକେଲ୍ ଯୋଗାଡ଼କରିଛି, କିନ୍ତୁ ପ୍ରଥମଦିନରେ ହିଁ ସାଇକେଲ୍ ନେଇଯାଇଛି ଚୋର; ପ୍ରଗାଢ଼ ବିଷାଦରେ ସିଏ ତେଣୁ ବାହାରିପଡ଼ିଛି ରାତିରେ ଚୋରଖୋଜିବାକୁ ଏବଂ ସହର ଉପକଣ୍ଠରେ ହାବୁଡ଼ିଛି ଯୋଉ ଅପରାଧଜଗତ, ତା ବାସିନ୍ଦାଗୁଡ଼ାକ ମଧ୍ୟ ତାହାରି ଭଳି ନିଉଛଣା ନିଃସ୍ୱ ଓ ପ୍ରବଞ୍ଚିତ । ତେଣୁ ସିଏ ମଧ୍ୟ ଚେଷ୍ଟାକରିଚି ଚୋରିକରିବାକୁ, ମାତ୍ର ଧରାପଡ଼ିଯାଇଚି । ନିଷ୍ଫଳ ବ୍ୟକ୍ତିଗତ ପ୍ରଚେଷ୍ଟାର ସମୁଚିତ ପରିଣତି ତାର ସମସ୍ତ ଅସହାୟତାକୁ ସାଙ୍ଗରେ ନେଇ ଡି'ସିକାଙ୍କ ହାତରେ ପରିଗ୍ରହକରିଚି କ୍ରନ୍ଦନମୟତା ଯେତେବେଳେ ଗୀର୍ଜାରେ ଘଣ୍ଟାବାଜୁଚି ଅନୁକ୍ଷଣ । ରିକ୍ତହସ୍ତ ଲୋକଟି ଏକ୍ଷଣି ସିନେମାର ପୋଷ୍ଟର୍ ଲଗାଏ ସହରର କାନ୍ଥବାଡ଼ରେ । ଡି'ସିକା ତା ହାତରେ ଦେଇଚନ୍ତି ରିଟା ହେଓଆର୍ଥଙ୍କ ପୀନୋଦ୍ଧତ ଆବକ୍ଷ ଛବି, ସାଇକେଲ ହଜାଇଥିବା ନିମ୍ନବିତ୍ତ ଲୋକଟିର ଜୀବନ ସହିତ ଏପରି ଏକ ବିରୋଧାଭାସ ଯା ଉଦ୍ରେକକରିବ ଘୃଣା । ଅନ୍ୟ ଲୋକର ସାଇକେଲ ଚୋରିକରିବାକୁ ଯାଇ ବେଦମ୍ ମାଡ଼ଖାଇଚି ଲୋକଟି । ଛାଡ଼ପାଇ ବାପ-ପୁଅ କ୍ଲାନ୍ତ ପଦକ୍ଷେପରେ ଚାଲିଚନ୍ତି ଆଗକୁ, ମହାନଗରୀର ଜୀବନ ବି ଚାଲିଚି ନିର୍ବିକାର ଉଦାସୀନତା ବହନକରି । ପଛରୁ ଭାସିଆସୁଚି ବିଦ୍ରୂପ । ମାଡ଼ଖାଇ ଫୁଲିଯାଇଥିବା ଦୁଇ ଆଖିରେ ଲୋକଟି ପୁଅଆଡ଼କୁ ଥରେ ଅନିଷା କଲା; ପିଲାଟା ଲୁହଭରା ଆଖିରେ ସାନ୍ତ୍ୱନାଦେବାକୁ ଚେଷ୍ଟାକରିଚି । ବାପ ତା ହାତ ଚିପିଦେଇ

ଆଶ୍ୱସ୍ତକରିବା ବେଳକୁ ନିଜ ଚିବୁକ ଥରିଯାଇଚି ଦି'ଥର । ତା'ପରେ ଏକେଲା ଜୀବନଯୁଦ୍ଧର ଧିକ୍କାର ଅକ୍ଷମ କ୍ଷୋଭହୋଇ ବାହାରିଆସିଚି ଆର୍ତ୍ତ ବିକଳ ଅଶ୍ରୁଧାରାରେ । ସନ୍ଧ୍ୟା ନଇଁଆସୁଚି, ଗୋଡ଼ କିନ୍ତୁ ଅଟକୁନାହିଁ । ଯାଇ ପହଞ୍ଚିଚନ୍ତି ଥାନାର ଦାରୋଗା ପାଖରେ । କହିଚି, ଏତେଟଙ୍କା ଖର୍ଚ୍ଚକରି ପୁଲିସ୍ ପୋଷାଯାଉଚି ସାଇକେଲ ଖୋଜିବାପାଇଁ ନୁହେଁ, ନିଜେ ଖୋଜିନେବାକୁ ପଡ଼ିବ । ପରମୁହୂର୍ତ୍ତରେ କହିଚି, ଟ୍ରକ୍‌ବୋଝେଇ ପୁଲିସ୍ ଏକ୍ଷଣି ପଠେଇବାକୁ ହେବ, ଶ୍ରମିକଙ୍କର ଗୋଟାଏ ପଟୁଆର ବାହାରିଚି । ଡି'ସିକାଙ୍କ ବୈଶିଷ୍ଟ୍ୟ ଅପରିସୀମ ସଂଯମ । ବିନା ମନ୍ତବ୍ୟରେ ଶେଷକରିଚନ୍ତି ବକ୍ତବ୍ୟ । ଯା'କୁ ଯଦି 'ହ୍ୟୁମାନ୍ କଣ୍ଡିସନ୍' କୁହାଯାଏ, ଯୀଶୁ (ମାନେ, ଚର୍ଚ୍ଚ ଯେମିତି ନିର୍ମାଣକରିଚି)ଙ୍କ ଭୂମିକା ସେଠି କି ରକମ ? ଆଉଜଣେ ପରିଚାଳକ ଫ୍ରେଦେରିକୋ ଫେଲିନି (୧୯୨୦-୧୯୯୩) *ଲା ଦୋଲ୍‌ଚେ ଭିଟା* ଛବିରେ ତାର ଉତ୍ତର ଦେଇଚନ୍ତି ଅର୍ବାଚୀନ ଏଇ ଜଗତ୍ ସହିତ ବ୍ରହ୍ମାଣ୍ଡଭାବନାକୁ ଘାଣ୍ଟିପକାଇ; ଯୋଉଠି ଖ୍ରୀଷ୍ଟାନ୍ ଯାଜକ ଧର୍ମର ସଂଜ୍ଞା ନିରୂପଣକରନ୍ତି, 'ଈଶ୍ୱରଙ୍କ ନୀରବତା ମଣିଷ ଉପରେ ଝରିପଡ଼େ' । ଅର୍ଥାତ୍, ପ୍ରତିବେଶୀକୁ ଭଲପାଇବା ଭଳି ଶୁଖିଲା କଥା ଚର୍ଚ୍ଚ ଅହୋରାତ୍ର ପୁନରାବୃତ୍ତି କରୁଥିଲେ ସୁଦ୍ଧା, ସ୍ୱାର୍ଥପର ଶୋଷଣପ୍ରବଣ ପ୍ରେମହୀନ ଏଇ ଜୀବନ ଉପରେ ଯା ଝରିପଡ଼େ, ତା ଅପାର୍ଥିବ ବିଷଲ୍ୟକରଣୀ ନୁହେଁ, ନିର୍ବିକାର ନୀରବତା । ଦୁର୍ଗତିର ପ୍ରତିଷେଧକ ରୂପରେ ତେଣୁ ଯୀଶୁଙ୍କୁ ଛିଡ଼ାକରି ଦେଇଛନ୍ତି ପାସୋଲିନି; ଯା ଏକ କ୍ୟାରିକେଚର୍, କାହିଁକିନା, ଯୋଉ ଜଗତରେ ଦରିଦ୍ର ମଧ ଦରିଦ୍ରକୁ କୃପାକରେନା, କରିପାରେନା, ଯୀଶୁ ସେଠି ବକ୍ତୃତାସର୍ବସ୍ୱ ପ୍ରତାରକ ମାତ୍ର । ଜଗତଉଦ୍ଧାର ତେଣୁ ଚୁଲିକୁ ଯାଉ ! ଏ ଚିତ୍ରଣ ବଡ଼ କୋଉ କୃତିତ୍ୱ ନୁହେଁ; ମାତ୍ର ପାସୋଲିନି ଯୀଶୁଙ୍କୁ ରୂପାନ୍ତରିତ କରିଛନ୍ତି ଆଧୁନିକ ସନ୍ତ୍ରାସବାଦୀ ବିପ୍ଳବୀର ଭୂମିକାକୁ, ଯିଏ ଗ୍ୟାରିବାଲ୍‌ଡି ଭଳି ଜାତୀୟତାବାଦୀ, ପୁଣି ଲେନିନ୍‌ଙ୍କ ଭଳି ଆନ୍ତର୍ଜାତିକ । ମାଥ୍ୟୁଙ୍କ ଗସ୍‌ପେଲ୍‌କୁ ସମକାଳୀନ ମାତ୍ରା ଓ ରାଜନୀତିକ ଆଭିମୁଖ୍ୟ ପ୍ରଦାନକରି ପାସୋଲିନି ଚର୍ଚ୍ଚକୁ କ୍ରୁଦ୍ଧକରିଛନ୍ତି ହୁଏତ, ମାତ୍ର ଧର୍ମଭୀରୁ ଜନସାଧାରଣ ଖୋଜିପାଇଛନ୍ତି ଯୀଶୁ ନାମଧେୟ ଇତିହାସ-ପୁରୁଷର ଜୀବନଯାପନ ପ୍ରତି ପ୍ରତ୍ୟକ୍ଷ ପ୍ରାସଙ୍ଗିକତା ।

*ନାଜାରିନ୍‌ର* ନାଜାରିନ୍ କିନ୍ତୁ କଳ୍ପନାପ୍ରବଣ ଜଣେ ଖ୍ରୀଷ୍ଟାନ୍ ଧର୍ମଯାଜକ । ଯୀଶୁଚରିତକୁ ନିଜେ ଯେମିତି ବୁଝିଛି, ସେଇଭଳି ବୁଝାଇବା ତା ପକ୍ଷରେ ସ୍ୱାଭାବିକ; ମାତ୍ର ପରିଣାମରେ , ମୁକାବିଲା କରିବାକୁ ପଡ଼ିଛି ଖାଲି ଚର୍ଚ୍ଚକୁ ନୁହେଁ , ସମାଜ ଓ ପୁଲିସ୍‌କୁ ମଧ । ସ୍ପ୍ୟାନିସ୍ ସାହିତ୍ୟରେ ପାଗଳ ଚରିତ୍ରର ଐତିହ୍ୟ ସୁବିଦିତ; ପାଗଳାମିର ପ୍ରଧାନ ଉପସର୍ଗ : ଗସ୍‌ପେଲ୍‌କୁ ଦୈବବାଣୀ ବୋଲି ଅଟଳ ବିଶ୍ୱାସ, ଆଉ ଅକ୍ଷରେ ଅକ୍ଷରେ ତଦନୁସାରେ ଜୀବନଯାପନ । ତମାମ ଦୁନିଆପାଇଁ ଯା ବାସ୍ତବ (ରିଅାଲିଟି), ଏ ଲୋକଟିର ଦୃଷ୍ଟିରେ 'ସତ୍ୟ' ଛଳରେ ତା ନିଷ୍ଠୁର ଉପହାସ । ଅବଲୋକନର ଏଇ ବିକୃତି କରିଛି ତାକୁ ପାଗଳ । ଚଷାଝିଅକୁ ଦେଖି ଦନ୍ କିହୋତେ ଭାବିଛି

ରାଜକୁମାରୀ ଦୁଲ୍‌ସିଆ; ନାଜାରିନ୍ ସେମିତି ବ୍ୟଭିଚାରିଣୀ ଆନ୍ଦ୍ରା ଆଉ କୁବ୍ଜସ୍କନ୍ଧ ଉଜୋକୁ ଦେଖି ଭାବିଛି ନିରୁପାୟ ସ୍ୱର୍ଗଭ୍ରଷ୍ଟ ଆତ୍ମା; ହିଷ୍ଟିରିଆରୋଗୀ ବିଏଟ୍ରିଜ୍ ଲାଗିଛି ସତେକି ଦିବ୍ୟପ୍ରେମର ନୃଶଂସ ବିକାର! ବୁଉନ୍‌ୱେଲ୍ ନିଜ ଛବିରେ ଏଥର ଯା ଦେଖାଇବେ, ତା ପାଗଲାମିର ଆରୋଗ୍ୟ-ପ୍ରକ୍ରିୟା, ଅର୍ଥାତ୍ ସାଂଘାତିକ ଯନ୍ତ୍ରଣା। ବାଟରେ ଦେଖାହେଲେ ଲୋକ ମୁହଁବୁଲେଇ ଚାଲିଯିବେ; ଧନୀ-ମାନୀ ଛିଛାକରକରି ତଡ଼ିଦେବେ; ସମାଜରେ ଶୃଙ୍ଖଳା ରକ୍ଷାକରିବା ଯାହାଙ୍କ କର୍ତ୍ତବ୍ୟ, ସେ ଭାବିବେ ଲୋକଟା ବିପଜ୍ଜନକ; ଆଉ ବଞ୍ଚିତ-ଲାଞ୍ଛିତ ଯେତେଲୋକ, କେହି ପାଖ ପୂରାଇବେନାହିଁ, କାହିଁକିନା, ତାଙ୍କୁ ଦରକାର ଆଖିପିଛୁଳାକେ ଉପଶମ, ଯା ନାଜାରିନ୍ ଦେଇପାରେନା। ଦୂର୍‌ଦୂର୍-ମାର୍‌ମାର୍ କରନ୍ତିନାହିଁ ଖାଲି କ୍ଷମତାବାନ୍ କି ବଳଶାଳୀ, ତାଙ୍କ ସାମାଜିକ୍ ସମାନ୍ତରାଳ ବି ଓରଉଣ୍ଡି ଅପଦସ୍ଥକରିବାକୁ ଛାଡ଼ନ୍ତିନାହିଁ। ଯଦି ଭିକ୍ଷା ଚାହେଁ, ଭାବିବେ ନିକମା। ଯଦି କାମ ଚାହେଁ, ବେତନଭୋଗୀଙ୍କ ସ୍ୱାର୍ଥରେ ପଡ଼େ ଆଞ୍ଚ। ଏପରିକି, ଯୋଉ କେତେଜଣ ତିର୍ଲା, ମେରି ମ୍ୟାଗ୍‌ଡେଲେନ୍ ଭଳି, ପଛରେ ପିଡ଼ିଥିଲେ ଜୋକ ଭଳି, ଶେଷକୁ ଦେଖାଇଚନ୍ତି ଏମିତି ଭାବ ସତେ ଯେମିତି ନାଜାରିନ୍ ଅନ୍ୟ ଗ୍ରହରୁ ଆସିଚି। ଏଇଭଳି, ପତିତୋଦ୍ଧାର ପୁଣ୍ୟକର୍ମ ନାଜାରିନ୍‌କୁ ନିକ୍ଷିପ୍ତକରିଛି କାରାଗହ୍ୱରରେ ଶେଷକୁ ଏବଂ ସେଇଠି ଘଟିଛି ତାର ବିଶ୍ୱରୂପ ଦର୍ଶନ। ସହବାସୀ ଜଣେ ବନ୍ଦୀ ନରହନ୍ତା, ଜଣେ ଗିର୍ଜାରେ ପଶି ଚୋରିକରିଛି; ସଜାପାଇଚି ପାପକରିଚି ବୋଲି। ନାଜାରିନ୍‌ର ହୋଇଛି ଯୋଉ 'ରେଭିଲେଇସନ୍', ଦୈବରହସ୍ୟ ଉଦ୍‌ଘାଟିତ ହୋଇଛି ଚିତ୍ତଲୋକରେ, ତା କେବଳ ଏତିକି : ଯେ, ଦକ୍ଷ ଧର୍ମଯାଜକ ହୋଇପାରିନାହିଁ ବୋଲି ମଣିଷର ମଙ୍ଗଳକରି ସୁଦ୍ଧା ସିଏ ଦଣ୍ଡଭୋଗ କରୁଚି; ସହବାସୀ (=ପ୍ରତିବେଶୀ) ଦକ୍ଷତା ସହିତ ନରହତ୍ୟା ବା ଧର୍ମସ୍ୱ ଅପହରଣ କରିପାରିନାହାନ୍ତି ବୋଲି ଭୋଗୁଛନ୍ତି କାରାକଷଣ। ଦକ୍ଷ ହୋଇଥିଲେ ଧରାପଡ଼ି ନଥାନ୍ତେ। ଦକ୍ଷ ହୋଇଥିଲେ ସିଏ ମଧ୍ୟ ଆସି ନଥାନ୍ତା ବନ୍ଦିଶାଳାକୁ। ତେଣୁ ପାପ-ପୁଣ୍ୟ ମଙ୍ଗଳ-ଅମଙ୍ଗଳ ଭେଦାଭେଦଗୁଡ଼ାକ ଅବାନ୍ତର ଏଇ ଜଗତରେ, ଯୋଉଠି ଏଫିସିଏନ୍ସି ହିଁ ସର୍ବଶ୍ରେଷ୍ଠ ମୂଲ୍ୟମାନ। ଅର୍ଥାତ୍, ଧର୍ମଯାଜକର ଭ୍ରାନ୍ତିନିରସନ୍ ସାଙ୍ଗକୁ ନାଜାରିନ୍‌ର ମୋହମୁକ୍ତି। ଦନ୍ କିହୋତେକୁ ଯା ମୋହଗ୍ରସ୍ତ କରିଥିଲା, ତା ଦୁର୍ବଳକୁ ରକ୍ଷାକରିବାର ବୀରବ୍ରତ ଓ ରମଣୀସେବା; ନାଜାରିନ୍‌ର ମୋହର କାରଣ ଖ୍ରୀଷ୍ଟଧର୍ମ। ଉଭୟ ପାଗଳାମି, 'ରିଆଲିଟି' ଅଭିଘାତରେ ଖସିପଡ଼ୁଛି; ମାତ୍ର ନାଜାରିନ୍ ଚିତ୍ତାକାଶରୁ ଫିକାହୋଇ ଯୀଶୁ ଲିଭିଯିବା ସଙ୍ଗେସଙ୍ଗେ ଆବିର୍ଭୂତ ହୋଇଛି 'ମାନବ'। ସିନେମାରେ ଏ ଦୃଶ୍ୟାନ୍ତର ଭାରି ମନୋରମ, ପଛକୁ ପଛ ଆସିବେ ଅନେକ ପ୍ରତିମା : ଦିବ୍ୟଲୋକର ଭ୍ରାନ୍ତି ଅପସୃତ ହେବାମାତ୍ରକେ,ଫୁଟିଉଠିବ ମଣିଷର ବାସ୍ତବ; ଭ୍ରାନ୍ତି ଓ ଆବିଷ୍କାରର ପୌନଃପୁନିକତା; ଦ୍ୱିମୁଖୀ ଗତିଶୀଳତା, ଆଧିଭୌତିକତା ଯୋଉଠି କ୍ଷଣକୁକ୍ଷଣ ବାଟଛାଡ଼ିଦେବ ବିସ୍ମୟକର ଭୂତସତ୍ତାକୁ, ଅବିଶ୍ୱାସ୍ୟ ନିଜ ନିହିତ ସ୍ୱଭାବ ଓ ଶକ୍ତିପୁଞ୍ଜକୁ ମଣିଷ କରୁଥିବ କ୍ଷଣକୁକ୍ଷଣ

ଆବିଷ୍କାର । ଯୋଉ ଦୁଇଟି ଦୃଶ୍ୟପଟ ଅବିସ୍ମରଣୀୟ ହୋଇ ରହିଯାଇଚି, ସେଥିରୁ ଗୋଟିକରେ ନାଜାରିନ୍, ମୃତ୍ୟୁଶଯ୍ୟାରେ ଏକ ନାରୀକୁ ପାରମାର୍ଥିକ ପ୍ରବୋଧ ଶୁଣାଇଛି, ସାନ୍ତ୍ୱନାବାଣୀ ଯେତେବେଶି ପାରଲୌକିକ ହେଉଛି, ମୃତ୍ୟୁପଥଯାତ୍ରୀ ସେତେ ନିବିଡ଼କରି ଛାତିରେ ଜାକିଧରୁଛି ମୃତପ୍ରେମିକର ଛବି, ଆଉ ଦୃପ୍ତକଣ୍ଠରେ ଉଚ୍ଚାରଣକରୁଛି, ଭୟାନକ ଏକ ଉକ୍ତି : no to heaven yes to Juan. (ଜୁଆନ୍‌ର ଉଚ୍ଚାରଣ ସ୍ପ୍ୟାନିସ୍‌ରେ ହୁଆନ୍; ନୋ ଟୁ ହେଭେନ୍, ଇୟେସ୍ ଟୁ ହୁଆନ୍) । ଆରଟିରେ ଦୁଃଖୀ ଏକ ରମଣୀହାତରୁ ଭିକ୍ଷା ଗ୍ରହଣକରିବାକୁ ନାଜାରିନ୍ ଇତସ୍ତତଃ କରୁଛି, ପରମୂହର୍ତ୍ତରେ ମନର ପ୍ରତିରୋଧକୁ ଜୟକରି ଗ୍ରହଣକରିଛି ଦରିଦ୍ରର ଭିକ୍ଷା; ମାତ୍ର ଉପହାର ନୁହେଁ ସେ ଭିକ୍ଷା, ସହଯୋଦ୍ଧାର ପାଥେୟ । ନିଃସଙ୍ଗ ନାଜାରିନ୍ ଆଉ ଏକେଲା ନୁହେଁ: ଈଶ୍ୱରଙ୍କୁ ହରାଇଛି ସିନା, ପ୍ରତିବଦଳରେ ଖୋଜିପାଇଛି ସାକ୍ଷାତ୍ ସହୋଦର ମାନବ-ଆତ୍ମା । କାନ୍ ଚଳଚ୍ଚିତ୍ରଉତ୍ସବରେ ଏ ଛବି ପ୍ରଦର୍ଶିତ ହୋଇଛି, ଏବଂ ବିଦଗ୍ଧଜନ ଭାବିଛନ୍ତି, ବୁଉନ୍‌ଓ୍ୱେଲ୍ ମରିଯାଉଥିବା ସ୍ତ୍ରୀଲୋକଟିର ଚେତନାରୁ ଯୀଶୁଙ୍କୁ ନିର୍ବାସିତ ନକରି ମଧ ଦେଖାଇପାରିଥାନ୍ତେ, ସ୍ୱର୍ଗ ବୋଲି ଯଦି କୋଉଜାଗା ଥାଏ, ତେବେ ତା ଅତ୍ର ଏବଂ ଅଦ୍ୟ; ଆଉ ଅପରିଶୋଧ୍ୟ କୋଉ ପ୍ରେମ ଯଦି ଥାଏ, ତେବେ ତା ନର-ନାରୀର ବାସନାଦୀପ୍ତ ଆଲିଙ୍ଗନ, ଅଙ୍ଗବିହୀନ କାଳାତୀତ କୋଉ ସ୍ୱର୍ଗୀୟ ଆଶ୍ଲେଷ ନୁହେଁ । ମାତ୍ର, ଯୀଶୁଙ୍କୁ କାହିଁକି, ବୁଉନ୍‌ଓ୍ୱେଲ୍ ତ ସ୍ୱୟଂ ଈଶ୍ୱରଙ୍କୁ ଅସ୍ୱୀକାର କରିଛନ୍ତି । କାରାଭ୍ୟନ୍ତରରେ ଈଶ୍ୱରବର୍ଜିତ ନରଘାତକକୁ ଦେଖାଇଛନ୍ତି ଯେତିକି ନିର୍ବିକାର, ଈଶ୍ୱର-ତଦ୍‌ଗତ ପାଦ୍ରୀକୁ ବି ସେତିକି ନିର୍ଲିପ୍ତ; କାହିଁକିନା, ପାପ କଥାଟା ଯେପରି ଏକ ଦୃଷ୍ଟିବିଭ୍ରମ, ପୁଣ୍ୟ ତଦପେକ୍ଷା ଊଣା ନୁହେଁ, କାହିଁକିନା, ଭଗବାନ୍ ଯଦି ନାହାନ୍ତି, ତେବେ ପୁଣ୍ୟନାହିଁ କି ପାପନାହିଁ । ଅନ୍ୟ ଶବ୍ଦରେ, ନ୍ୟାୟ-ଅନ୍ୟାୟ ପ୍ରତ୍ୟୟ ମଣିଷର ପ୍ରବୃତ୍ତିଗତ ପ୍ରଚୋଦନା; ନ୍ୟାୟ-ଅନ୍ୟାୟ, ଉଚିତ-ଅନୁଚିତ ବିବେଚନା ଭଗବାନ୍‌ଙ୍କ ଅସ୍ତିତ୍ୱ କି ନାସ୍ତିତ୍ୱ ଉପରେ ନିର୍ଭରକରେନା । ବୁଉନ୍‌ଓ୍ୱେଲ୍, ସେଥିପାଇଁ, ଦେଖାଇବାକୁ ଚାହିଁଛନ୍ତି, ସମ୍ପୂର୍ଣ୍ଣ ନାସ୍ତିକ ଏକ ସମାଜରେ ମଣିଷ-ମଣିଷ ଭିତରେ ସମ୍ପର୍କର ଧରଣ କି ପ୍ରକାର ହୋଇପାରେ, ଯେପର, no to heaven, yes to Juan, ଅଥବା ଦରିଦ୍ର ନାରୀଠାରୁ ନାଜାରିନ୍‌ର ଭିକ୍ଷାଗ୍ରହଣ ।

କାଳ ନିରବଧି; ସନ୍ଦେହ ନାହିଁ, ଭଗବାନ୍ ଏପରି ଏକ ଅସ୍ୱଚ୍ଛ ଦର୍ପଣ ଯିଏ ମଣିଷକୁ ନିଜ ମୁଖାବୟବଟି ସୁଦ୍ଧା ଦେଖିବାକୁ ଦିଅନ୍ତିନାହିଁ ସ୍ପଷ୍ଟ; ହେଲେସୁଦ୍ଧା, ଈଶ୍ୱରବର୍ଜିତ ଏକ ନାସ୍ତିକସମାଜ ସ୍ୱଭାବସିଦ୍ଧ ସମନ୍ୱୟଦ୍ୱାରା ଯା ପରିଚାଳିତ, ଇତିହାସ ପ୍ରବାହରେ ଅଦ୍ୟାବଧି ପରିଦୃଷ୍ଟ ହୋଇନାହିଁ । ଭଗବାନ୍‌ଙ୍କ ସପକ୍ଷରେ ଏ ଅବଶ୍ୟ କୋଉ ଯୁକ୍ତି ନୁହେଁ । କିନ୍ତୁ ପାସୋଲିନି କି ବୁଉନ୍‌ଓ୍ୱେଲ୍ ସମସ୍ୟାପଟକୁ ଯେମିତି ଦେଖିଛନ୍ତି ଯୀଶୁଙ୍କୁ ନେପଥ୍ୟରେ ରଖି, ଆହୁରି ଅନେକ ଲୋକ ଆହୁରି ଭିନ୍ନ ପ୍ରେକ୍ଷିତରେ ନିଶ୍ଚୟ ଦେଖିବେ; ଏବଂ ସେଇ ଅଭିନବ ଦୃଷ୍ଟିକୋଣ ଆହୁରିକେତେ ନୂତନତ୍ୱକୁ ମଧ

ଜନ୍ମଦେଉଥିବ । ମାତ୍ର, ଚର୍ଚ୍ଚରୂପକ ଅମଲାତନ୍ତ୍ର, ଅନାବଶ୍ୟକ ଅଚଳାୟତନରେ ପରିଣତହେବା ଛଡ଼ା ଗତ୍ୟନ୍ତର ରହିବନାହିଁ, ତା ହେଲେ ।

ଅତିସମ୍ପ୍ରତି ବାଷଠିପୃଷ୍ଠା-ସମ୍ବଳିତ ଏକ କୋଡେକ୍ସ ୱାସିଙ୍ଗଟନ୍‌ରେ ନିଲାମରେ ଉଠିଚି; ଏବଂ ସେ ବି ଗୋଟାଏ ସୁସମାଚାର, ଯାର ପ୍ରଣେତା ଆଉ କେହି ନୁହେଁ, ଚର୍ଚ୍ଚଦ୍ୱାରା ବିଶ୍ୱାସଘାତକ ବିବେଚିତ ଜୁଡାସ୍ ଇସ୍‌କାରିଅଟ୍ । ପ୍ୟାପିରସ୍ ଉପରେ ଲିଖିତ ଏ ଗସ୍‌ପେଲ୍‌ର ଅଧାଅଧି ଯୀଶୁଙ୍କ ଅନ୍ତିମପର୍ବର ବିବରଣ ଯା କ୍ରୋପ୍ଟିକ୍ ଲିପିରେ, ପାସ୍‌ଓଭର୍ ପରବର ମାତ୍ର ତିନିଦିନ ଆଗରୁ ଜୁଡାସ୍ ଓ ଯୀଶୁଙ୍କ ମଧ୍ୟରେ ଘଟିଥିବା ଗୋପନ ସଂଳାପର ବିବରଣ । କାର୍ବନଡେଟିଙ୍ଗ୍ ଏ ପାଣ୍ଡୁଲିପିର ବୟସ ସ୍ଥିରକରିଚି ୩୦୦ ଖ୍ରୀଷ୍ଟାବ୍ଦ । ମାତ୍ର ଖ୍ରୀ. ୧୫୦ରେ ଲେଖାଯାଇଥିବା ଗସ୍‌ପେଲ୍‌ର ଏ କେବଳ ପ୍ରତିଲିପି; ଅର୍ଥାତ୍ ମାର୍କ ମାଥ୍ୟୁ ଲ୍ୟୁକ୍‌ଙ୍କ ରଚନାର ସମକାଳୀନ । ସଂଳାପକୁ 'ଗୋପନ' କୁହାଯାଇଚି, କାହିଁକିନା, ରୋମାନ୍ ସୈନ୍ୟଙ୍କ ହାତରେ ତାଙ୍କୁ ଧରାଇଦେବା ପାଇଁ ଯୀଶୁ କୁଆଡ଼େ ଜୁଡାସ୍‌କୁ ନିଜେ ପରାମର୍ଶ ଦେଇଥିଲେ : You will exceed all of them for you will sacrifice the man that clothed me. କ୍ରୋପ୍ଟିକ୍ ଲିପିର ପ୍ରଚଳନ ୧୨୦ ଖ୍ରୀଷ୍ଟାବ୍ଦ ବେଳକୁ ଇଜିପ୍ଟରେ ଥିଲା ସୁବିଦିତ ଏବଂ ସେଠି ଏକ ସମ୍ପ୍ରଦାୟ ବାସକରୁଥିଲେ ଯିଏ କୁଆଡ଼େ *ଓଲ୍ଡଟେଷ୍ଟାମ୍ୟାଣ୍ଟ*ର ସର୍ବପ୍ରଥମ ନରଘାତକ କାଇନ୍‌ର ବଂଶଧର ! ସେଇ କାଇନାଇଟ୍‌ଙ୍କ ଦ୍ୱାରା ସଂରକ୍ଷିତ ହୋଇଥିଲା ଜୁଡାସ୍‌ର ଗସ୍‌ପେଲ୍ । ସେମାନଙ୍କ ଧାରଣା, ଜଗତ୍‌କୁ କୋଉ ଈଶ୍ୱର ସୃଷ୍ଟିକରିନାହିଁ, କରିଚନ୍ତି ଦେବଦୂତ । ଏବଂ ସେ ତତ୍ତ୍ୱର ସତ୍ୟାସତ୍ୟ ଉନ୍ମୋଚନ କରିବାକୁ ଯୀଶୁ କୁଆଡ଼େ ବାଛିଥିଲେ ଜୁଡାସ୍‌କୁ : Step away from others and I shall tell you the secret of the kingdom. It is possible for you to reach it but you will grieve a great deal... Look, you have been told everything. Lift up your eyes and look at the cloud and the light within it and the stars surrounding it. The star that leads the way is your star । ବିଦ୍ୱାନ୍ କହୁଚନ୍ତି, ଚର୍ଚ୍ଚ ଯେମିତି ନିଟୋଳ ଅଚଳାୟତନ ବୋଲି ଖ୍ରୀଷ୍ଟଧର୍ମକୁ ଚିତ୍ରଣକରୁଚି, ତା ଗୋଟାଏ ବୃହତ୍ ମିଥ୍; ଆଦ୍ୟ ଖ୍ରୀଷ୍ଟାନ୍‌ଙ୍କ ଭିତରେ ମତାନ୍ତର ଥିଲା; ତାକୁ ବିବିଧତା ବା ଡାଇଭର୍ସିଟି କହିବା ସମୀଚୀନ ।

ସବୁ ଗସ୍‌ପେଲ୍‌ର କାରସାଦି କିନ୍ତୁ ମଣିଷକୁ ଭଗବାନ୍ ବନାଇବାକୁ ଉତ୍‌କଣ୍ଠ; ବିରକ୍ତହୋଇ ଫ୍ରିଏଡ୍ରିକ୍ ନୀଇଚହ୍ ଘୋଷଣା କରିଚନ୍ତି, ଭଗବାନ୍ ତ ମରିସାରିଚନ୍ତି; ଯାର ଅସ୍ତିତ୍ୱ ନାହିଁ, ତା ପଛରେ ଧନ୍ଦିହେବା ବାତୁଳତା ମାତ୍ର; ଅର୍ଥାତ୍ ଆଧିଭୌତିକ ଭିତ୍ତିର ପ୍ରୟୋଜନ ଜୀବନରୁ ବିଦାୟ ନେଇଚି; ଭୀରୁ ମଣିଷ କିନ୍ତୁ ଡରୁଚି ସେକଥାକୁ ସମ୍ମୁଖୀନ ହେବାକୁ । କୋଉଠେଲେ ମୂଲ୍ୟବୋଧକୁ ଚରମ ବା ଶାଶ୍ୱତ ଭାବୁଁନା, ଅଥଚ ମାନିବାକୁ ଡରୁଁ । ଭଗବାନ୍‌ଙ୍କୁ ମୃତ ଘୋଷଣାକରି ନୀଇଚହ୍ ଋହିଁଚନ୍ତି, ମଣିଷ

ଏ କାପଟ୍ୟରୁ ନିଜକୁ ମୁକ୍ତକରୁ, କାହିଁକିନା, ଆତ୍ମପ୍ରବଞ୍ଚନା ପୌରୁଷ ନୁହେଁ; ଏପରିକି, ସେଇ ଶୂନ୍ୟସିଂହାସନରେ ମଣିଷକୁ ବସାଇବା ବି ପ୍ରଚ୍ଣ୍ଡ ପ୍ରତାରଣା, କାହିଁକିନା, ଈଶ୍ୱରଙ୍କ ପ୍ରୟାଣକୁ ମୁକାବିଲା କରି ନପାରିବାର ଏ ଏକ କୌଶଳ ମାତ୍ର । ଭଗବାନ୍‌ଙ୍କ ପିତୁଳା ଜାଗାରେ ମଣିଷର ପିତୁଳାକୁ ଥୋଇଦେଲେ ପୌତ୍ତଳିକତାର ଅନ୍ତହୁଏନା । ମଣିଷର ପ୍ରଜାତିଗତ ପରିଚ୍ୟ ରହିଚି; ସେଥିପାଇଁ ତା ଜୀବନରେ କେତେକ ଲକ୍ଷଣ ମୌଳିକ ଯା ପରିବର୍ତ୍ତିତ ହୋଇପାରେନା, ଯେପରି, ମୃତ୍ୟୁ ନଶ୍ୱରତା ଭାଷା ସାମାଜିକତା ଯୌନତା ଦୁଃଖଯନ୍ତ୍ରଣା ଉତ୍ପାଦନ ଇତ୍ୟାଦି । କୁହାଯାଇପାରେ 'ହିଉମାନ୍ କଣ୍ଡିସନ୍' କହିଲେ ଯା ବୁଝୁଁ, ଏ ଉପାଦାନସମୂହ ସଂଗଠିତ କରୁଚି ତା ନିର୍ମାଣକୁ । ଏଗୁଡ଼ିକ ନଥିଲେ ମଣିଷ ମଧ ନାହିଁ । ଏବଂ ପରିବର୍ତ୍ତନର ଅନୁପସ୍ଥିତି କ'ଣପାଇଁ ଅବା ବିବେଚିତ ହେବ ଅବାଞ୍ଛିତ, ସଦୂରରେ ମଧ କାହାରିକୁ ଜଣାନାହିଁ । ପରିବର୍ତ୍ତନର ଅନୁପସ୍ଥିତି ମାନେ ଭାଷା ସାମାଜିକତା ଯୌନତା ଇତ୍ୟାଦିର ଅପରିବର୍ତ୍ତନୀୟତା । ଅଥଚ ଭଗବାନ୍‌ଙ୍କର ଯଦି ଜନ୍ମନାହିଁ କି ମୃତ୍ୟୁନାହିଁ, ଦୁଃଖ ନାହିଁ କି ସୁଖ ନାହିଁ, ଜରା ନାହିଁ କି ବ୍ୟାଧି ନାହିଁ, ତାଙ୍କର ତ କିଛିହେଲେ କରିବା ବି ଦରକାର ନାହିଁ । ସୃଷ୍ଟି ସେଥିପାଇଁ ଖିଆଲଖୁସିର ବ୍ୟାପାର; ଆଜି ଅଛି ତ କାଲି ନାହିଁ । ମୋଟେ ନଥିଲେ ବି କାହାରି କିଛି ଭାସିଯାଆନ୍ତା ନାହିଁ । କାର୍ଯ୍ୟ-କାରଣ ଯୁକ୍ତି ପରମ୍ପରାରେ ତେଣୁ ଭଗବାନ୍‌ଙ୍କ ଅସ୍ତିତ୍ୱ କି 'ସୃଷ୍ଟିକର୍ତ୍ତା' ଭଳି କୋଉ ନିର୍ମାତାର ଅସ୍ତିତ୍ୱ ସିଦ୍ଧ ହୋଇପାରେନା, ଦରକାର ହୁଏ ମେଟାଫିଜିକ୍ସ (=ପରାବିଦ୍ୟା) । କୁହାଯାଏ, ଏଇ କଥାଗୁଡ଼ାକ କହିବାକୁ କି ଲେଖିବାକୁ ଫ୍ରିଡମ୍ ଦେଇଚନ୍ତି ଈଶ୍ୱର; ଯେହେତୁ ସିଏ ମୁକ୍ତିଦାତା, ମଣିଷ ତାଙ୍କ ପ୍ରତିମାହୋଇ ପାଇଚି ମୁକ୍ତିର ଅଧିକାର । ଅର୍ଥାତ୍ ଈଶ୍ୱରରୂପକ ମୁକ୍ତିର ପ୍ରତିନିଧି ମଣିଷ । କିନ୍ତୁ ମୁକ୍ତି (ଫ୍ରିଡମ୍)ର ପ୍ରତିନିଧିତ୍ୱ ଅଯୌକ୍ତିକ; କେହି କାହାରି ମୁକ୍ତିଚେତନାର ପ୍ରତିନିଧିତ୍ୱ କରିପାରେନା । ମରୁଭୂମିରେ ମରୀଚିକା ଭଳି ଏତେ କ୍ଷିପ୍ର ସେ ଚେତନା ଯେ ତାକୁ ନିର୍ଦ୍ଦିଷ୍ଟ ରୂପରେଖରେ ମଧ ଭାବିହୁଏନା । ତାକୁ ସଂଜ୍ଞାବଦ୍ଧ କରିବାକୁ ଉଦ୍ୟମ ମାନେ ତାକୁ ହତ୍ୟାକରିବାକୁ ଉଦ୍ୟମ । ଫ୍ରିଡମ୍ ମଧ ଜୀବନର ଭିତ୍ତି ହୋଇପାରେନା ସେଥିପାଇଁ, ଯୋଉ ଫ୍ରିଡମ୍ ଈଶ୍ୱରଙ୍କୁ କରିଚି କାରିଗର । ତାଙ୍କ ବିନା ସାହାଯ୍ୟରେ ମଣିଷ ବି ତିଆରିକରିପାରେ ନାନାବିଧ ଜଗତ୍, ଏବଂ ଯା ବଳରେ କରେ, ତାକୁ ନାଁ ଦେଇଚି ବିଜ୍ଞାନ ବା ସାଏନ୍ସ । ଅର୍ଥାତ୍ ନିଜ ନିର୍ମାଣ ଈଶ୍ୱରଙ୍କୁ ପରିଣତ କରିଚି ଆବଶ୍ୟକର ଅତିରିକ୍ତ । ଏତଦ୍‌ସତ୍ତ୍ୱେ, ଏପରି କେତେ ଦାୟବଦ୍ଧତା ରହିଚି ଯା ସକାଶେ ମଣିଷ ଅକ୍ଳେଶରେ କରିପାରେ ଜୀବନ ବିସର୍ଜନ । ଅଥଚ ସେ ଦାୟବଦ୍ଧତା ମୌଳିକ କୋଉ ଭିତ୍ତି ନୁହେଁ, ଯେପରି, ଈଶ୍ୱର କି ପରମାର୍ଥ । ସେଗୁଡ଼ିକର ଉତ୍ସ ପ୍ରାତ୍ୟହିକ ଜୀବନଯାପନ ଯା ସବୁମଣିଷଙ୍କ କ୍ଷେତ୍ରରେ ସମାନ ନୁହେଁ; ପରସ୍ପର ପରିପନ୍ଥୀ ମଧ ନୁହେଁ । ଏ ପରିସ୍ଥିତିରେ, ମୂଳଦୁଆ ବୋଲି ଭାବୁଚୁଁ ଯାହାକୁ ଜୀବନଯାପନର, ତାର ପ୍ରତିନିଧିତ୍ୱ କରିପାରେ କଳ୍ପନା, ଯା ସତ୍ୟ ନୁହେଁ, ସତ୍ୟର

ଅବବୋଧ ମାତ୍ର, ସତ୍ୟର ଇଣ୍ଟରପ୍ରିଟେସନ୍ । ମାନଚିତ୍ର ଦେଖିଲେ ସ୍ଥାନ, ସ୍ଥାନର ପରିପାର୍ଶ୍ୱ, ଦୂରତ୍ୱ ଇତ୍ୟାଦିର ପ୍ରତିନିଧିତ୍ୱ ତିଆରି କରାଯାଇପାରେ; ଇତିହାସ ଦେଖିଲେ କାଳ, ଖାଲି ଅତୀତ ନୁହେଁ, ଅନାଗତ ବିଷୟରେ ମଧ୍ୟ ପ୍ରତିନିଧିତ୍ୱ ସମ୍ଭବ । ଅର୍ଥାତ୍ ସ୍ଥାନ-କାଳ ଭଳି ବାସ୍ତବକୁ ବିମୂର୍ତ୍ତ ଚୈତନ୍ୟ ସ୍ତରକୁ ଉନ୍ନୀତକରିବାକୁ ମେଟାଫିଜିକ୍ସ ଆବଶ୍ୟକ ହୁଏନା; କିନ୍ତୁ ଜୀବନର 'ଆଦ୍ୟ କାରଣ' ଖୋଜିବାକୁ ଯାଇ ଇଣ୍ଟରପ୍ରିଟେସନ୍‌ର ଗୋଲକଧନ୍ଦାରୁ ମଣିଷର ରେହାଇ ନାହିଁ । ଏବଂ କଳ୍ପିତ ସେଇ ମୂଳସୂତ୍ର / ହୃତ୍‌କେନ୍ଦ୍ର / ନିର୍ଯ୍ୟାସ ଇତ୍ୟାଦିର ଅନ୍ୱେଷଣ ସ୍ପଷ୍ଟତଃ ଏକ ସାଂସ୍କୃତିକ ସଂସ୍କାର ଯା ଗସ୍‌ପେଲ୍‌କର୍ତ୍ତା ପାଇଚନ୍ତି ଗ୍ରୀକ୍-ଦର୍ଶନଚିନ୍ତାରୁ । ଚର୍ଚ୍ଚର ଇତିହାସ ତେଣୁ ଭାବାଦର୍ଶଗତ ପକ୍ଷପାତର କୁଟିଳ ବୃତ୍ତାନ୍ତ; ଅର୍ଥାତ୍ ଆଦ୍ୟକାରଣ ହିଁ କ୍ଷମତା ଓ ତାର ବହୁବିଧ ବିଭଙ୍ଗ । ତା ହେଲେ, ସାଧାରଣ ମଣିଷର ଅସ୍ମିତା ବା ସ୍ୱତନ୍ତ୍ରବୋଧ କାହାଦ୍ୱାରା ହୋଇଥିଲିଚି ଗଠିତ ? ଜୀବନଯାପନର କ୍ରୂର ବାସ୍ତବ କୋଉ ପ୍ରତିନିଧିତ୍ୱ କି ଇଣ୍ଟରପ୍ରିଟେସନ୍‌ର ଧାର ଧାରେନା, କିନ୍ତୁ ନାନା ରକମ ଦାୟବଦ୍ଧତାକୁ ଏଡ଼ାଇ ଯାଇପାରେନା । ସେ ଆନୁଗତ୍ୟ, ପ୍ରଚଳିତ ଅର୍ଥରେ ଭଲ କି ନାକରା, ଜୀବନ ଖାତିର୍ କରେନା; ମାତ୍ର ସେଇ ଆନୁଗତ୍ୟ ହିଁ ତାର ଆତ୍ମପରିଚୟ । ଅନ୍ୟ ଶବ୍ଦରେ, ମୁଁ କିଏ ? - ଏ ପ୍ରଶ୍ନର ଉତ୍ତର ଦେଇପାରିବ ଏକମାତ୍ର କି କି କାମକୁ ମୁଁ ମନେକରେଁ ଅବଶ୍ୟକର୍ତ୍ତବ୍ୟ, ଅପରିହାର୍ଯ୍ୟ ଦାୟିତ୍ୱ । ଅର୍ଥାତ୍, ମୋ ଜୀବନରେ ସେଇ କର୍ତ୍ତବ୍ୟ ଓ ଦାୟିତ୍ୱଗୁଡ଼ାକର ସର୍ବାଧିକ ଗୁରୁତ୍ୱ ।

ଚର୍ଚ୍ଚ କିନ୍ତୁ ଶିଖାଏ ସର୍ବାଧିକ ଗୁରୁତ୍ୱ ଦେବାକୁ 'ଶବ୍ଦ'କୁ, କାହିଁକିନା, *ବାଇବେଲ୍*‌ରେ ଯା ଲେଖାଯାଇଚି, ଚର୍ଚ୍ଚ ଦୃଷ୍ଟିରେ ତାର ପ୍ରତ୍ୟେକ ଶବ୍ଦ ଆକ୍ଷରିକ ଅର୍ଥରେ 'ସତ୍ୟ' । ଏ ମୌଳବାଦ ବସ୍ତୁତଃ ଗୋଟାଏ 'ଟେକ୍‌ସ୍ଟ' ସମ୍ବନ୍ଧିତ ବ୍ୟାପାର; ତା ସହିତ ଜଡ଼ିତ ଅବଶ୍ୟ ପାରମ୍ପରିକ ବିଶ୍ୱାସ, ଯାହାକୁ ମନେକରାଯାଏ ଅପରିବର୍ତ୍ତନୀୟ, ଚିରନ୍ତନ; ମାତ୍ର ସ୍ୱୟଂ ପରମେଶ୍ୱର ଯେହେତୁ ସବୁଶବ୍ଦ ଭିତରେ ଏକମାତ୍ର ଶବ୍ଦ, ମର୍ମାର୍ଥର ଗ୍ୟାରେଣ୍ଟି ଦେଇପାରିବେ କେବଳ ସେଇ ସବୁଶବ୍ଦର ଅତୀତ ଯୋଉ ଶବ୍ଦ । ଅର୍ଥାତ୍ ଲିପିବଦ୍ଧ ଶବ୍ଦ ପ୍ରତି ଅବିଚଳ ଆନୁଗତ୍ୟ । ଖ୍ରୀଷ୍ଟାନ୍ କି ଇସ୍‌ଲାମ୍ ଭଳି ଏକେଶ୍ୱରବାଦୀ ଧର୍ମମତ ପୌତ୍ତଳିକତାକୁ ନିନ୍ଦାକରିଚି ସବୁବେଳେ, ମାତ୍ର ଟେକ୍‌ସ୍ଟକୁ ପବିତ୍ର ଜ୍ଞାନରେ କରିଚି ପିତୁଳା ଯଦିଓ ପିତୁଳାଭାଙ୍ଗିବା ସେଇ ଶବ୍ଦାନୁଗତ୍ୟର ପ୍ରତିଫଳ । *ବାଇବେଲ୍* ତ ନିଜେ କହିଚି, 'the letter killeth' । ଅଥଚ ଶବ୍ଦ ବା ଟେକ୍‌ସ୍ଟ କେବେ ପବିତ୍ର ହୋଇପାରେନା; ଯେକୌଣସି ଜାଗାରେ, ଯେକୌଣସି ସମୟରେ, ଯେକୌଣସି ଲୋକ, ଯେକୌଣସି ଲିଖିତ ବକ୍ତବ୍ୟକୁ ଯେକୌଣସି ବାଗରେ ପଢ଼ିପାରେ । ଅର୍ଥ ବାହାରିବ ତେଣୁ ବିଚିତ୍ର, ବହୁମାତ୍ରିକ, ବହୁସଂଖ୍ୟକ; ଭାଷା ତେଣୁ ସବୁରକମ ପରିସ୍ଥିତିରେ ସବୁରକମ ଲୋକଙ୍କୁ ଦେଇପାରିବନାହିଁ ଏକ ଓ ଅଦ୍ୱିତୀୟ ମର୍ମାର୍ଥ । ଶବ୍ଦ ତେଣୁ ସଙ୍କୁଚି ।

ଏବଂବିଧ ମୌଳବାଦର ଗୋଟିଏମାତ୍ର ଦୃଷ୍ଟାନ୍ତରୁ ବୁଝିହେବ ଅନ୍ତଃସାରଶୂନ୍ୟତା, ଯେପରି, *ନିଉ ଟେଷ୍ଟାମେଣ୍ଟ*ର ଅନ୍ୟତମ ପ୍ରଣେତା ଲ୍ୟୁକ୍ ନିଶ୍ଚୟ ଅବଗତଥିଲେ ଯୀଶୁଙ୍କ ଜନ୍ମସ୍ଥାନ ଗ୍ୟାଲିଲି, ମାତ୍ର ଜନ୍ମସ୍ଥାନକୁ ଜୁଡିଆ ଇଲାକାକୁ ଉଠାଇ ନଆଣିଲେ ଡେଭିଡ୍ ରଜାର ବଂଶରୁ ମସିହା ଉଠିବା ଭବିଷ୍ୟବାଣୀ ମିଛ ହୋଇଯିବ । ଯୋଉ ଭାବରେ ହେଉ, ଯୀଶୁଙ୍କୁ ମସିହା ବନାଇବା ଦରକାର; ମସିହା ପୁଣି ବାହାରିବ ଗ୍ୟାଲିଲି ଭଳି ଅମାର୍ଜିତ ଗାଁଉଲି ପରିବେଶରୁ, କଥାଟା ହୁଏତ ଲୋକଙ୍କ ମନକୁ ଘେନିବନାହିଁ । କର୍ଣ୍ଣଙ୍କୁ ସୂର୍ଯ୍ୟଦେବତାଙ୍କ ଔରସଜାତ ବୋଲି ଦେଖାଇବାକୁ ପଡ଼ିବ, ଦେଖାଇବାକୁ ପଡ଼ିବ ଅସ୍ତ୍ରଶିକ୍ଷା ପାଇଚି ପର୍ଶୁରାମଙ୍କ ପାଖରୁ । ଲ୍ୟୁକ୍ ତେଣୁ ଉଦ୍ଭାବନକରିଚନ୍ତି ରୋମାନ୍ ଜନସୁମାରି, ଯା ଇତିହାସ-ଅନୁମୋଦିତ ଘଟଣା ନୁହେଁ । ସେ ସେନ୍‌ସସ୍ କୁଆଡ଼େ ସାମ୍ରାଜ୍ୟର ସକଳ ପ୍ରଜାଙ୍କୁ ବାଧକରିଚି ଜନ୍ମସ୍ଥାନକୁ ଲେଉଟି ଆସିବାକୁ, ଅନ୍ୟ ଜାଗାରେ ଯେହେତୁ ନାମପଞ୍ଜୀକରଣ ନିଷିଦ୍ଧ । ଯୀଶୁଙ୍କ ବାପା ଯୋସେଫ୍, ଲ୍ୟୁକ୍‌ଙ୍କ ଦୃଷ୍ଟିରେ ଯିଏ ଡେଭିଡ୍ ରଜାର ବଂଶଧର, ଡେଭିଡ୍ ବସାଇଥିବା ସହର ବେଥିଲେହେମ୍‌କୁ ଯାଇଚନ୍ତି ସସ୍ତ୍ରୀକ ପଞ୍ଜୀକରଣ ସକାଶେ, ଏବଂ ମେରୀ ମଧ୍ୟ ସେତେବେଳକୁ ଗର୍ଭବତୀ । ବେଥିଲେହେମ୍‌ରେ ଯୀଶୁ ଭୂମିଷ୍ଠନହୋଇ ତେଣୁ ଗତିନାହିଁ । ଅନଧିଗମ୍ୟ ଏଇ ବର୍ଣ୍ଣନାରୀତି ଯୀଶୁଙ୍କୁ ପ୍ରଦାନକରେ ମସିହାର ଉପଯୁକ୍ତ ବଂଶଗତି ।

ସମଗ୍ର ରୋମାନ୍ ସାମ୍ରାଜ୍ୟର ଅଧିବାସୀଙ୍କୁ ଖାଲି ନାଁ ରେଜିଷ୍ଟ୍ରି କରିବାକୁ ନିଜ ଗାଁକୁ ଫେରି ଆସିବାକୁ ବାଧକରିବା ଏକ ହାସ୍ୟାସ୍ପଦ ଅନୁଶାସନ, କାହିଁକିନା, ସାମ୍ରାଜ୍ୟର ଏ ମୁଣ୍ଡରୁ ସେ ମୁଣ୍ଡ ଯଦି ଏକାବେଳକେ ହଜାରହଜାର ଲୋକଙ୍କ ଚଳାଚଳ ଆରମ୍ଭ ହୋଇଯାଏ, ନାଗରିକ ବିଶୃଙ୍ଖଳା ଅବଶ୍ୟମ୍ଭାବୀ । ଏଭଳି ପ୍ରକାଣ୍ଡ ଆକୃତି ଅଭିପ୍ରୟାଣ ଖ୍ରୀଷ୍ଟୀୟ ପ୍ରଥମ ଶତକରେ ଘଟିଥିଲେ, ଲ୍ୟୁକ୍‌ଙ୍କ ସୁସମାଚାର ଅପେକ୍ଷା ନିର୍ଭରଯୋଗ୍ୟ ସୂତ୍ର ହୋଇଥାନ୍ତା ଇତିହାସ; ମାତ୍ର ଲ୍ୟୁକ୍ ଭାବିଚନ୍ତି, ମିଛକଥାକୁ ଯଦି ଗ୍ରୀକ୍ ଭାଷାରେ କୁହାଯାଏ, ଲୋକଙ୍କୁ ବୋକା ବନାଇବା ସହଜ । କାହିଁକିନା, ସମାଜ ଭିତରେ ଥାଇ ପ୍ରାତ୍ୟହିକ ଜୀବନଯାତ୍ରାର ଜଞ୍ଜାଳ ମେଣ୍ଟାଇବାକୁ ଦରକାର ହୁଏ ଯୋଉ ବନ୍ଧୁର ପିଚ୍ଛିଳ ପଥପରିକ୍ରମଣ, ତା ଉର୍ଦ୍ଧ୍ୱରେ ମଣିଷ ରହେଁ ତୁଷାରଶୁଭ୍ର ନିର୍ମଳ ଭାବଜଗତ, ଯୋଉଠି ପଥଶ୍ରମର କ୍ଳାନ୍ତି ନାହିଁ, କାହିଁକିନା, ବରଫ ସ୍ୱଚ୍ଛ ଓ ନିର୍ମଳ ହେଲେସୁଦ୍ଧା, ତା ଉପରେ କେହି ଚଲିପାରେନା ।

---



ରବୀନ୍ଦ୍ର ପ୍ରସାଦ ପଣ୍ଡାଙ୍କ ଜନ୍ମ ୧୯୩୭ ମସିହା ନଭେମ୍ବର ୨୧ ତାରିଖ ଦିନ ଅଧୁନା ଭଦ୍ରକ ଜିଲ୍ଲାର ଛତ୍ରପଦା ଗ୍ରାମରେ । ରେଭେନ୍ସା କଲେଜରୁ ଇଂରାଜୀ ଭାଷାସାହିତ୍ୟରେ ସ୍ନାତକୋତ୍ତର ଶେଷ କରି ଯୋଗ ଦିଅନ୍ତି ଓଡ଼ିଶା ପ୍ରଶାସନିକ ସେବାରେ ଓ ଅବସର ଗ୍ରହଣ କରନ୍ତି ୧୯୯୫ରେ ।

ପ୍ରବନ୍ଧ, କ୍ଷୁଦ୍ରଗଳ୍ପ, କାବ୍ୟକବିତା, ଉପନ୍ୟାସ ଓ ଅନୁବାଦ ଆଦି ସାହିତ୍ୟର ବିଭିନ୍ନ ବିଭାଗକୁ ପ୍ରସାରିତ ତାଙ୍କ ସୃଷ୍ଟି ବଳୟ । ବିଶେଷକରି ପ୍ରବନ୍ଧ ସାହିତ୍ୟ ରଚନା କରିବାରେ ସେ ସିଦ୍ଧହସ୍ତ ।

**ବିଦ୍ୟାପୁରୀ**
ବାଲୁବଜାର, କଟକ ୭୫୩୦୦୨
ISBN 81-7411-553-6
www.vidyapuri.com